# କଥା ଦଶକ

(ଗଳ୍ପ ସଂକଳନ)

କଥାକାର : ଡକ୍ଟର ଯଶୋବନ୍ତ ସାମଲ
ପ୍ଲଟ୍ ନଂ. ୧୮୦୮/୨୭୫୧, ବରମୁଣ୍ଡା, ଭୁବନେଶ୍ୱର - ୩୦
ମୋବାଇଲ : ୯୪୩୭୧ ୫୪୨୨୪

ପ୍ରକାଶକ : ବିଜୟିନୀ ପବ୍ଲିକେଶନ୍ସ
ଶଙ୍କରପୁର, ଅରୁଣୋଦୟ ମାର୍କେଟ, କଟକ - ୭୫୩ ୦୧୨
ଫୋନ୍ : ୦୬୭୧-୨୩୨୮୭୨୩

ପ୍ରଥମ ପ୍ରକାଶ : ୨୦୧୨

ପ୍ରଚ୍ଛଦ : ବିଜୟ ପ୍ରଧାନ

ମୁଦ୍ରଣ : ଦି ଲକ୍ଷ୍ମୀ ପ୍ରେସ୍, କଟକ

---

# Katha Dashaka

By : **Dr. Yashobanta Samal**
Plot No. 1808/2751, Baramunda, Bhubaneswar - 30
Mob. : 94371 54224

Publisher : **Bijayinee Publications**
Shankarpur, Arunoday Market, Cuttack - 753 012
Phone : 0671-2328723

First Edition : 2012

Cover Design : Bijay Pradhan

Printed at : The Lakshmi Press, Cuttack

Price : ₹ 80 ISBN : 978-93-82360-16-2

କଥା କହି ନ ଥିବା କିମ୍ବା
ବୁଝି ନ ଥିବା
ଲୁବ୍‌ଲୁ ହାତରେ...

# କଥାପୂର୍ବରୁ କିଛି କଥା...

କଥା ଅସରନ୍ତି । ଯେତେ କହିଲେ ସରେନାହିଁ କି ଯେତେ ଶୁଣିଲେ ମନ ବୋଧ ହୁଏ ନାହିଁ । କେଉଁଠୁ ନା କେଉଁଠୁ ହଠାତ୍ କଥା ର ଖିଅ ବାହାରି ଆସେ ଆଉ ଲଟେଇ ଯାଏ ମାଟି ରୁ ଆକାଶ, ଦେହରୁ ବିଦେହ, ଅଭାବ ରୁ ଅନ୍ତରିକ୍ଷ, ଭୋକ ରୁ ଭୂଲୋକ । କଥା - ଆରମ୍ଭ ଯେତିକି ଆକସ୍ମିକ ଅନ୍ତ ସେତିକି ଅପ୍ରତ୍ୟାଶିତ ।

'କଥା ଦଶକ' ରେ ସ୍ଥାନିତ ଦଶଗୋଟି କଥା ର ସୃଷ୍ଟି ଭିନ୍ନ ଭିନ୍ନ ସମୟରେ, ପରିବେଶରେ ।

ପେଟ ଚାଖଣ୍ଡ ପାଇଁ ଭିଟାମାଟି ଉଛନ୍ନ ମଣିଷ, ପେନସନ୍ ପାଇଁ ଆଉଟୁପାଉଟୁ ଶିକ୍ଷକ, ପତ୍ନୀ ଙ୍କ ମୁହଁ ରେ ହସ ଟେନାଏ ଦେଖିବା ପାଇଁ ବାରମ୍ବାର ମିଛ ର ସାହାରା ନେଉଥିବା ସ୍ୱାମୀ- ଏମିତି ସମସ୍ତ ଚରିତ୍ର ଆମ ଆଖି ଆଗରେ ଅଛନ୍ତି । ଯିଏ ଯେଉଁ ସମୟରେ ଅଥୟ କଲା, ଯେ ଯେତିକିବେଳେ କଥା ହୋଇ ଉତୁରି ଆସିଲା ।

ଉକ୍ତ ସଂକଳନର ସମସ୍ତ କଥା ପୂର୍ବରୁ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । ସମ୍ପୃକ୍ତ ସମ୍ପାଦକମାନଙ୍କୁ ଇତ୍ୟବସରେ ଧନ୍ୟବାଦ ଜଣାଉଛି ।

କଳାହାଣ୍ଡି ର ମାଟି ଓ ମାଟି ର ମଣିଷମାନଙ୍କ ଭିତରେ ଅଛି ଏକ ନିଆରାପଣ । ମୋର ଲେଖକୀୟ ସତ୍ତାକୁ ସବୁପ୍ରକାର ସେମାନେ ପରିପୁଷ୍ଟ, ପରିବ୍ୟାପ୍ତ କରିଛନ୍ତି, ଏହି ଅବସରରେ ସେ ମାଟି ଓ ମାଟିର ମଣିଷମାନଙ୍କୁ ପ୍ରଣାମ ।

ମୋର ଲେଖାଟିଏ କେଉଁଠି ବାହାରିଲେ ଖୁସିରେ ବିଭୋର ହୋଇଯାଉଥିବା ମୋର ବାପା ବୋଉ, ସାନ ଭାଇମାନେ, ଭଉଣୀ, ଭାଇ ବୋହୂ ଏବଂ ଲେଖା ଧିମେଇ ଗଲେ ମନଉଣା କରି ସଚେତନ କରାଇ ଦେଉଥିବା ପତ୍ନୀଙ୍କୁ କୃତଜ୍ଞତା ଜଣାଇଲେ ଅସୁନ୍ଦର ହେବ କାରଣ ସେମାନେ ତ ଏ ସବୁଠୁଁ ବହୁ ଉର୍ଦ୍ଧ୍ୱରେ ।

ଏବଂ ଶେଷରେ, ଉକ୍ତ ସଂକଳନ ସହିତ ପୂର୍ବରୁ ଅନ୍ୟ ଚାରି ଗୋଟି ସଂକଳନର ପ୍ରକାଶନ ଏବଂ ପ୍ରସାର ଭଳି ଗୁରୁ ଦାୟିତ୍ୱ ନିଭାଇଥିବା ପ୍ରକାଶକ ତଥା 'ଜନସୁଧା'' ର ସଂପାଦକ ବଂଧୁ ଶ୍ରୀ ଦିଲୀପ କୁମାର ବେଉରାଙ୍କୁ ଅନେକ ଅନେକ ଧନ୍ୟବାଦ ।

ସନ୍ତୋଷ ...

# ସୂଚୀ





# ଗାରୁ ମାଝୀ

ସରକାରୀ ସ୍ଥାନକୁ ଜବରଦଖଲ କରି ସ୍ଥାୟୀ ବା ଅସ୍ଥାୟୀ ଘର ତୋଳିଥିବା, ଦୋକାନ ଦେଇଥିବା, କେବିନ୍ ପକେଇଥିବା ବ୍ୟକ୍ତିମାନଙ୍କୁ ଏତଦ୍‌ଦ୍ୱାରା ଜଣାଇ ଦିଆଯାଉଅଛି ଯେ, ଆସନ୍ତା ପନ୍ଦର ଦିନ ମଧ୍ୟରେ ବେଆଇନ୍ ଭାବେ ତିଆରିକରିଥିବା ଘରକୁ ସରକାରୀ ସ୍ଥାନରୁ ଉଠେଇନିଅନ୍ତୁ । ନଚେତ୍, ପନ୍ଦର ଦିନ ପରେ ମ୍ୟୁନିସିପାଲିଟି ତରଫରୁ ସମସ୍ତ ଘରକୁ ଭାଙ୍ଗି ଦିଆଯିବ.... ।

ମାଇକ୍‌ବନ୍ଧା ଜିପ୍‌ଗାଡ଼ି ଆଜି ସକାଳୁ ଘଣ୍ଟାକୁ ଘଣ୍ଟା ଚକ୍‌କରଖାଉଛି ଏବଂ ତୁହାକୁ ତୁହା ଏହିକଥା ଘୋଷଣାକରୁଛି । କାଳେ କିଏ ବୁଝି ନପାରିବେ ଜିପ୍ ଭିତରେ ଥିବା ଲୋକଟି ନିଠେଇ ନିଠେଇ ସମୟ, ତିଥି, ବାର ମଧ୍ୟ କହିଦେଉଛି – ପଚିଶ ସେପ୍ଟେମ୍ବର, ମଙ୍ଗଳବାର ଦିନ ଦଶଘଣ୍ଟା ସୁଦ୍ଧା ନିଶ୍ଚିତ ଭାବେ ଆପଣମାନେ ଏ ସ୍ଥାନ ଖାଲି କରିଦିଅନ୍ତୁ ।

ଛକବେଷ୍ଟିତ ପ୍ରାୟ ସବୁ ଦୋକାନୀଙ୍କର ଭାଳେଣି ପଡ଼ିଗଲା । ସହର ଉପକଣ୍ଠରେ ଗଢ଼ି ଉଠିଥିବା ତିରିଶ ପାଖାପାଖି ଏହି ଦୋକାନଗୁଡ଼ିକ କେବଳ ଦୋକାନ ହିଁ ନଥିଲା, ବରଂ ଅଧିକାଂଶ ଲୋକଙ୍କର ମୁଣ୍ଡଗୁଞ୍ଜିବାପାଇଁ ଥିଲା ଶେଷ ଆଶ୍ରୟ ସ୍ଥଳ । ରାସ୍ତାକୁ ମୁହଁ କରିଥିବା ଅଂଶରେ ଦୋକାନ ଚାଲିଥିଲା, ପଛପଟକୁ ସଂସାର । ମାତ୍ର ଦୁଇ ତିନୋଟି ଘର ଥିଲା ଇଟା–ପଥରରେ ତିଆରି ଏବଂ ଉଚ୍ଚା ଉଚ୍ଚା । ସେଥିରେ ଥିଲା ତେଜରାତି, କପଡ଼ା ଏବଂ ଷ୍ଟେସନାରୀ ଦୋକାନ । ତା'ର ମାଲିକମାନେ ଏଠି ରହୁନଥିଲେ । ଦୋକାନରେ ସଟର୍ ଲାଗିଥିଲା ଏବଂ ମୋଟା ମୋଟା କୋଳପ ପଡ଼ିଥିଲା । ବାକି ଯେତେ ଦୋକାନ ଥିଲା ସେଗୁଡ଼ିକ ଝାଟିମାଟି, ଖବର ଛାଉଣି, ଚୁଆଁଣିଆ । ଛ' ଫୁଟିଆ ଲୋକଟିଏ ସିଧାହୋଇ ଘର ଭିତରେ ଠିଆହେଲେ ମୁଣ୍ଡ ବାଜିବ । କିନ୍ତୁ ଆଶ୍ଚର୍ଯ୍ୟର କଥା, ସେହି ଅଣଓସାରିଆ, ଚୁଆଁଣିଆ ଘର ଭିତରେ ଚାରି–ପାଞ୍ଚ ପ୍ରାଣୀ କୁଟୁମ୍ବ ଧରି ସ୍ୱଚ୍ଛନ୍ଦରେ ଘରମାଲିକ ଚଳପ୍ରଚଳ ହେଉଥିଲେ । କେବଳ ମଣିଷ ନୁହଁନ୍ତି, ତାଙ୍କ ସହିତ ଦୁଇ ତିନିଟା କୁକୁଡ଼ା, ଦି'ଟା ଛେଳି, କୁକୁର,

ବିଲେଇ ମଧ୍ୟ । ସ୍ଥାୟୀ ବିଜୁଳି ସଂଯୋଗ କାହାରି ଘରକୁ ନାହିଁ, କିନ୍ତୁ ସମସ୍ତଙ୍କ ଘରେ ବିଜୁଳିବତୀ । ସମସ୍ତେ ହୁକ୍‌ପାର୍ଟି । ଜଣେ ତଳିଆ ବିଜୁଳି କର୍ମଚାରୀ ମାସକୁ ମାସ କୋଡ଼ିଏ ଟଙ୍କା ଅସୁଲ କରିନିଅନ୍ତି, କିଛି ଅସୁବିଧା ହୁଏନା ।

ଏହି ନୁଆଁଣିଆ ଖପର ଚାଳି ଭିତରୁ ଗୋଟିଏ ଘରର ମାଲିକ ହେଉଛି ଗାରୁ ମାଝୀ । ଦୋକାନ ଏବଂ ବାସଗୃହ, ଉଭୟ ସେଠି ଅଛି । ଏମିତି ଦେଖିଲେ ବାହାରକୁ ତା'ଦୋକାନଟି ଜଣାପଡ଼େ ନାହିଁ । ସ୍ଥାୟୀ ଗରାଖ ତା'ର ଅଛନ୍ତି । ନାଲି ଚା, ଗୁଲୁଗୁଲା, ବିଡ଼ି ଏବଂ ଗୁଟ୍‌ଖା । ଦୋକାନ ଭିତରେ ବସିବାପାଇଁ ସ୍ଥାନ ନାହିଁ । ଗରାଖମାନେ ଦୋକାନ ସାମ୍ନାରେ ଠିଆହୋଇ ଚା'ପିଅନ୍ତି, ବିଡ଼ି ଟାଣନ୍ତି । ସକାଳେ ଓ ସଞ୍ଜେ ତା ଦୋକାନରେ ଭିଡ଼ ବେଶ୍ ଜମେ । ଯେତେସବୁ ରିକ୍‌ସାବାଲା, କୁଲି, ମଜଦୁର୍, ଠେଲାବାଲା ସମସ୍ତଙ୍କର ଭିଡ଼ ସେଇଠି । ପ୍ରାୟ ଦୁଇ-ଚାରିଟା ରିକ୍‌ସା ତା'ଦୋକାନ ସାମ୍ନାରେ ଥିବ ସବୁବେଳେ । ଏଣୁ ରିକ୍‌ସା ଆଢୁଆଳରେ ଦୋକାନଟି ପ୍ରାୟତଃ ଲୁଚିଯାଏ । ଗାରୁ ମାଝୀର ଗରାଖ ବଢ଼ିବାର ଆଉଏକ କାରଣ ହେଲା ତା ଦୋକାନ ସାମ୍ନାରେ କୁଲି-ହାଟ ବସେ । ପ୍ରତିଦିନ ସକାଳୁ ପ୍ରାୟ ପଚିଶ ତିରିଶ ଜଣ ରେଜା-କୁଲି ସେଠି ରାସ୍ତାକଡ଼ରେ ଆସି ବସନ୍ତି । ଘରକାମ କିମ୍ବା ରାସ୍ତାକାମପାଇଁ ଠିକାଦାରମାନେ ପସନ୍ଦ ମୁତାବକ ସେମାନଙ୍କୁ ବାଛି ନିଅନ୍ତି । ଗାରୁ ମାଝୀ ବି ବେଳେବେଳେ ତାଙ୍କ ମଝିରେ ଠିଆ ହୋଇଯାଏ । ସେଦିନ ବୁଢ଼ୀ ଦୋକାନ ଚଳାଏ । ସନ୍ଧ୍ୟାବେଳକୁ କୁଲିମାନେ ପୁଣିଆସି ଏଇଠି ଏକାଠି ହୁଅନ୍ତି । ଚା, ଗୁଲୁଗୁଲା ବେଶ୍ ଭଲ ବିକ୍ରି ହୁଏ । ବୁଢ଼ୀ ବେଳେବେଳେ ପକୁଡ଼ି ବି ଛାଣେ । ତେବେ ତାହା ପାଣିପାଗ ଓ ଲୋକସଂଖ୍ୟା ଦେଖି ।

ଗାରୁ ମୁଣ୍ଡରେ ବଜ୍ର ପଡ଼ିଲା । ସର୍କାର ଏଠୁ ଉଠେଇ ଦେଲେ ସେ ଯିବ କୁଆଡ଼େ? ବୟସ ପଚାଶ ଡେଇଁଲା । ଦେହରୁ ବଳ ଖସିଗଲା । ପୁଣି ଗୋଟେ ଜାଗାରେ ଘର ବସେଇବାକୁ ତା'ର କାହିଁ ସାହସ ପାଉନାହିଁ । ତିନିବର୍ଷ ତଳେ ସାତ ପୁରୁଷର ଭିଟାମାଟିରୁ ସର୍କାର ଉଠେଇ ଦେଲା ଯେ, ସେ ଏଇଠି ଆସି ମୁଣ୍ଡ ଗୁଞ୍ଜିଥିଲା, ପୁଣି ଯଦି ଏଠୁ ଉଠିବ ଯିବ କୁଆଡ଼େ? ତାକୁ ଲାଗୁଛି, ସରକାରଙ୍କର ସେ ଯେମିତି ଗୋଟାଏ ଦୁଶମନ୍ । ସର୍କାର ପ୍ରଥମେ କହିଲା, କାରଖାନା ହବ - ଉଠ । ଏବେ କହୁଛି ରାସ୍ତା ଚୌଡ଼ାହବ - ଉଠ । ସତେଅବା ଏ ପୃଥ୍ୱୀରେ ତା ଭଳି ମୂର୍ଖ, ଅପରିଚ୍ଛନ୍ନ, ଆଦିବାସୀଙ୍କର କିଛି ଆବଶ୍ୟକତା ନାହିଁ, ଦାବି ନାହିଁ, ଅଧିକାର ନାହିଁ । ସେମାନେ ଯେମିତି ଗୋଟାଏ ବୋଝ ହୋଇ ରହିଛନ୍ତି ଏ ପୃଥିବୀରେ । ଟେକା ପଥର ଭଳି, ଯେତେବେଳେ ଯିଏ ଚାହିଁଲା, ଧରିଲା, ଫିଙ୍ଗିଦେଲା ।

ସର୍କାରଙ୍କର·କଣ୍ଟ ପୂରିବାକୁ ଆଉ ସାତଦିନ। ରାତିରେ ନିଦ ହେଉନାହିଁ। ଦିନରେ ବି କାମରେ ମନ ଲାଗୁନାହିଁ। ସନ୍ଧ୍ୟା ବେଳର ଉଷ୍ମତା ଆଉ ନାହିଁ ଛକରେ। କେବଳ ଦଳ ଦଳ ହୋଇ କଥାବାର୍ତ୍ତା ହେବା ଏବଂ ଆକାଶକୁ ଚାହିଁ ଦୀର୍ଘଶ୍ୱାସ ନେବା ହିଁ ସାର ହେଉଛି। ଅତିବେଶିରେ କେହି କେହି ଅଦୃଶ୍ୟ ଶତ୍ରୁ, ନଚେତ ଭଗବାନଙ୍କୁ ଗାଳି କରୁଛନ୍ତି। ଆଉ ମାସକୁ ଦଶ'ରା। ମା'ର ଛତର। କାହାରି ମୁହଁରେ ହସ ନାହିଁ, କଥା ନାହିଁ। ଆଖିରେ ଆଖିଏ ଭୟ – ଆଖି ସାମ୍ନାରେ ଉଜୁଡ଼ିଯିବ ସଂସାର, ଭାଙ୍ଗିଯିବ ସ୍ୱପ୍ନ, ଉଚ୍ଛନ୍ନ ହୋଇଯିବ ପେଟପାଟଣା। ବୁଲ୍‌ଡୋଜର୍ ଆସିବା ପୂର୍ବରୁ ଘର ଜିନିଷ ବାନ୍ଧିବାକୁ ପଡ଼ିବ, ଖପର ଓଲାରିବାକୁ ପଡ଼ିବ। ଝାଟିମାଟି ଭିତରୁ ବାଉଁଶ, କାଠ ସଂଗ୍ରହ କରିବାକୁ ପଡ଼ିବ। କିଛି ଲୋକ କାମରେ ଲାଗିଗଲେଣି। ବିଶ୍ୱାସ ଅଛି, ଭରସା ଅଛି। ଏଠି ନହେଲେ ଆଉ କେଉଁଠି ବାକି ଜୀବନ ଜୀଁବାକୁ ପଡ଼ିବ। ଗାରୁ ତା' ଘରକୁ ବାରମ୍ବାର ଆଖି ପୂରେଇ ଦେଖୁଛି। ଭାଙ୍ଗିବାକୁ ହାତଯାଉ ନାହିଁ। ଏମିତି ଆଉ କେତେଥର ସେ ନିଜ ଘର ନିଜେ ଭାଙ୍ଗିବ ? ଭଙ୍ଗାଘରକୁ ପୁଣି ଯୋଡ଼ିବ ?

ଘର ବସେଇବା କ'ଣ ଏତେ ଛୋଟିଆ କଥା ! ଚାରିପଟେ କାନ୍ଥ ଦେଇ ଉପରେ ଛାଉଣି ପକେଇଦେଲେ କ'ଣ ଘର ହୋଇଯିବ ! ମଣିଷ ଭଳି ଘରର ବି ଗୋଟେ ଆତ୍ମା ଅଛି। ଜୀବନ ଅଛି। ଘଟରେ ଜୀବନ ଭରିବା କ'ଣ ଏତେ ସହଜ କଥା ! ସେ ଦୀର୍ଘଶ୍ୱାସ ନେଲା।

ତିନିବର୍ଷ ପୂର୍ବେ ଗାରୁ ମାଝୀର ଅବସ୍ଥା ଏମିତି ନଥିଲା। ସେ ବେସାହାରା ନଥିଲା, କି ବିସ୍ଥାପିତ ହୋଇ ନଥିଲା। ତା'ର ସବୁଥିଲା – ଘର, ଜମିବାଡ଼ି, ସ୍ତ୍ରୀ, କୁଆନ ପୁଅ। ନିୟମଗିରି ଡଙ୍ଗର ତଳେ ଥିଲା ତା ଗାଁ – ଗୁଡ଼ିପଦର। ଗାଁ ଚାରିପଟେ ଆଖି ପାଉନଥିବା ଜଙ୍ଗଲ। ଜଙ୍ଗଲରେ ଭରପୂର ଥିଲା ଆମ୍ବ, କନ୍ଦ, କାନ୍ଥଲ, ମାଣ୍ଡିଆ ଆଉ ସଲପ ଗଛ। ଗାଁର ଠିକ୍ ପାଦ ପାଖରେ ଝରଣା। କୁଳୁକୁଳୁ ଶବ୍ଦ, ଥଣ୍ଡା ଥଣ୍ଡା, ମିଠା ମିଠା ପାଣି ବର୍ଷସାରା। ଅଭାବ ବୋଲି ତା'ର କିଛି ନଥିଲା। ପ୍ରକୃତିର ମଣିଷ ସେ, ତା' ପାଇଁ ପ୍ରକୃତି ଖଞ୍ଜି ରଖିଛି ଖାଦ୍ୟ, ପାନୀୟ। ସେଇଥିପାଇଁ ସେ ଡଙ୍ଗରକୁ, ଜଙ୍ଗଲକୁ, ମା'ବୋଲି ଡାକେ, ପୂଜାକରେ। ଗୁଡ଼ିପଦର ଗାଁରେ ଏଣେ ତେଣେ ତିରିଶଟା ଘର। କାହାରି ଘରେ କବାଟ ନାହିଁ, ତାଲା ନାହିଁ।

ଗାରୁ ବେଶ୍ ଖୁସିରେ ଥାଏ। ତାକୁ କାମରେ ସାହାଯ୍ୟ କରିବାକୁ ପୁଅ, ହାଡୁଆ, ଅଠର ବର୍ଷର ଯୁଆନ; ଆଉ ସ୍ତ୍ରୀ ଫୁଲମତୀ। ସେ ଡାକେ ଫୁଟୀ। ସଲପ ପି' ବାପ ପୁଅ ବେଳେବେଳେ ଝଗଡ଼ା ଲାଗନ୍ତି। କିନ୍ତୁ ରାତି ପାହିଲା ବେଳକୁ

ଝଗଡ଼ା ଆଉ ନଥାଏ । ଗାରୁ ଏବେ ଆଖି ପକଉଛି, ହାଡୁଆକୁ ହାତକୁ ଦି'ହାତ କରିବ । ତା ସମ୍ପ୍ରଦାୟରେ ଘିଚା–ବିହା ଅଛି ହେଲେ ଗାରୁର ସେଥିରେ ବିଶ୍ୱାସ ନାହିଁ । ସେ ପସନ୍ଦ କରିବ ହାଡୁଆର କନିଆଁ ।

କିନ୍ତୁ, ସବୁକିଛି ଓଲଟ ପାଲଟ ହୋଇଗଲା । ଗୁଡ଼ିପଦର ସମେତ ଚଉଦ ଖଣ୍ଡି ଗାଁର ଲୋକମାନଙ୍କୁ ଉଠିଯିବାପାଇଁ ସର୍କାର ନିର୍ଦ୍ଦେଶ ଦେଲେ । ସେଠାରେ ଗୋଟାଏ କାରଖାନା ହବ, ଆଲୁମିନା କାରଖାନା ।

ଗାରୁ ଆଲୁମିନାର ନାଁ ଶୁଣି ନଥିଲା । ତା ଡଙ୍ଗରରେ, ମାଟିରେ ଏମିତିକା ଗୋଟାଏ ମୂଲ୍ୟବାନ ଚିଜ ଲୁଚିକରି ଥିଲା ବୋଲି ସେ ଜାଣି ନଥିଲା, କି ତା ପୂର୍ବ ପୁରୁଷ ବି କେହି ଜାଣିନଥିଲେ । ସେ ତ ମୂର୍ଖ, ଡଙ୍ଗରିଆ କନ୍ଧ । ଆଲୁମିନାର ମହତ୍ତ୍ୱ ବୁଝିବାପାଇଁ ତା ମୁଣ୍ଡରେ ଭେଜା କାହିଁ । ସଭା ସମିତି କରି ସର୍କାରୀ ଲୋକ କେତେ ପ୍ରକାର ଭାଷାରେ ବୁଝେଇ ଦେଲେ – ତୁମେ ଗାଁ ଛାଡ଼ିଲେ ଏଠି କାରଖାନା ବସିବ । କାରଖାନା ବସିଲେ ଏ ଅଞ୍ଚଳର ବିକାଶ ଘଟିବ । ତୁମର କିଛି ଅସୁବିଧା ହେବ ନାହିଁ । ତୁମପାଇଁ ରାସ୍ତାହବ, ସ୍କୁଲ ହବ, ସିନେମା ଘର ହବ । ଏଠି ସହର ବସିବ, ବିଜୁଳିବତି ଆସିବ, ଦିନରାତି ତୁମେ ବାରିପାରିବନି, ଖାସ ତୁମରିପାଇଁ । ତୁମପାଇଁ ପକ୍କା ଘର ତିଆରି ହେବ, ସେଥିରେ କଳ ପାଣି ବ୍ୟବସ୍ଥା ହବ । ତୁମକୁ ସଭ୍ୟ, ଶିକ୍ଷିତ କରାଯିବ । ତୁମର ଉନ୍ନତି ହେବ । ତୁମର ଭଲପାଇଁ ଉନ୍ନତି ପାଇଁ ସରକାର ସବୁବେଳେ ଚିନ୍ତାକରୁଛି ।

ଗାରୁ ନିପଟ ମୂର୍ଖ । ଟିପ ଚିହ୍ନ ବି ଭଲଭାବେ ଦେଇପାରେ ନାହିଁ । ସେ ବୁଝିପାରିଲା ନାହିଁ ବିକାଶ କ'ଣ, ସଭ୍ୟତା କ'ଣ, ଶିକ୍ଷା କଣ ! କେବଳ ଏତିକି ବୁଝିଲା, ତା ପୃଥ୍ୱୀକୁ ବିପଦ ମାଡ଼ିଆସୁଛି । ତାକୁ ଏଠାରୁ ହଟେଇବାପାଇଁ ଯେତେସବୁ ଫନ୍ଦି ଫିକର ଚାଲିଛି । ସେ ବୁଝିପାରିଲା ନାହିଁ, ଏ ଜଙ୍ଗଲ, ଏ ଡୁମା, ଏ ଡଙ୍ଗର, ଏ ଝରଣା ଯେଉଁମାନେ ତା ସହ ପୁରୁଷ ପୁରୁଷ ଧରି ରହିଛନ୍ତି, ତାକୁ ଖୋଇଛନ୍ତି, ପେଇଛନ୍ତି ସେମାନଙ୍କୁ ଛାଡ଼ି ସେ ଯିବ କୁଆଡ଼େ ? ଏବେ ସେମାନଙ୍କ ଉପରକୁ ବିପଦ ମାଡ଼ିଆସିଲାଣି । ସେମାନଙ୍କୁ ରକ୍ଷା କରିବା କଥା, ଛାତି ପତେଇବା କଥା ସେ ଛାଡ଼ି ପଳେଇବ କୁଆଡ଼େ ! ସେ ଲମ୍ବ ହୋଇ ସଭାମଝିରେ ଶୋଇଗଲା ।

ପ୍ରକୃତ ବିପର୍ଯ୍ୟୟ ସେଇଠୁ ଆରମ୍ଭ, ଯେତେବେଳେ ଗାରୁର ପୁଅ ହାଡୁଆ ହେଲା ବାପର ବିରୋଧୀ । ହାଡୁଆ ବୁଝେଇଲା– ଗାଁ ଛାଡ଼ିଲେ ସରକାର କ୍ଷତିପୂରଣ ଦବ, କମ୍ପାନୀରେ ଚାକିରି ଦବ, ଘର ତିଆରି କରିଦବ । କିଛି ନହେଲେ, କ୍ଷତିପୂରଣ ଟଙ୍କାରେ ବ୍ୟବସାୟ କରି ଆରାମରେ ରହିବା ।

ଗୁଡ଼ିପଦର ଗାଁରେ ଶହେ ଟଙ୍କିଆ ନୋଟ୍ ଆଗରୁ କେହି ଛୁଇଁ ନଥିଲେ। କ୍ଷତିପୂରଣ ବାବଦକୁ କୋଡ଼ିଏ ହଜାରରୁ ଆରମ୍ଭ କରି ପଚାଶ ହଜାର ଦେବାପାଇଁ ସରକାର ଯେତେବେଳେ ଘୋଷଣାକଲେ, ହାଡୁଆ କହିଲା – ମୁଁ ମୋ ବାପ ଠାରୁ ଅଲଗା। ତେଣୁ ତାକୁ ମିଳିଲା କୋଡ଼ିଏ ହଜାର। ଗାରୁକୁ ମିଳିଲା ପଇଁତିରିଶ ହଜାର। ପଞ୍ଚାବନ ହଜାର ଟଙ୍କା ଏକକାଳୀନ ଦେଖି ହାଡୁଆ କାହିଁକି, ଅଧିକାଂଶ ଲୋକଙ୍କର ଆଖି ଖୋସିହୋଇଗଲା। କେବଳ ପୁଅ ମୁହଁକୁ ଚାହିଁ ଗାରୁ ହଁ ଭରିଲା, ଆଉ ଟିପ ଚିହ୍ନ ଲଗେଇଦେଲା। ସବୁତକ ଟଙ୍କା ରହିଲା ହାଡୁ ପାଖରେ। ସେ କହିଲା– କିଛିଦିନ ପରେ ଏଇଠି ସହର ଗଢ଼ି ଉଠିବ। ସେ ଗୋଟାଏ ବଡ଼ ଦୋକାନ କରିବ। ସେଠି ସବୁ ମିଳିବ–ଚାଉଳ, ଡାଲି, ତେଲ ଠାରୁ ଆରମ୍ଭ କରି କାହୁଲ, ମହୁଲ, ମାଣ୍ଡିଆ ପର୍ଯ୍ୟନ୍ତ। କାଠ କାଟିବାକୁ କିମ୍ବା ମହୁଲ ଗୋଟେଇବାପାଇଁ ଜଙ୍ଗଲକୁ ଆଉ ଯିବାକୁ ପଡ଼ିବ ନାହିଁ। ଏଇଠି ଗୋଡ଼ ପାଖରେ ସବୁ ମିଳିବ।

ସତକୁ ସତ, ହାଡୁଆ କଥା ସତ ହେଲା। ଦିନ କେଇଟାରେ ଗୁଡ଼ିପଦର ଗାଁ ରୂପ ବଦଳିଗଲା। ସେଠି ଗୋଟାଏ ଗାଁ ଥିଲା ବୋଲି ଅଜଣା ଲୋକ ବିଲ୍‌କୁଲ ଠଉରେଇ ପାରିବ ନାହିଁ। ସବୁ ସମାନ ହୋଇଗଲା। ଟିକିଏ ବି ଆବଡ଼ା ଖାବଡ଼ା ନାହିଁ। ଘର, ଦ୍ୱାର, ଗଛ, କାହାରି ଚିହ୍ନବର୍ଣ୍ଣ ବି ରହିଲା ନାହିଁ। ଚାହିଁ ଦେଲେ ଆଖି ଯାଇ ସିଧା ଧକ୍‌କା ଖାଇଲା ନିୟମଗିରିରେ। ମଝିରେ କିଛି ନାହିଁ, ସବୁ ଜାଗା ସମତଳ ହେବା ପରେ ପାଚେରି ଉଠିଲା, ରାସ୍ତା ତିଆରି ହେଲା, ଭେଁ ଭାଁ କେଁ କାଁ କରି କେତେ ରକମର ଗାଡ଼ି ମଟର ଆସିଲା। କେତେ ରକମର ଯନ୍ତ୍ରପାତି। ଭଳିକି ଭଳି ଲୋକ। ଏତେଗୋରା। ଧୋବଫରଫର। ସମସ୍ତେ ମୋଟାସୋଟା, ସୁଟ୍‌ବୁଟ୍ ପିନ୍ଧା। ଏବେ ଏତେ ଲୋକଙ୍କପାଇଁ ବଜାର ବସିଲା, ଦୋକାନ ପଡ଼ିଲା, ଉଠାସିନିମା ଘର ହେଲା, ମହୁଲି ସାଙ୍ଗରେ ବିଦେଶୀ ବି ମିଳିଲା। ସନ୍ଧ୍ୟା ପୂର୍ବରୁ ଯେଉଁ ଅଞ୍ଚଳରେ ଦିନେ ତାଟି ପଡୁଥିଲା, ଏବେ ସେଠି ରାତି ଅଧଯାଏ ଚାଲିଛି ରଙ୍ଗରସ। ହାଡୁଆକୁ ଏସବୁ ଯେମିତି ସ୍ୱପ୍ନପୁରୀପରି ଲାଗିଲା। ତା ଦେହରେ ଖେଳିଗଲା ଅନନ୍ୟ ରୋମାଞ୍ଚ। ହୋଟେଲ୍‌ରେ ବିରିଆନି ଖାଇଲା, ବିଦେଶୀ ପିଇଲା, ସଲପ କଥା ଭୁଲିଗଲା ବିଲ୍‌କୁଲ୍। ଆଉ ରାତି ଅଧରେ ନଙ୍ଗଳା ସିନିମା ଦେଖି ଖୋଜିଲା ନିଷିଦ୍ଧ ଇଲାକା। ତାହା ମଧ ମିଳିଗଲା। ସେଥିପାଇଁ ଏଜେଣ୍ଟ ମାନେ ଖୋଜୁଥିଲେ ଗରାଖ। ହାଡୁଆ ଜଣେ ସ୍ଥାୟୀ ଗରାଖ ହୋଇଗଲା ସେଠି ଏବଂ ଦୋକାନ ଆରମ୍ଭକରିବା କଥା ଭୁଲିଗଲା ସମ୍ପୂର୍ଣ୍ଣ ଭାବେ।

..........................................

କିନ୍ତୁ ଗାରୁ ମାଝୀକୁ ଚିନ୍ତାଘାରିଲା । ଘର ଗଲା, ଜମି ଗଲା, ଟଙ୍କା ଗଲା । ଏବେ ପୁଅ ବି ହାତରୁ ଖସିଗଲା । ବୁଢ଼ାବୁଢ଼ୀ ରହିବେ କୋଉଠି, ଖାଇବେ କ'ଣ, ବଂଚିବେ କେମିତି ? ଏସବୁ ଭାବି ଗାଁର ଆଉ ଦୁଇ ଚାରିଜଣ ମିଶି ପଳେଇ ଆସିଲେ ସହର । ସେମାନେ ରିକ୍ସା କିଣିଲେ । ଗାରୁ କୁଲି ଭୂତି କଲା । ଫୁଲମତୀ ବି କାମକଲା । ଆସ୍ତେ ଆସେ ସଂଚୟ କରି କୁଡ଼ିଆ ଖଣ୍ଡେ ତିଆରି କଲେ । ଆଉ ଆରମ୍ଭ କଲେ ନାଲିଚା', ଗୁଲୁଗୁଲା-ବିଡ଼ି ଦୋକାନ । ତିନିବର୍ଷ ହେଲା, ଏମିତି ଚାଲିଛି । ଗାରୁ, ଏଥର ଭାବିଛି ଦୋକାନକୁ ଟିକେ ବଢ଼େଇବ । ହୋଟେଲଟିଏ କରିବ । ଏଥିପାଇଁ, ଘର ଭିତରେ ଦୁଇଟା ଲମ୍ବା ବେଞ୍ଚ ତିଆରି କରିଛି । ସୁଦୃଢ଼ ଦୁଇ ଖମ୍ବ ଉପରେ ପିଟା ହୋଇଛି ଦୁଇଟି ପଟା । ଟେବୁଲ ଦୁଇଟା ଯୋଗାଡ଼ରେ ଅଛି । ସୁବିଧା ଦେଖି, ହୋଟେଲ ଆରମ୍ଭକରିବ ।

ସରକାରଙ୍କର ଘରଭଙ୍ଗା ନୋଟିସ୍‌ରେ ଗାରୁର ସବୁ ଯୋଜନା ପାଣି ଫାଟିଗଲା । ଏବେ ଦିନରାତି ସେହି ଚିନ୍ତା । ଯିବ କୁଆଡ଼େ । ମୁଣ୍ଡ ଗୁଞ୍ଜିବ କୋଉଠି ? କେବଳ ଗାରୁ ନୁହେଁ, ଛକ ବେଷ୍ଟିତ ପ୍ରାୟ ସବୁ ବାସିନ୍ଦାଙ୍କର ଏକା ପ୍ରକାର ଚିନ୍ତା । କୁଆଡ଼େ ଯିବା ?

ଅଭାବ ଅସୁବିଧାରୁ ବେଳେବେଳେ ଅଦ୍ଭୁତ, ଅଭାବନୀୟ ଘଟଣା ଘଟେ । ଦୁଇଦିନ ଥାଏ କଣ୍ଟ ପୂରିବାପାଇଁ । ଛକ ଉପରେ ଘଟିଲା ଏକ ବିସ୍ମୟକର ଘଟଣା ।

ସିନ୍ଦୂରା ଫାଟୁଥାଏ । କିଚିରି ମିଚିରି ଶବ୍ଦରେ ମୁଖରିତ ହେଉଥାଏ ସହରର ଉପକଣ୍ଠ । ଅଳ୍ପ କିଛି ଲୋକ ଯା'ଆସ କରୁଥାନ୍ତି । ଦ୍ରୁତ ବେଗରେ ବୁଲା କୁକୁରମାନେ ଧାଉଁଥାନ୍ତି ଏବଂ ଚିତ୍କାର ସହ କଳାଧୂଆଁ ଛାଡ଼ି ଗୋଟାଏ ଅଧେ ଟ୍ରକ ଯା'ଆସ କରୁଥାଏ । ସେହି ବ୍ରାହ୍ମ ମୁହୂର୍ତ୍ତରେ ଗାରୁ ମାଝୀ ବାହାରିଆସିଲା ଘରୁ । ଠେଙ୍ଗାଟିଏ ହାତରେ । ରାସ୍ତା ମଝିରେ ସୂର୍ଯ୍ୟଙ୍କ ଆଡ଼କୁ ମୁହଁକରି ଠିଆ ହେଲା ଏବଂ ଖୁବ୍ ଯୋର୍‌ରେ ଚିତ୍କାର କଲା, 'ଶୁଣ ଶୁଣ ଶୁଣ' । ତା'ପରେ ସେ ଘୋଷଣାକଲା – ଏ ସୂର୍ଯ୍ୟଦେବତା, ଧରତୀମାତା, ଏ ଗଛବୃଛ ସମସ୍ତଙ୍କୁ ସାକ୍ଷୀ ରଖି ମୁଁ ସରକାରଙ୍କୁ, ନେତାଙ୍କୁ ସମସ୍ତଙ୍କୁ ଜଣେଇ ଦଉଛି – ଆଜିଠାରୁ ଏ ଜାଗାରୁ ମୁଁ ଟିପେ ମଧ ଘୁଂଚିବି ନାହିଁ । ଏ ଧରତୀମାତା ମୋର । ଏ ପାଣି-ପବନ ମୋର । ମୁଁ କୁଆଡ଼େ ଯିବିନାହିଁ ।

ଗାରୁର ଚିତ୍କାର ଶୁଣି ପଡ଼ୋଶୀମାନେ ଉଠିପଡ଼ିଲେ ଏବଂ ଅଳ୍ପ କିଛି ବାଟୋଇ ମଧ ଗତି ବନ୍ଦ କରିଦେଲେ । ଗାରୁର ଏ ପ୍ରକାର କାର୍ଯ୍ୟକଳାପ ଝୁମ୍ପୁଡ଼ି ବାସିନ୍ଦାମାନଙ୍କୁ ଆଚମ୍ବିତ ଲାଗୁଥାଏ । ସେମାନେ ଜାଣିଥିଲେ, ଗାରୁ ଏକ ଚୁପ୍‌ଚାପ୍ ପ୍ରକୃତିର ଲୋକ । ନେତା ହେବାପାଇଁ ତା'ର କୌଣସି ଅଭିଳାଶ ନଥିଲା, କିମ୍ବା ତା' ଠାରେ ନେତାର

ଲକ୍ଷଣମାନ ବିଲକୁଲ୍ ଦିଶୁ ନଥିଲା । ଏଣୁ ସମସ୍ତେ ଭାବିଲେ – ହୁଏତ ଘରଭଙ୍ଗା ନୋଟିସ୍‌ରେ ତା'ର ମୁଣ୍ଡ ବିଗିଡ଼ି ଯାଇଛି କିମ୍ବା ତାକୁ କେହି ଦେବୀ ସବାର ହୋଇଛନ୍ତି । ନହେଲେ ଏ ପ୍ରକାର ଆସ୍ପର୍ଦ୍ଧା କରନ୍ତା କେମିତି ?

ଗାରୁ ଆହ୍ୱାନ ଦେଲା – ଆସ, ମୋ ସହ ହାତ ମିଳାଅ, ମୋ ପାଖରେ ଠିଆ ହୁଅ, ତୁମର ଘର କେହି ଭାଙ୍ଗିପାରିବେ ନାହିଁ ।

ଭିଡ଼ ଜମିଲା ଆସ୍ତେ ଆସ୍ତେ । ଗାରୁ ଠିଆହୋଇଛି ଠେଙ୍ଗାଧରି ଗୋଟିଏ ଷ୍ଟାଚ୍ୟୁ ଭଳି, ରାସ୍ତାର ଗୋଟାଏ କଡ଼କୁ । ଫୁଲମତୀ କିଛି ବୁଝି ନପାରି ତା ପଛରେ ଖଣ୍ଡେ ଦୂରରେ ବସିଛି । ପଡ଼ୋଶୀମାନେ ଗାରୁ ସାମ୍ନାରେ ଆଶ୍ଚର୍ଯ୍ୟ ହୋଇ ଚାହିଁଛନ୍ତି । ଛୋଟପିଲାମାନେ ଗାରୁର ଅତି ପାଖାପାଖି ହୋଇ ତାକୁ ଦେଖୁଥାନ୍ତି । ରିକ୍‌ସାବାଲାମାନେ ରିକ୍‌ସାକୁ ରାସ୍ତା କଡ଼କୁ ଥୋଇଦେଇ ତା ପାଖକୁ ଲାଗି ଆସିଲେ । କୁଲି ମଜୁରିଆ ମାନେ, ଯେଉଁମାନେ ପ୍ରାୟ ପ୍ରତିଦିନ ତା ଠାରୁ ନାଲିଚା' ଗୁଲୁଗୁଲା ଖା'ନ୍ତି ସେମାନେ ତା'ର ଚାରିପଟେ ବୃତ୍ତ ଆକାରରେ ବସିଗଲେ । ଏମିତି ଏମିତି ଲୋକ ଗହଳି ଶହେ ଟପିଲା ।

କଥା ରଟିଗଲା ସହର ସାରା । ଜନୈକ ଗାରୁ ମାଝୀ, ଝୁମ୍ପୁଡ଼ି ବାସିନ୍ଦା, ରାସ୍ତା ଅବରୋଧ କରିଛି । ତା' ସହ ଦୁଇ ଶହ ଲୋକ । ପୁଣି ଠେଙ୍ଗାବାଡ଼ି, ଫାର୍ସା, ଧନୁତୀର ହାତରେ । ତୁଣ୍ଡ ବାଇଦ ବ୍ୟାପିଗଲା । ଏକ ସମ୍ବେଦନଶୀଳ ଘଟଣା । ଜିଲ୍ଲାପାଳଙ୍କ ନିର୍ଦ୍ଦେଶ ଆସିଲା । ବୁଦ୍ଧିବିଚାରି କାମକର । ବିଲ୍‌କୁଲ୍ ବଳ ପ୍ରୟୋଗ କର ନାହିଁ । ପୋଲିସ ଭ୍ୟାନ୍ ଆସିଗଲା, ମାଜିଷ୍ଟ୍ରେଟ୍ ବି । କାଳେ କିଛି ଅଘଟଣ ଘଟିପାରେ । ସାମ୍ବାଦିକମାନେ କାହିଁ ଥିଲେ ସନ୍ଧାନ ପାଇ ଛୁଟିଆସିଲେ ଏବଂ ଦିନ ନ'ଟା ସୁଦ୍ଧା ସାରା ଭାରତରେ ଟି.ଭି., ରେଡ଼ିଓଦ୍ୱାରା ପ୍ରସାରିତ ହୋଇଗଲା ଘରଭଙ୍ଗାକୁ ବିରୋଧ କରି, କଳାହାଣ୍ଡିରେ ହଜାର ହଜାର ଲୋକଙ୍କର ରାସ୍ତାରୋକ । ପରିସ୍ଥିତିର ଗୁରୁତ୍ୱ ଉପଲବ୍ଧି କରି ସ୍ଥାନୀୟ ନେତାମାନେ ପହଞ୍ଚିଗଲେ । ପରେପରେ ଜାତୀୟ ଏବଂ ରାଜ୍ୟସ୍ତରୀୟ ଦଳର କିଛି ଛାମୁଆଁ ନେତା ବି ଆସିଗଲେ । ଏବେ ସମସ୍ତଙ୍କର ଦୃଷ୍ଟିର କେନ୍ଦ୍ରବିନ୍ଦୁ ଗାରୁ ମାଝୀ । ଉତ୍ସାହୀ ବ୍ୟକ୍ତିଙ୍କଦ୍ୱାରା ଏକ ପଥପ୍ରାନ୍ତ ସଭାର ଆୟୋଜନ ମଧ୍ୟ ହୋଇଗଲା । ମାଇକ ଆସିଲା, ଫଟୋବାଲା ଆସିଲେ । ଯା'ଭିତରେ କେହି ଜଣେ ଗାରୁ ବେକରେ ଫୁଲମାଳଟିଏ ଝୁଲାଇଦେଇ ସ୍ଲୋଗାନ ଟିଏ ଛାଡ଼ିଦେଲା– ଗାରୁ ମାଝୀ, ଜିନ୍ଦାବାଦ । ନେତାମାନେ ତହଳ ବିକଳ ହେଲେ । ଗାରୁ ମାଝୀ ପାଖରେ ଛିଡ଼ା ହୋଇ ଜନତାଙ୍କ ଉଦ୍ଦେଶ୍ୟରେ ଆରମ୍ଭ ହେଲା ଭାଷଣ । ଖଟିଖିଆ, ମଜୁରିଆ, ବସ୍ତିଲୋକମାନଙ୍କପାଇଁ ସେମାନେ କିପରି ଦିନରାତି ଚିନ୍ତା କରୁଛନ୍ତି, ତାଙ୍କ ପାର୍ଟି

ଚିନ୍ତା କରୁଛି, ତା'ର ବିଶଦ୍ ବିବରଣୀ ପ୍ରଦାନ କରାଗଲା । ଗାରୁ ମାଝୀ କିଛି କହୁ ନଥାଏ । ବସିଥାଏ ଚୁପ୍‌ଚାପ୍, ଶୁଣୁଥାଏ । ସେ ଆଶ୍ଚର୍ଯ୍ୟ ହେଉଥାଏ, ତା କୁଡ଼ିଆର ସୁରକ୍ଷାପାଇଁ ଏତେଲୋକ ଅଣ୍ଟା ଭିଡ଼ିଛନ୍ତି! ଏତେ ବଡ଼ ବଡ଼ ନେତା କାନ୍ଦକାନ୍ଦ, ଖାସ୍ ତା' ପାଇଁ ! ସେ ନିଜେ ମଧ ବିଶ୍ୱାସ କରିପାରିଲା ନାହିଁ । 'ଗାରୁ ଭାଇ ଜିନ୍ଦାବାଦ', ପଛକୁ ନେତାମାନଙ୍କ ନାମରେ ଜିନ୍ଦାବାଦ ଧ୍ୱନି ଦିଆଗଲା ଏବଂ ସରକାର ମୁର୍ଦ୍ଦାବାଦ, ସରକାର ଇସ୍ତଫା ଦିଅ ଧ୍ୱନି ମଧ ପ୍ରତିଧ୍ୱନିତ ହେଲା ତୁହାକୁ ତୁହା । କେତେକ ନେତା ଗାରୁ କାନ୍ଧରେ ହାତ ରଖି ଫଟୋ ଉଠାଇଲେ, ଆଉ କିଛି ତାକୁ ଗଳାରେ ଲଗାଇଲେ । ଏଇ ତିନିବର୍ଷ ଭିତରେ ପ୍ରାୟ ଆଠ ଦଶ ଥର ନେତାମାନଙ୍କ ରାଲିରେ ଗାରୁ ସାମିଲ ହୋଇଛି, ଖାଇବା ପିଇବା ପାଇଛି । ସେ ସବୁବେଳେ ଥାଏ ଧାଡ଼ିର ପଛଆଡ଼କୁ, କେବଳ ହାତ ଟେକେ । କେବେ ମୁହଁ ଖୋଲିନି । ଆଜି ଭଳି ବିରଳ ଦିବସରେ ସେ ବି ଚୁପ୍ ରହିଲା । ଯାହା କହିବା କଥା, ନେତାମାନେ ତ କହୁଛନ୍ତି । ସେ କେବଳ ଭାବୁଥିଲା ତାର ନିଜର ଉଚ୍ଚତା ଠାରୁ ଆଜି କିଛି ଅଧିକ ଡ଼େଙ୍ଗା ହୋଇଯାଇଛି ସେ ।

ମିଟିଂ ଚାଲିଲା ଦିନ ବାରଟା ପର୍ଯ୍ୟନ୍ତ । ଉପ-ଜିଲ୍ଲାପାଳ ସଭାସ୍ଥଳକୁ ଆସିଲେ ଏବଂ ଘୋଷଣା କଲେ – ଆପଣମାନଙ୍କ ପାଇଁ ସରକାର ରାଇପଦର ଠାରେ ଥଇଥାନ ବ୍ୟବସ୍ଥା କରିବେ । ସମସ୍ତ ବାସିନ୍ଦାଙ୍କୁ ସେଠାରେ ଘରଡ଼ିହ ଯୋଗାଇ ଦିଆଯିବ । ଯଦି ଆଉ କିଛି କାହାର କହିବାର ଥାଏ, ଜିଲ୍ଲାପାଳଙ୍କ କାର୍ଯ୍ୟାଳୟକୁ ଯେକୌଣସି ଦିନ ଆସି ସାକ୍ଷାତ କରିପାରିବେ ଏବଂ ଆଜିଠାରୁ ଅନିର୍ଦ୍ଧିଷ୍ଟ ସମୟ ପର୍ଯ୍ୟନ୍ତ ଘରଭଙ୍ଗା କାର୍ଯ୍ୟ ସ୍ଥଗିତ ରହିଲା ।

ଅଧିକାରୀଙ୍କ ଘୋଷଣା ପରେ 'ହୋଓ... ଓ... ଓ...' ବିଜୟ ସୂଚକ ଉଲ୍ଲାସ ସ୍ୱତଃ ଉଚ୍ଛୁଳିପଡ଼ିଲା ଜନ ସମାବେଶରୁ । ପ୍ରାୟ ଅଧଘଣ୍ଟା ଭିତରେ ଗହଳି ଭାଙ୍ଗିଗଲା ଏବଂ ଫେରିଯିବା ବେଳେ ସମସ୍ତେ ହସ ହସ ମୁହଁରେ ମୁଣ୍ଡ ଟୁଙ୍ଗାରି ଗାରୁ ମାଝୀ ଠାରୁ ବିଦାୟ ନେଉଥାନ୍ତି । ଘଟଣାର ଆକସ୍ମିକତା ଏବଂ ନାଟକୀୟତାକୁ ଭାବି ଭାବି ଗାରୁ ନିଜକୁ ମଧ ପ୍ରଶ୍ନ କଲା, ସତରେ କ'ଣ ତା ଘର ଭଙ୍ଗା ହବ ନାହିଁ? ତାକୁ ଘର ଡ଼ିହ ମିଳିବ ରାଇପଦରରେ ?

ରାଇପଦର ଏଠୁ ଦଶ ମାଇଲ, ନିକାଞ୍ଚନ ଜାଗା । ହଉ ପଛେ ନିକାଞ୍ଚନ, ସେ ଯିବ । ପୁଣି ତିଆରି କରିବ ଘର । ଜୀବନର ଅବଶିଷ୍ଟ ଆୟୁଷ ବିତେଇଦେବ ସେଇଠି, ଫୁଲମତୀ ସହ । ଏବେ ତା'ର ହୃଦ୍‌ବୋଧ ହେଲା, ତାକୁ ରାଇପଦରରୁ ଆଉ କେହି ଉଠ୍ ବୋଲି କହିପାରିବେ ନାହିଁ, କାରଣ ଏ ଜାଗା ସ୍ୱୟଂ ସରକାର ତାକୁ ଦବ । ଯେଉଁଠି ସରକାର ଉଠେଇ ଦବ । ସେଠି ଭଗବାନ ରଖିପାରିବ ନାହିଁ । ଆଉ ଯେଉଁଠି ସରକାର ବସେଇବ, ସେଠୁ କୋଉ ସଇତାନ ତାକୁ ଉଠ୍ ବୋଲି କହିପାରିବ ନାହିଁ ।

ଠକ୍ ଠକ୍! କବାଟରେ ଆଘାତ କଲା କିଏ। ରାତି ଅଧହେଲାଣି। ଗାରୁ ଗାଲେଇ ଶୋଇବାକୁ ଚେଷ୍ଟା କଲା। ଧେତ୍ ଯିଏ ହେଇଥିବ, ପଳେଇଯିବ। ଠକ୍ ଠକ୍, ଠକ୍ ଠକ୍। ଆଘାତ ଅଧିକ ହେବାରୁ କ୍ରୁଦ୍ଧିତ ହୋଇ ଗାରୁ ଉଠିଲା ଏବଂ ଟାଟି ଖୋଲି ଡିବିରି ଆଲୁଅରେ ଯାହାକୁ ଦେଖିଲା, ବିଶ୍ୱାସ ନକରିପାରି ଡାକ ପକେଇଲା – ଫୁଟି ! ଉଠ, ଉଠ୍ ଦେଖିବୁ ଆ' ହାଡୁଆ ଆସିଛି !!!

ତିନିବର୍ଷ ତଳେ ହାଡୁଆ ସହ ଶେଷ ଦେଖା ହୋଇଥିଲା। ଟିପଚିହ୍ନ ଦେଇ ବିସ୍ଥାପିତ କଲୋନୀ ଘର ହାଡୁଆକୁ ଛାଡ଼ିଦେଇ, ଭାଗ୍ୟକୁ ଆଦରି ସ୍ୱାମୀ–ସ୍ତ୍ରୀ ଗୁଡ଼ିପଦର ଛାଡ଼ିଥିଲେ। ସେମାନଙ୍କର ଆଶା ଥିଲା, ବିଶ୍ୱାସ ଥିଲା, ହାଡୁ ତା ନିଜ ବୁଦ୍ଧିରେ ହଉ ବରଂ ଭଲରେ ରହୁ। ସୁଖରେ ରହୁ। କିନ୍ତୁ ଏବେ ହାଡୁଆକୁ ଦେଖିଲେ କେହି କହିବ ନାହିଁ, ସେ ଗୋଟାଏ ଏକୋଇଶ ବର୍ଷର ଯୁବକ। ହାଡୁଆର ଦେହ ଯେପରି ହାଡ଼ବଣ ପରି ଦିଶୁଛି। ଆଖି ପଶିଯାଇଛି। ହାତଗୋଡ଼ ନଡ଼ ନଡ଼। ଅକାଳ ବାର୍ଦ୍ଧକ୍ୟ ଘୋଟିଛି ତାକୁ।

ହାଡୁଆ ମା–ବାପାଙ୍କୁ ଦେଖି କାନ୍ଦ କାନ୍ଦ ହୋଇ ସବୁକଥା ସତ ସତ ବଖାଣି ଗଲା। ଦୋକାନ କରିବାପାଇଁ ରଖିଥିବା ଟଙ୍କା କେମିତି ଦୁଇବର୍ଷ ଭିତରେ ଶେଷ ହୋଇଗଲା, ସେ ସ୍ୱୀକାର କଲା। ହୋଟେଲରେ ଖାଇ, ସିନିମା ଦେଖି, ରଙ୍ଗରସ କରି ପାଣି ଭଳି ବହିଗଲା ପଞ୍ଚାବନ ହଜାର। ଟଙ୍କା ସରିଯିବା ପରେ ମନ ମାଫିକ୍ ତାକୁ କାମ ବି ମିଳିଲାନି। ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ତାର ଶିକ୍ଷା। କମ୍ପାନୀରେ ସେ ବାହେଲ ହୋଇପାରିଲା ନାହିଁ। କମ୍ପାନୀର ଦରକାର ଇଂଜିନିୟର୍, ଗ୍ରାଜୁଏଟ୍ ଏମିତି କେତେ ପାଠ ପଢୁଆ ପିଲା। ତା'ପରେ, ଛୋଟମୋଟ କାମ ତା ମନକୁ ପାଇଲା ନାହିଁ। ଯେଉଁ ହୋଟେଲରେ ବସି ସେ ବିରିଆନି ଖାଇଛି। ଚା, କଫି, ଥଣ୍ଡା ପି'ଛି; ସେହି ହୋଟେଲରେ କାମ କରି ପେଟ ପୋଷିବାକୁ ତାକୁ ଖରାପ ଲାଗିଲା। ଦୋକାନ ଖୋଲିବା ପାଇଁ ପାଖରେ ଆଉ ଧନ ନାହିଁ। ଅଗତ୍ୟା, ଜଣେ ପେଟି କଣ୍ଟ୍ରାକ୍ଟର୍ ପାଖରେ କିଛିଦିନ କାମକଲା। ଏ କାମ ବି ପୋଷେଇଲାନି। ବସି ଖାଇଥିବା ଲୋକ ପକ୍ଷେ, ଖଟି ଖାଇବା ହେଲାନି। ଦି'ଟା ବର୍ଷରେ ତାକୁ କିଏ ଯେମିତି ଅକର୍ମଣ୍ୟ, କୋଢ଼ିଆ କରିଦେଲା। ଶେଷରେ ପେଟ ବିକଳରେ କାରଖାନା ବନ୍ଦ କରିବାପାଇଁ ହେଉଥିବା ଆନ୍ଦୋଳନରେ ସେ ମିଶିଲା। ତାଙ୍କ ସହ ଖାଇଲା, ପିଇଲା, ରହିଲା। ରାଲିରେ ଗଲା। କମ୍ପାନୀ ବିରୋଧରେ ସ୍ଲୋଗାନ ଦେଲା, ଏବଂ, ଦିନେ କିଛିଲୋକ କମ୍ପାନୀ ଗୋଦାମରେ ନିଆଁ ଲଗେଇଦେଲେ ଯେ, ସେହି ଦିନୁ ହାଡୁଆକୁ ପୋଲିସ୍ ଖୋଜୁଛି।

ଫୁଲମତୀ ପୁଅ ଦେହରେ ହାତ ବୁଲେଇଲା । କାନ୍ଦିଲା । ଅଦୃଶ୍ୟ ଶତ୍ରୁକୁ ଅଭିସମ୍ପାଦ ଦେଲା । ଯାହାପାଇଁ ତା ପରିବାରର ଏ ଅବସ୍ଥା, ତା'ର ବଂଶ ବୁଡ଼ିଯାଉ । ଗାରୁ ପୁଅକୁ ହିମ୍ମତ ଦେଲା । ତୋର କିଛି ହୋଇନି । ଆମେ ପୁଣିଥରେ ରାଇପଦରରେ ଘର କରିବା, ଖଟିବା । ଆମ ସଂସାରକୁ ପୁଣି ହସ ଫେରିଆସିବ । ଆମେ ନିଶ୍ଚୟ ଖୁସିରେ ରହିବା । ଦୁଆଁଣିଆ ଖପର ଘର ଭିତରେ ସେଦିନ ଉଚ୍ଚ ଆଶା ଦାନାବାନ୍ଧିଲା । କିଛି ସମୟପାଇଁ, ଭବିଷ୍ୟତ ସ୍ୱପ୍ନରେ ଆଶାବାନ୍ଧି ତିନୋଟି ଦୁର୍ମୂଲ୍ୟ ସ୍ମିତ ହସ ସଂଚରିଗଲା ସେହି ସ୍ୱଚ୍ଛ ଆଲୋକିତ କୋଠରୀରେ ।

କିନ୍ତୁ ହାଏ ! ଗାରୁର ଏତେ ସପନକୁ ରାତି ନଥିଲା । ଭୋର ବେଳକୁ ତାକୁ ଅପେକ୍ଷା କରିଥିଲା, ଆଉ ଏକ ବିପର୍ଯ୍ୟୟ । ଠକ୍ ଠକ୍ ହେବାରୁ ତାଟି ଖୋଲି ଦେଖିଲା, ତା ସାମ୍ନାରେ ପୂରା ପୁଲିସ ପଲଟଣ । ତା ହାତକୁ ଆଡ଼େଇ ଦେଇ ଚାରିଟା ପୁଲିସ ପଶିଗଲେ ଘର ଭିତରେ ଏବଂ ଶୂନ୍ୟେ ଶୂନ୍ୟେ ଟେକି ଆଣିଲେ ହାଡୁଆକୁ ଏବଂ ଗାରୁକୁ ହୁକୁମ୍ ଦେଲେ – ଏଇ, ତୁ ବି ବସ୍ ଗାଡ଼ିରେ ।

ଥାନା ହାଜତ୍‌ରେ ହାଡୁଆକୁ ଦେଖିବାକୁପାଇଁ ସକାଳୁ ସକାଳୁ କାହିଁ କେତେଭିଡ଼ । ବଡ଼ ବଡ଼ ପୁଲିସ୍ ଅଫିସର୍ ଆସୁଥାନ୍ତି । ତାରିଫ୍ କରୁଥାନ୍ତି ଥାନାବାବୁଙ୍କୁ । ଏପରି ଏକ ବିରଳ ସଫଳତାପାଇଁ । ସକାଳ ଦଶଟା ବେଳକୁ ଏକ ଛୋଟକାଟର ଉତ୍ସବ ହେଲା ସେଠି । ସାମ୍ବାଦିକମାନେ ଆସିଲେ । ଟି.ଭି. ବାଲା ଆସିଲେ । ଥାନା ଅଫିସର୍ ବସିଲେ ଚୌକିରେ । ତାଙ୍କ ପାଖକୁ ହାଣ୍ଡକପ୍ ପଡ଼ି ଠିଆହେଲା ହାଡୁଆ, ତା ପାଖକୁ ଗାରୁ । ଅଧିକାରୀ ଛାତି ଫୁଲେଇ ଘୋଷଣାକଲେ – ଆଜି ଆମକୁ ଏକ ବିରାଟ ସଫଳତା ମିଳିଛି । ବିଭିନ୍ନ ହତ୍ୟାକାଣ୍ଡ, ଥାନା ପୋଡ଼ି ଏବଂ ମାଇନ୍ ବିସ୍ଫୋରଣରେ ଜଡ଼ିତ ଦୁର୍ଦ୍ଧାନ୍ତ ନକ୍ସଲ ନେତା ବରୁଆ ମାଝୀକୁ, ଏବଂ ତା ସହ ତାକୁ ଆଶ୍ରୟ ଦେଇଥିବା ଅଭିଯୋଗରେ ବିଶିଷ୍ଟ ନେତା ଗାରୁ ମାଝୀକୁ ସହରର ଉପକଣ୍ଠରୁ ଗିରଫ୍ କରାଯାଇଛି ।

ଗାରୁ ଏ ପର୍ଯ୍ୟନ୍ତ ବୁଝିପାରୁ ନଥିଲା ହାଡୁଆ ଏବଂ ତାକୁ ଗିରଫ୍ କରିବାର କାରଣ କ'ଣ । ଏତେସବୁ ଉତ୍ସବ ଯେ ଚାଲିଛି, ତା'ର ମୂଳବିନ୍ଦୁ ଯେ ଏହି ବାପ–ପୁଅ, ସେ କଥା ଗାରୁ ବିଶ୍ୱାସ କରିପାରୁ ନଥିଲା । ସବୁଠୁ ବିସ୍ମୟକର କଥା, ଯେଉଁ ନେତାମାନେ ସେଦିନ ତା କୁଡ଼ିଆର ରକ୍ଷାପାଇଁ ରାସ୍ତାରୋକ କରିଥିଲେ, ସମବେଦନା ଜଣେଇଥିଲେ, ସେହିମାନେ ତା'ରି ସାମ୍ନାରେ ଥାନାବାବୁଙ୍କୁ ସାବାସି ଦେଉଛନ୍ତି ଏବଂ 'ଏଗୁଡ଼ାଙ୍କୁ ଗୁଳି କରିଦେବା କଥା' ବୋଲି ବାପ–ପୁଅଙ୍କୁ ଇଙ୍ଗିତକରି କହୁଛନ୍ତି ।

ଗାରୁ ଆଉ ଚୁପ୍ ରହିପାରିଲା ନାହିଁ। ଖୁବ୍ ଯୋର୍‌ରେ ଚିତ୍କାର କଲା– ''ଆଜ୍ଞାମାନେ ଏ ହେଉଛି ମୋ ପୁଅ ହାଡୁଆ, ହାଡୁ ମାଝୀ, ଇଏ ନକ୍ସଲ ଫକ୍ସଲ ନୁହେଁ, କି ଯା' ନାଁ ବରୁଆ ମାଝୀ ନୁହେଁ। ଆମେ ଏଇ ମାଟିର ଲୋକ। କମ୍ପାନୀ କାରଖାନା ପାଇଁ ଆମେ ଜମି ଦେଇଛୁ। ସରକାର ଆମକୁ ରାଇପଦରରେ ଘରଡ଼ିହ ଦବ ବୋଲି କହିଛି। ହେ ଭାଇମାନେ, ଆଜ୍ଞାମାନେ, ଏ ସୂର୍ଯ୍ୟଦେବତା–ସାକ୍ଷୀ, ଏ ଧରତୀ ମାତା ସାକ୍ଷୀ। ମୁଁ ସତ କହୁଛି ।''

ଏଇ ଚୁପ୍‌କର। ଚୁପ୍ କର। ବେଶି ଗୁଡ଼ାଏ ବକ୍ ବକ୍ ହଉଛି। ଥାନା ଅଧିକାରୀ ଖଙ୍କାରି ଉଠିଲେ। ବରୁଆ, ହାଡୁଆ ସବୁ ଏକା କଥା, ଶଳା ତୁମେ ସବୁ ବଦ୍‌ମାସ। କାରଖାନା ବନ୍ଦ କରିବାକୁ ପୁଅ ଆନ୍ଦୋଳନ କରିବ ! ସରକାର ବିରୋଧରେ ଯିବ ! ଆଉ ତୁ ନେତା ହବୁ ! ନୁହେଁ ? ଯା ଶଳା, ମାମୁଁ ଘରେ ଦୁହେଁ ଚକି ପେଷିବ।

ଥାନାବାବୁଙ୍କ ନାଲି ଆଖିରେ, ବାପ ପୁଅ ହେମାଳ ହୋଇଗଲେ। କୋରଡ଼ଗତ ଆଖିରୁ ଗାରୁ ଲୁକ୍ ଲୁକ୍ ଦେଖୁଥିଲା– ଏ ପୃଥିବୀଟା କେତେ ଶୀଘ୍ର ବଦଳି ଯାଉଛି, କେମିତି ବଦଳି ଯାଉଛନ୍ତି ଏ ଲୋକମାନେ। ତା'ର ହୃଦ୍‌ବୋଧ ହେଲା, ବୋଧହୁଏ ଏଇଆକୁ ବିକାଶ କୁହନ୍ତି, ସଭ୍ୟତା କୁହନ୍ତି, ଉନ୍ନତି କୁହନ୍ତି। ତିନି ବର୍ଷ ତଳେ ଜଙ୍ଗଲ ଭିତରେ ସେ ଏତେକଥା ବୁଝିପାରି ନଥିଲା।

କୋର୍ଟକୁ ହାଜିରା ଦେବାକୁ ଜେଲ୍‌ରୁ ଆସିଲାବେଳେ ପୁଲିସ ଗାଡ଼ି ଭିତରୁ ଗାରୁ ମାଝୀ ଦେଖେ, ଛକ ପାଖରେ ଆଉ ଗୋଟିଏ ବି ଦୋକାନ ନାହିଁ, ଝୁମ୍ପୁଡ଼ି ନାହିଁ। ସବୁ ମାଟିରେ ମିଶି ଏକାକାର ହୋଇ ଯାଇଛି ଏବଂ ସେହି ଆବଡ଼ାଖାବଡ଼ା ମାଟି ଉପରେ ସ୍ତ୍ରୀ ଲୋକଟିଏ ବସି ମୁଣ୍ଡକୋଡ଼ି କାନ୍ଦୁଛି, ଅଦୃଶ୍ୟ ଶତ୍ରୁକୁ ଅଭିଶାପ ଦେଉଛି–ତୁ ଭସ୍ମ ହୋଇଯା, ତୁ ନରକକୁ ଯା, ତୋ ବଂଶ ନିପାତ ହେଉ, ତୋ କାରଖାନାରେ ବଜ୍ର ପଡୁ।



(ଆମ ସମୟ : ଏପ୍ରିଲ–ଜୁନ୍ ୨୦୧୦)

# ଦୋହରା ଘର

ଏ ଲୋକକୁ ପୁଣି ସତୁରି ବର୍ଷ ! ଡାକ୍ତର ବିଶ୍ୱାସ କରିପାରିଲେ ନାହିଁ । ବଳିଷ୍ଠ, ଦୀର୍ଘକାୟ, ମୁଣ୍ଡରେ ଗୋଛାଏ କଳାବାଳ, ଦାନ୍ତ ଗୋଟିଏ ବି ପଡ଼ିନାହିଁ । ଯେ କେହି ଦେଖିଲେ କହିବ ବୟସ ପଚାଶ କି ପଞ୍ଚାବନ ।

ତା'ର ନିଜ ଲୋକ କିଏ ଅଛନ୍ତି ଏଠି ? ସମବେତ କ୍ଷୁଦ୍ର ସମାବେଶକୁ ପ୍ରଶ୍ନକଲେ ଡାକ୍ତର ଏବଂ ପରସ୍ପର ମଧ୍ୟରେ ଗୁଞ୍ଜରିତ ହେଉଥିବା ଆଲୋଚନା ଭିତରୁ ସ୍ୱତଃ ବାହାରିଆସିଲା ଉତ୍ତରଟିଏ – ଆମେ ତା ଗାଁ ଲୋକ । ତା'ର ଘରଲୋକ କେହି ଆସିନାହାନ୍ତି । ସେ ଦୀନବନ୍ଧୁ ପ୍ରଧାନ । ବୟସ ସତୁରି ।

ଦୀନବନ୍ଧୁ ପରିବାରରେ ସମସ୍ତେ ଅଛନ୍ତି । ସ୍ତ୍ରୀ, ଦୁଇ ପୁଅ, ଦୁଇ ବୋହୂ, ଚାରିଜଣ ସ୍କୁଲ-କଲେଜ ପଢୁଆ ନାତି–ନାତୁଣୀ ସମେତ ଦୁଇ ତିନିଜଣ ବନ୍ଧୁବାନ୍ଧବ ମଧ୍ୟ ଘରେ ଉପସ୍ଥିତ ଥିଲେ । ଉତ୍ତେଜିତ ହୋଇ ଖୁବ୍ ଜୋର୍‌ରେ ପାଟି କରୁ କରୁ ଦୀନବନ୍ଧୁ ହଠାତ୍ ତଳେ ପଡ଼ିଗଲା । ସମସ୍ତେ ଦେଖିଲେ । ଗଛ କାଟିଲା ପରି ଶବ୍ଦଟାଏ ମଧ୍ୟ ହେଲା ଏବଂ ସାହିପଡ଼ିଶା କିଛି ଅଘଟଣ ଆଶଙ୍କା କରି ଧାଇଁଆସିଲେ । କିନ୍ତୁ ପରିବାରର ଲୋକେ ଘୋଷଣା କଲେ – ବୁଢ଼ା ବାହାନା କରୁଛି । ଗୋଟାଏ ପେଖେନା କାଢୁଛି । ନବରଙ୍ଗ ଦେଖଉଛି ଏ ବୟସରେ, ଲାଜ ଲାଗୁନି!

ବାହାନା କରିବାର ଲୋକ ଦୀନବନ୍ଧୁ ନୁହେଁ । ତା ଜୀବନରେ ସେ ଯାହା କରିଛି, ସବୁକିଛି ସୂର୍ଯ୍ୟାଲୋକ ଭଳି ସ୍ୱଚ୍ଛ, ସ୍ପଷ୍ଟ ଆଉ ବେସାଲିସ୍ । ପେଟରେ ଗୋଟାଏ କଥା, ପାଟିରେ ଆଉ ଗୋଟାଏ କଥା ତା'ର ନଥାଏ । କିଏ ଭଲ କହିଲା କି ମନ୍ଦ କହିଲା, ସେଥିପ୍ରତି ତା'ର ଖାତିର୍ ନାହିଁ । ଯାହା ମନକୁ ଆସିଲା, ଭଲ ଲାଗିଲା, ସେ କଲା । ସବୁ କଥାରେ ଢୋ–ଢୋ, ଠୋ–ଠୋ ଭାବ । ଛଳନା ଆସିବ କାହୁଁ!

'ଏଇଟା ହାର୍ଟଷ୍ଟ୍ରୋକ୍ । ଏଠି କିଛି ସୁବିଧା ନାହିଁ, କି ଔଷଧ ମିଳିବ ନାହିଁ । କଟକ ନେଇଯା'ନ୍ତୁ । ଯେତେଶୀଘ୍ର ।'

ଡାକ୍ତରଙ୍କର ଘୋଷଣା ଚିନ୍ତାଗ୍ରସ୍ତ କଲା ସ୍ୱେଚ୍ଛାସେବୀଙ୍କୁ । ଉଠାଉଠି ଟେକାଟେକି କରି ଏ ପର୍ଯ୍ୟନ୍ତ ନେଇଆସିଲେ ସିନା, କଟକ କଥାଶୁଣି ସମସ୍ତଙ୍କର ମୁହଁ ଶୁଖିଗଲା । ଅବଶ୍ୟ ଚେଷ୍ଟାକଲେ ଘଣ୍ଟାଏ ଭିତରେ ଆମ୍ବୁଲାନ୍ସ ନହେଲେ ଟ୍ୟାକ୍ସିଟିଏ କେହିଜଣେ ସଦର ମହକୁମାରୁ ଧରି ଆଣିପାରେ, କିନ୍ତୁ ହଜାରେ କି ଦେଢ଼ହଜାର ଟଙ୍କା ଭଡ଼ା କିଏ ଦବ ? ଔଷଧ, ଡାକ୍ତର ଖର୍ଚ୍ଚ ଏ ସବୁତ ପୁଣି ଅଛି ! ବୁଢ଼ାକୁ ବେଢ଼ି ଯେତେଜଣ ଠିଆ ହୋଇଥିଲେ କାହା ପକେଟରେ ଦଶଟଙ୍କାରୁ ବେଶି ଥିବ ବୋଲି ଭାବିବା ଭୁଲ । ସମସ୍ତେ ପ୍ରାୟ ବେକାର, ଅର୍ଦ୍ଧ-ବେକାର ଓ ଚାଷକାର୍ଯ୍ୟରେ ବାପାଙ୍କୁ ସାହାଯ୍ୟ କରି ପ୍ରତି ବଳଦରେ ବାପାଙ୍କ ଅନ୍ନରେ ପ୍ରତିପାଳିତ ହେଉଥିବା ଯୁବକବୃନ୍ଦ । ଶ୍ରମଦାନପାଇଁ ପ୍ରସ୍ତୁତ ସମସ୍ତେ, ଅଥଚ ଅର୍ଥ କଥାରେ ପଛଘୁଞ୍ଚା । ନିଜର ପୁଅ-ବୋହୂ ରୋକ୍‌ଠୋକ୍ ଶୁଣେଇ ଦେଇଛନ୍ତି - ଯିଏ ତାକୁ ଡାକ୍ତରଖାନା ନଉଛ ସିଏ ବୁଝିବ, ଆମକୁ କିଛି କହିବନି ।

ଅଗତ୍ୟା ଭାଳେଣି ପଡ଼ିଲା । ସମ୍ଭାବ୍ୟ ଅର୍ଥଦାତାମାନଙ୍କ ବିଷୟରେ ଆଲୋଚନା ହୋଇ କେବଳ ଗୁଡ଼ାଏ ଆଶ୍ରାବ୍ୟ ଗାଳି ସେମାନଙ୍କ ଉଦ୍ଦେଶ୍ୟରେ ପ୍ରେରିତ ହେଲା । ଏମିତି ବେଳରେ ଯଦି ନିଜେ କମେଇଥିବା ଅର୍ଥ କାମରେ ନ ଆସିଲା, ନିଜେ ଜନ୍ମ କରିଥିବା ପୁଅ ଯଦି ମୁହଁ ନ ଚାହିଁଲେ ତେବେ ସେ ଅର୍ଥ କାହାପାଇଁ ନା ସେ ପୁଅ କି କାମରେ? ଏମିତି ଗୁଡ଼ିଏ ବୈରାଗ୍ୟ ସୁଲଭ ଦର୍ଶନରେ ଡାକ୍ତରଖାନା ବାରଣ୍ଡା ଭାରାକ୍ରାନ୍ତ ହେଉଥିବା ବେଳେ ଜନୈକ ଯୁବକ ପାସୋରି ଯାଇଥିବା ଏକ ନିଶ୍ଚିତ ସମାଧାନ ସୂତ୍ର ପ୍ରକାଶ କଲେ - ସାବିତ୍ରୀ ବୁଢ଼ୀ ପାଖକୁ ଚାଲ ।

ଦୀନବନ୍ଧୁ ଘରେ ପାଟି ତୁଣ୍ଡ ହେବା ନୂଆ ଘଟଣା ନୁହେଁ । ମାସେ ଦୁଇମାସ ବ୍ୟବଧାନରେ ପ୍ରାୟତଃ ବଡ଼ପାଟି, ଚିତ୍କାର, ଅଟ୍ଟହାସ୍ୟ ସାହିପଡ଼ିଶା ଶୁଣନ୍ତି । ବେଳେବେଳେ ଏହାର ଅବଧି ଏତେ ଦୀର୍ଘ ଏବଂ ଆୱାଜ୍ ଏତେ ସ୍ପଷ୍ଟ କର୍କଶ ହୁଏ ଯେ ଗାଁର ଅର୍ଦ୍ଧେକ ପରିବାର ସେଦିନ ରାତ୍ରି ଅନିଦ୍ରା ।

ଆଜି ବୋଧହୁଏ ବଡ଼ପୁଅ ଭୁବନେଶ୍ୱରରୁ ଆସିଛି । ସେ ଆସିଲେ ହିଁ କଥା ଆରମ୍ଭ କରେ । ତା'କଥାର ଖିଅକୁ ବଡ଼ ବୋହୂ ଆଗକୁ ବଢ଼ାଏ, ସାନ ବୋହୂ ଏବଂ ଦୀନବନ୍ଧୁର ସ୍ତ୍ରୀ ସକ୍ରିୟ ସମର୍ଥନ କରନ୍ତି । ଦୁଇପୁଅ, କାର୍ଯ୍ୟକ୍ରମ ଆରମ୍ଭ ହେବା ପରେ ପ୍ରାୟତଃ ନୀରବ ରହିଯାନ୍ତି । କାରଣ କୋଳାହଳ ଭିତରେ ତାଙ୍କ ସ୍ୱର ମିଳେଇଯାଏ କେଉଁଠି ଜଣାପଡ଼େ ନାହିଁ ।

ଦୀନବନ୍ଧୁ ପ୍ରଥମେ ଚୁପ୍ ରହେ । ଭାବେ, ଛୁଟିରେ ଦିନ କେଇଟାପାଇଁ ନାତି-ନାତୁଣୀ ଆସିଛନ୍ତି ଯେତେବେଳେ ସେମାନଙ୍କ ସହ ହସିଖେଳି ସମୟ କାଟିଦେବା

ଉଚିତ୍। ଏମିତି ଦୁର୍ଲଭ ସମୟ ଏବେ ମିଳୁଛି ବା କେଉଁଠି? ତେଣୁ ସେ ପୁଅ-ବୋହୂଙ୍କ କଥାକୁ କାନକୁ ନିଏ ନାହିଁ। ନାତି-ନାତୁଣୀଙ୍କୁ ଚାହିଁ ହସିଦିଏ। ସତେ ଅବା ପୁଅ-ବୋହୂଙ୍କର ଯାବତୀୟ ଅଭିଯୋଗ, କୁତ୍ସାରଟନା ସେହି ଚେନାଏ ହସ ଆଗରେ ଅତି ତୁଚ୍ଛ, ମୂଲ୍ୟହୀନ। କିନ୍ତୁ, ବୋହୂର କୋପ ସହଜରେ କମେ ନାହିଁ। ସେ ଭାବେ ବୁଢ଼ାର କାନକୁ ବୋଧହୁଏ ଆଉ ଶୁଭୁନାହିଁ, ନହେଲେ କି ଏମିତିକା ହାଡ଼ଜଳା କଥାକୁ କିଏ ବରଦାସ୍ତ କରନ୍ତା ଦାନ୍ତ ଦେଖେଇ! ଏଣୁ ସେ ଥକିନଯାଇ ଶବ୍ଦବାଣକୁ ଆହୁରି ଶାଣିତ କରେ।

ପରିଣତ ବୟସରେ ବି ଶ୍ୱଶୁରଙ୍କର ଶ୍ରବଣ ଶକ୍ତି ଅକ୍ଷୁଣ୍ଣ ଥାଏ । ବୋହୂମାନଙ୍କର ପ୍ରତ୍ୟେକ ବାକ୍ୟ, ଶବ୍ଦ, ତାଚ୍ଛଲ୍ୟ, ଦୁମୁଦୁମୁ ଚାଲିର ଆବାଜ୍, ଦୀର୍ଘ ମୁହଁମୋଡା ହୁଁ, ଏମିତିକି ବିରକ୍ତିସୂଚକ ଛେପପକା ଥୁ ଶବ୍ଦ ମଧ୍ୟ ସେ ଶୁଣିପାରନ୍ତି। ପ୍ରଥମେ ପ୍ରଥମେ ରକ୍ତ ତାତୁଥିଲା। ଦେହରେ ନିଆଁ ଲାଗୁଥିଲା। ମଗଜରେ ଟକ୍‌ମକ୍ ହୋଇ ଫୁଟୁଥିଲା ପ୍ରତିବାଦ କରିବାର ଯୋସ୍। ସାବିତ୍ରୀ ନାଁରେ ଏଣୁ ତେଣୁ କଥା ପୁଣି ଦୀନବନ୍ଧୁ ସାମ୍ନାରେ କିଏ କହିବ! ସେ ତାକୁ ଠିଆ ଫାଡ଼ିଦବନି! ବାଘପଞ୍ଝା ଭଳି ପାପୁଲିରେ ଶେଷ କରିଦେବନି ତା'ଜୀବନ ନାଟିକା। ସମସ୍ତେ ଜାଣନ୍ତି ତା'ର ତାକତ୍ ଏବଂ ଏକଥା ବି ଜାଣନ୍ତି, ତା ମୁଣ୍ଡକୁ ପିତ୍ତ ଚଢ଼ିଲେ ସେ କାହାର ବି ନୁହେଁ।

ବୟସ ଥିଲାବେଳେ ତା'ର ଧାପ ଥିଲା। କେବଳ ଭୟ ଏବଂ ଆତଙ୍କରେ ପରିବାର, ସାହିପଡ଼ିଶା, ବନ୍ଧୁବାନ୍ଧବ ସମସ୍ତେ ଚୁପ୍ ରହୁଥିଲେ। ଦୀନବନ୍ଧୁ-ସାବିତ୍ରୀ ସମ୍ପର୍କ ଜାଣୁଥିଲେ। ଅଭିଯୋଗ, ପ୍ରତିବାଦ, ଚକ୍ଷୁଲଜ୍ୟା ଏସବୁ ମନ ଭିତରେ ଥାଏ, କେହି ପ୍ରକାଶକରନ୍ତି ନାହିଁ। କାହାର ଜୀବନକୁ ଲୋଭ ନାହିଁ! ତେଣୁ ନୀରବ ସ୍ୱୀକୃତି ଦେଇଦିଅନ୍ତି ସେମାନଙ୍କର ବେନାମୀ ସମ୍ପର୍କକୁ।

ଦୀନବନ୍ଧୁର ସାମ୍ରାଜ୍ୟରେ ପ୍ରଥମ ବିଦ୍ରୋହ ଆରମ୍ଭହେଲା ବଡ଼ପୁଅ ବାହାଘର ପରେ। ବଡ଼ବୋହୂ ପାଟି ଖୋଲିଲା। ଯେଉଁ କାର୍ଯ୍ୟ ଶାଶୂ କରିପାରି ନଥିଲେ, ବନ୍ଧୁବାନ୍ଧବ କରିବାକୁ ସାହସ କରିନଥିଲେ, ବୋହୂ ପ୍ରଥମେ ପ୍ରଦର୍ଶନ କଲା, ବାହାଘର ଦୁଇମାସ ପରେ। ପରିବାର ସମସ୍ତ ସଦସ୍ୟଙ୍କ ସାମ୍ନାରେ ଶାଶୂଙ୍କୁ ଚାହିଁ ଶ୍ୱଶୁରଙ୍କୁ ଶୁଣେଇ ଦେଲା – ବାପା ଯାହା ଆଗରୁ କରୁଥିଲେ, ଆମେ ଶୁଣୁଥିଲୁ। ଏବେ ପୁଅ ବୋହୂ ଘର ହେଲା, ସେ ମଧ୍ୟ ବୁଢ଼ାହେଲେଣି, ବୟସ ହେଲାଣି, ଏବେ ଆମ ଘରେ କ'ଣ ଅଭାବ ଯେ ରାତି ପାହିଲେ ବାପା ଯାଇ ସାବି ଧୋବଣୀ ଘରେ?

ବାରୁଦ ଗଦାରେ ଅଗ୍ନି ସଂଯୋଗପାଇଁ ଏହି ଛୋଟିଆ ପ୍ରଶ୍ନ ହିଁ ଯଥେଷ୍ଟ ଥିଲା। ଦୀନବନ୍ଧୁ ଅବିଶ୍ୱାସରେ ତିର୍ଯ୍ୟକ ଦୃଷ୍ଟି ନିକ୍ଷେପ କଲା। ଏତେ ସାହସ ! ଏତେ ଆସ୍ପର୍ଦ୍ଧା !

ବିସ୍ଫାରିତ ଦୃଷ୍ଟିକୁ ସେ ସ୍ଥିର ରଖିଲା ବେଶ୍ କିଛି ସମୟ ବୋହୂ ଉପରେ । ତା ଦୃଷ୍ଟିର ତୀବ୍ରତା, କ୍ରୂରତା ଏବଂ ତାଗିଦ୍ ସ୍ପଷ୍ଟ ଭାବେ ସତର୍କ କରାଇ ଦେଉଥାଏ – ତୁ କାଲିକା ପିଲା, ଚିହ୍ନିନାହୁଁ ଦୀନବନ୍ଧୁ ପ୍ରଧାନକୁ, ଫେରେଇ ନେ ତୋ କଥା, ଭୁଲ ସ୍ୱୀକାର କର । ଫେରିଆ ତୋ ସୀମା ଭିତରକୁ ।

ଶାଶୂ ଏବଂ ସ୍ୱାମୀଙ୍କ ମଝିରେ ଠିଆ ହୋଇଥିଲା ବୋହୂ । ବୋଧହୁଏ ନିଜକୁ ପ୍ରସ୍ତୁତ କରିଥିଲା ଏବଂ ଖଞ୍ଜି ରଖିଥିଲା କଥା ପଛକୁ କଥା । ଶ୍ୱଶୁରର ନାଲି ଆଖିକୁ ଖାତିର ନକରି, ଥରେ ମାତ୍ର ଶ୍ୱଶୁରର ଆଖି ସହ ଆଖି ମିଳେଇଲା ଏବଂ ଶାଶୂ ଆଡ଼କୁ ଚାହିଁ ସମର୍ଥନ ସଂଗ୍ରହକଲା । ତା'ପରେ ଅପୂର୍ଣ୍ଣ–ବାକ୍ୟକୁ ଟିକେ ଉଚ୍ଚା କଣ୍ଠରେ ପୂରଣକଲା – ବାଜ୍ୟେ ସ୍ତ୍ରୀ ଲୋକଟାଏ । ଲାଜସରମ, ମାନମହତ ତା'ର ସିନା ନାହିଁ, ହେଲେ ଆମର ଅଛି ନା ନାହିଁ !

'ଆବେ ଚୁପ୍ କର୍, ଚୁପ କର୍ ବଦମାସ୍ ।' ଘଡ଼ଘଡ଼ି ପଡ଼ିଲା ଭଳି ଶବ୍ଦରେ ତାବଦା ହୋଇଗଲା କାନ, ଚୁପ୍ ହୋଇଗଲା ବୋହୂ । ଷାଠିଏ ବର୍ଷରେ ଲୋକ ଏଡ଼େ ବଡ଼ ପାଟି କରିପାରେ!

ଦୀନବନ୍ଧୁ ଥରୁଥାଏ ଗୋଟାପଣ । ରାଗରେ ବି ମଣିଷ ଏମିତି ବରଡ଼ାପତ୍ର ପରି ଥରିପାରେ! ଫଁ ଫଁ, ନିଃଶ୍ୱାସ ବାହାରୁଥାଏ, ସତେ ଯେମିତି ନାଗସାପଟିଏ ଲାଞ୍ଜ ଉପରେ ଠିଆ ହୋଇ ଚୋଟ ମାରିବାର ଉପକ୍ରମ କରୁଛି । ତା' ଛାତି ଖାଲି ଉଠୁଥାଏ ପଡୁଥାଏ । ଆଖି, ନାକ, କାନ, ହାତ ଗୋଡ଼ ସମସ୍ତେ ଯେମିତି ଆକ୍ରମଣପାଇଁ ପ୍ରସ୍ତୁତ, କିନ୍ତୁ ମୁହଁରୁ ଆଉ ପଦିଏ ବି କଥା ବାହାରୁନାହିଁ । କି ରୂପ ସେ! କିଛି ଅଘଟଣ ଘଟିବା ପୂର୍ବରୁ ଛତ୍ରଭଙ୍ଗ ଦେଲେ ପ୍ରତିପକ୍ଷ । ଏବଂ ତା' ପରଦିନ ସକାଳୁ ପୁଅ–ବୋହୂ ବାହାରିଗଲେ ଭୁବନେଶ୍ୱର । ଯିବାବେଳେ ବୋହୂ ଘୋଷଣାକଲା ଏକ ବଜ୍ର ପ୍ରତିଜ୍ଞା – ବୁଢ଼ା ବଂଚିଥିବା ପର୍ଯ୍ୟନ୍ତ ଏ ମାଟି ସେ ମାଡ଼ିବ ନାହି ।

ପ୍ରାୟ ବର୍ଷେ ପର୍ଯ୍ୟନ୍ତ ଅତି ନିଷ୍ଠାର ସହ ପ୍ରତିଜ୍ଞା ପାଳିତହେଲା । ଚିଠି ନାହିଁ କି ଖବର ନାହିଁ, ଏମିତିକି ଗାଁ ଲୋକ ଭେଟ ପଡ଼ିଲେ ଭଲ ମନ୍ଦ ପଚାରି ବୁଝିବା ମଧ୍ୟ ନାହିଁ । କିନ୍ତୁ ନାତୁଣୀ ଯେତେବେଳେ ଜନ୍ମ ହେଲା ଭୁବନେଶ୍ୱରରେ, ବୁଢ଼ୀ ଛଟପଟ ହେଲା ଗାଁରେ । ଘୋଷଣା କଲା – ମୋ ସାଙ୍ଗରେ ଯଦି କିଏ ଯିବ ଚାଲ, ନଚେତ୍ ମୁଁ ନିଜେ ପଚାରି ପଚାରି ପଳେଇବି । ବୁଢ଼ୀ ଭାବିଥିଲା, ସାନପୁଅ ନିଶ୍ଚୟ ବାହାରିବ ସାଙ୍ଗରେ ଏବଂ ଏହା ବି ବୁଢ଼ା ଘୋଷଣା କରିପାରେ – ଯଦି ଯାଉଛ ଯାଅ, ଆଉ ଫେରିବନି । ତାଙ୍କ ଠାରୁ ଆଉ କ'ଣ ବା ଆଶା କରାଯାଇପାରେ? ଠେଙ୍ଗାର ଭାଷା ବୁଝିଥିବା ଲୋକଟି ମନର ଭାଷା ବୁଝିବ କେମିତି? ଏହା ଭାବି ବୁଢ଼ୀ ଗଣ୍ଠିଲି ସଜାଡ଼ିଲା ।

ଲୁଗା ବଦଳେଇ ବୃନ୍ଦାବତୀଙ୍କ ପାଖରେ ମୁଣ୍ଡିଆ ମାରିଲା, ଛଳ ଛଳ ଆଖିରେ ଢୁ ଢୁ ମୁଣ୍ଡ ବାଡ଼େଇ କେତେକ'ଣ ଅଭିଯୋଗ ବାଢ଼ିଗଲା। ଏମିତି ବି ହୋଇପାରେ ଏ ବିଦାୟ ତା'ର ଶେଷ ବିଦାୟ ହୋଇପାରେ। ଫୁଙ୍କାପିଟା ମଣିଷକୁ କି'ବା ଭରସା!

କିନ୍ତୁ ବୃନ୍ଦାବତୀ ପାଖରୁ ମୁଣ୍ଡିଆ ମାରି ଆସିବା ପରେ ବୁଢ଼ୀର ହିସାବ କିତାବ ଭୁଲ୍‌ଭାଲ୍ ହୋଇଗଲା। ସ୍ୱୟଂ ଦୀନବନ୍ଧୁ ଗଣ୍ଠିଲି ଧରି ହୁକୁମ୍ ଦେଲେ – ତୁ ସ୍ତ୍ରୀଲୋକଟା ଏକା କୁଆଡ଼େ ଯିବୁ ? ଚାଲ୍ ତୋ ସାଙ୍ଗରେ ମୁଁ ବି ଯିବି। ତମାମ୍ ରାସ୍ତାରେ ବୁଢ଼ୀ ସେହି ଗୋଟାଏ କଥା ହିଁ ଭାବୁଥାଏ, ସତରେ କ'ଣ ଇଏ ଭଲ ମନରେ ଆସିଛି। ବୋଧହୁଏ କିଛି ଅଘଟଣ ସେଠି ଘଟେଇବ। ହେ ଭଗବାନ, ତୁ ରକ୍ଷାକର।

ଏବଂ, ଏହାପରେ ନଈ ଉପରେ ଅସ୍ଥାୟୀ ପୋଲଟିଏ ସଂଯୁକ୍ତ କଲା ଦୁଇ କୂଳକୁ। ନାତୁଣୀର ଏକୋଇଶିଆ, ନାମକରଣ ଉତ୍ସବ ଖୁବ୍ ଧୁମ୍‌ଧାମ୍‌ରେ ପାଳିତ ହେଲା ଗାଁରେ। ତା ପରବର୍ଷ ସାନ ପୁଅର ବାହାଘର ବି ସାରିଦେଲା ଦୀନବନ୍ଧୁ। ମଝିରେ ମଝିରେ ବଡ଼ପୁଅ-ବୋହୂ ଆସନ୍ତି। କିନ୍ତୁ ଚାରି ଦିନରୁ ଅଧିକ ରହିପାରନ୍ତି ନାହିଁ। କଥାବାର୍ତ୍ତା ଭିତରେ କେମିତି ନାହିଁ କେମିତି ପଶି ଆସେ ସାବିତ୍ରୀ। ତା ପରେ ଖେଟ୍‌ଖାଟ୍ ଆରମ୍ଭ ହୁଏ। ପୁଣି ଅସ୍ତବ୍ୟସ୍ତ, ଅସଜଡ଼ା ହୋଇଯାଏ ସବୁକିଛି।

ସାବିତ୍ରୀର ଏକ ପରିପୂର୍ଣ୍ଣ ସଂସାର ଅଛି। ସ୍ୱାମୀ, ଶ୍ୱଶୁର, ଝିଅ। ଧୋବାଘର ହେଲେ ବି କୌଳିକ ବୃତ୍ତି ତ୍ୟାଗକରି ଶ୍ୱଶୁର ଏବଂ ସ୍ୱାମୀ ସମ୍ପୂର୍ଣ୍ଣ ଚାଷୀ। ଦୀନବନ୍ଧୁ ଏବଂ ସାବିତ୍ରୀର ସ୍ୱାମୀ ପରମାନନ୍ଦର ଆବାଲ୍ୟ ବନ୍ଧୁତ୍ୱ। ଆର୍ଥିକ ଦୃଷ୍ଟିରୁ ଦୀନବନ୍ଧୁ ହେଲା ସ୍ୱଚ୍ଛଳ ବର୍ଗର। ଚାରି ମାଣ ଜଳସେଚିତ ଚାଷ ଜମି ସାଙ୍ଗକୁ ବାପ-ଅଜା ଅମଳର ଝୋଟ ଗୋଦାମ ବି ଅଛି। ଚାଷ ଅପେକ୍ଷା ଝୋଟ ବେପାରରେ ମୁନାଫା ଢେର୍। ସୁନାଭରି ଯେତେବେଳେ ଦେଢ଼ଶହ, ଦୀନବନ୍ଧୁ ସେତେବେଳେ ଦେଢ଼ ହଜାର ଟଙ୍କା ଖର୍ଚ୍ଚ କରି ରାଧାଗୋବିନ୍ଦଙ୍କୁ ଦାନ କରିଥିଲା ସୁନା ମୁକୁଟ। ପରମାନନ୍ଦର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନୁହେଁ। ଚାଷଜମି ସବୁ ଏକ ଫସଲି। ସେଥିରେ ପୁଣି ଧୋଇ, ମରୁଡ଼ି ଅଛି। ବାହାଘର ପରେ ପରମାନନ୍ଦ ଏକ ପ୍ରକାର ଧାର କରଜରେ ବୁଡ଼ିଗଲା। କାରଣ ସେ ବର୍ଷ ବନ୍ୟା ଏବଂ ବାତ୍ୟା ଆଗପଛ ହୋଇ ଦାଉ ସାଧିଲେ। ଗାଁର ଅଧାଅଧି ଲୋକଙ୍କର ମେରୁଦଣ୍ଡ ଭାଙ୍ଗିଗଲା। ତେଣୁ କୁଟୁମ୍ବ ପାଳିବାପାଇଁ ଚାଷ କାମ ଛାଡ଼ି ଅନ୍ୟାନ୍ୟ ଧନ୍ଦାବାଡ଼ି ଖୋଜିଲେ। କାମ ମିଳୁଛି ବା କୋଉଠି? କିଛି ଲୋକ ଭୁବନେଶ୍ୱର-କଟକ ପଳେଇଲେ। ଆଉ କିଛି ଗଲେ କଲିକତା। ପରମାନନ୍ଦ ସେଇ ଦିନଠୁଁ ପ୍ରବାସୀ। ବାହାଘର ବର୍ଷେ ପୂରିଛି। ଘରେ ସୁନ୍ଦରୀ ଯୁବତୀ ସ୍ତ୍ରୀ, ବୁଢ଼ାବାପା, ହଳେ ହଡ଼ାବଳଦ ଏବଂ ଗୁହାଳେ ଦୁଗ୍‌ଧଶୂନ୍ୟ ଗାଈ। ପରମାନନ୍ଦ ଘର

ଛାଡ଼ିଲା । ବିଦାୟ ନେବାବେଳେ ଦୀନବନ୍ଧୁକୁ କେବଳ ଏତିକି କହିଲା – ମୁଁ ଯାଉଛି, ଘର ଲାଗିଲା ।

ଦୀନବନ୍ଧୁର ବୟସ ଚବିଶ କିମ୍ବା ପଚିଶ । ଛ'ମାସ ତଳେ ବାହାଘର ସରିଥାଏ । ତା'ର ମଧ ଘର ସଂସାର ସାଙ୍ଗକୁ ବେପାର ଚିନ୍ତା । ନିଜ ଦାୟିତ୍ୱ ସହ, ପରମାନନ୍ଦର ଘର ଦାୟିତ୍ୱ ତା'ର ଦାୟିତ୍ୱବୋଧକୁ ଦ୍ୱିଗୁଣିତ କରିଦେଲା ।

ଗାଁ ଲୋକେ ଏବେ ଟୁପୁରୁ ଟାପୁରୁ ହେଲେ । ମାଇପି ମହଲରେ କଥାଟା ଖୁବ୍ କମ୍ ଦିନରେ, କମ୍ ଶବ୍ଦରେ ବ୍ୟାପିଗଲା । ପରମାନନ୍ଦର ସ୍ତ୍ରୀ ସାବିତ୍ରୀ ଲକ୍ଷ୍ମଣରେଖା ଟପିଯାଉଛି, ଏହା ହିଁ ଚର୍ଚ୍ଚାର ବିଷୟ । ଅଭିଜ୍ଞ ସ୍ତ୍ରୀଲୋକମାନେ ପ୍ରଥମେ ବିବ୍ରତ ଏବଂ ପରେ ଆତଙ୍କିତ ହେଲେ । ଯଦି ଏ ପ୍ରକାର ଲୀଳା ଚାଲୁରହେ ତେବେ ଆମର ସଂସ୍କୃତି, ପରମ୍ପରା ଅଚିରେ ଭୁଷୁଡ଼ି ପଡ଼ିବ, ଏହା ହିଁ ସେମାନଙ୍କର ବ୍ୟଥାର କାରଣ । ଯେତେ ଅନ୍ତରଙ୍ଗ ହେଲେ ବି ସ୍ୱାମୀର ସାଙ୍ଗ ପର-ପୁରୁଷ । ତା ସହ ଏମିତି ଖୋଲାମେଲା କଥାବାର୍ତ୍ତା କ'ଣ? ଏତେ ବଡ଼ ପାଟିରେ ହେଁ ହେଁ ଫେଁ ଫେଁ କ'ଣ? ଆମେ କ'ଣ ବୋହୂ ହୋଇଆସିନୁ, ନା ଆମ ଘରକୁ ବନ୍ଧୁ ବାନ୍ଧବ ଆସୁ ନଥିଲେ? ଆମ ମୁଣ୍ଡରୁ କେବେ ଓଢ଼ଣା ଖସୁଥିଲା? ବାହାର ଲୋକ ତ ଦୂରର କଥା; ସ୍ୱାମୀ, ଶ୍ୱଶୁରଙ୍କ ସାମ୍ନାରେ ଦିନବେଳା ଆମେ କେବେ କଥା ହୋଇଛୁ?

ଆଦର୍ଶ, ସଣ୍ଢଣା, ରୀତିନୀତି, ଆଚାର ବ୍ୟବହାରର ପ୍ରବଚନ ଯେତିକି ବଢୁଥାଏ, ଦୀନବନ୍ଧୁ-ସାବିତ୍ରୀର ସାମୀପ୍ୟ, ଆନ୍ତରିକତା, କଥାବାର୍ତ୍ତାର ରଙ୍ଗଢ଼ଙ୍ଗ ସେତିକି ବଦଳୁଥାଏ ଦିନକୁ ଦିନ । ସାବିତ୍ରୀ ଦୀନବନ୍ଧୁ ସହ କଥା ହେଲାବେଳେ ଏବେ ଏରୁଣ୍ଡି ବନ୍ଧ ଡ଼େଇଁ ପାହାଚ ପର୍ଯ୍ୟନ୍ତ ଚାଲି ଆସିଲାଣି । ସ୍ୱାମୀ ଛ'ମାସ ହେବ ଯାଇଛି କି ନାହିଁ । ଦେଖ କେମିତି ଅଲକ୍ଷଣୀ ବାଳ ମୁକୁଳା କରି ଦାଣ୍ଡପିଣ୍ଡାରେ ବସୁଛି! ଶ୍ୱଶୁରକୁ ଭଲ ଭାବେ ଶୁଭେ ନାହିଁ, ଦିଶେନାହିଁ । ବାଃ, ଯାକୁ ତ ପାଳକ ପଡ଼ିଗଲା...! ଗାଧୁଆ ତୁଠରେ ମୁହଁ ଯୋଡ଼ାଯୋଡ଼ି ହୋଇ ମାଇପିମାନଙ୍କର ଯେତେସବୁ ଆଲୋଚନା । ଏତେ ଯେ ତଥ୍ୟ କେଉଁଠୁ ଆସେ, ତାହା ସାଧାରଣ ଭାବେ କହିବା ମୁସ୍କିଲ । ଏବେ ଏକ ନୂତନ ତଥ୍ୟ ସାମ୍ନାକୁ ଆସିଛି – ସାବିତ୍ରୀ ଗର୍ଭବତୀ !

ଦୀନବନ୍ଧୁର ସ୍ତ୍ରୀ ପାଖରେ ଖବର ପହଂଚିଯାଏ । ପ୍ରଥମେ ସେ ମୁହଁ ଫୁଲେଇ ଆକଟକଲା । ରାଣ ନିୟମ ପକେଇଲା । ତା'ପରେ ଖାଇବା ପିଇବା ବନ୍ଦ । ମୁହଁ ଫଣଫଣ କଲା । କିନ୍ତୁ ଦୀନବନ୍ଧୁ ରୋକ୍‌ଠୋକ୍ ଶୁଣେଇ ଦେଲା – ତୋତେ କୋଉଥିରେ କମ୍ କରିଛି କହ? ଖାଇବା, ନାଇବା, ଧନ, ଗହଣା କେଉଁଥିରେ? ଯଦି ଇଚ୍ଛା ହେଉଛି ରହ, ନଚେତ୍ ବାପଘରକୁ ଭାଗ୍ ।' ଏକଥା ଶୁଣିବା ପରେ ଦ୍ୱିତୀୟ ବାର

ସେ ଆଉ ସାବିତ୍ରୀ କଥା ଉଠେଇ ନାହିଁ । କିନ୍ତୁ ଗାଁ ମାଇପେ କ'ଣ ଛାଡ଼ିବେ ସହଜେ? 'ହୂଆବୋଉ, ତୁମ ବିଛା ମାଳିଆ ହାର ଭଳିଆ, ସାବି କ'ଣ ଗୋଟାଏ ପକେଇଛି? ଦେଖିବା ଦେଖିବା, ହଁ ଏଇଟା ଠିକ୍ ତ ସେମିତିଆ ।' ପୁଣି କେହି କହନ୍ତି, 'ଖୁଡ଼ୀ, କାଲି ଦେଖିଲି ସାବି କୁମ୍ଭପକା ପାଟ ପିନ୍ଧିଛି! ତୁମରି ପାଟ ଭଳିଆ, ଦାଦା ଦେଇଥିବେ ନିଶ୍ଚୟ ।'

ବହୁତ କଷ୍ଟ ଲାଗୁଥିଲା ପ୍ରଥମେ । ନିଜ ଇଲାକାରେ ଜବର୍‌ଦସ୍ତ କେହି ଜଣେ ଆସ୍ଥାନ ଜମେଇବ, ନିଜର ଅଧିକାରକୁ ଝିଙ୍କି ନେବ ଆଖି ସାମ୍ନାରେ, କେଉଁ ସ୍ତ୍ରୀ ସହିବ ? ଅଥଚ, ଦୀନବନ୍ଧୁ ପରି ହୁଙ୍କାପିଟା ସ୍ୱାମୀ ପାଖରେ କେତେ ସମୟ ତିଷ୍ଠିପାରନ୍ତା ଅଭିମାନ, କେତେ ସମୟ ଟାଣ ହୋଇ ରହିପାରନ୍ତା ରାଗ, ଈର୍ଷାର ପ୍ରତିବାଦ ?

ଘର ଭିତରେ ସ୍ତ୍ରୀକୁ ଚୁପ୍ କରାଇଦେଲା ଦୀନବନ୍ଧୁ । କିନ୍ତୁ ଗ୍ରାମବାସୀଙ୍କ ମୁହଁକୁ କେମିତି ବନ୍ଦ କରିବ? ଗୁପ୍ତଚର ଭଳି ତା ପିଛା ଲାଗିଗଲେ ବିଶେଷତଃ ଯୁବଗୋଷ୍ଠୀ । ସେ କୁଆଡ଼େ ଗଲା, କେତେବେଳେ ଫେରିଲା । ସାବିତ୍ରୀ ସହ କେଉଁଠାରେ କେତେ ସମୟ କଥା ହେଲା, କଥୋପକଥନର ବିଷୟବସ୍ତୁ କ'ଣ ଥିଲା ଇତ୍ୟାଦି ତଥ୍ୟ ସଂଗ୍ରହ, ଅନୁଶୀଳନ ଏବଂ ପରବର୍ତ୍ତୀ କାର୍ଯ୍ୟପନ୍ଥାପାଇଁ ରୀତିମତ୍ ଗୁପ୍ତ ବୈଠକ ବସିଲା । ତଥ୍ୟଗୁଡ଼ିକ କ୍ରମେ ଚମକ ଏବଂ ଭ୍ରୂକୁଞ୍ଚନ ସୃଷ୍ଟି କରୁଥାଏ, ଯେମିତିକି–

–ଆଜି ସକାଳେ ଦୀନା ସାବି ହାତରୁ ଚା ପିଇଲା । ଢ଼ିଙ୍କି ପଡ଼ିଥିବା ଲଂଘାରେ ଗୋଟିଏ ସପ ଉପରେ ସାମ୍ନାସାମ୍ନି ସେମାନେ ବସିଥିଲେ ।

– ଆଜି ମାଗୁର ମାଛ ଝୋଳ ସାବି ଖୋଇଲା ଏବଂ ଦୀନାର ଅଇଁଠା ଥାଳିରେ ସାବି ଭାତ ପକେଇ ଖାଇଲା । ମାଧବୁଢ଼ା ଅନ୍ଧଟାଏ, ସିଏ କ'ଣ ଏ ସବୁ ଦେଖିପାରିଥିବ?

ତା'ପର ଦୁଇମାସ ପରେ ଅଧିକ ଚାଞ୍ଚଲ୍ୟପ୍ରଦ ଖବର – ଆଜି ରାତି ଆଠଟାରେ ସାବିର ଶୋଇବା ଘର ଖଟ ଉପରେ ଦୀନା । ଡ଼ିବିରି ଆଲୁଅରେ ଝର୍କା ସନ୍ଧିରୁ କିଛି ସ୍ପଷ୍ଟ ଦିଶୁନଥିଲା, ହଠାତ୍ ଡ଼ିବିରି ଆଲୁଅ ଲିଭିଗଲା ।

ହାଏରେ ପରମାନନ୍ଦ, ତୁ କାହିଁ ଗଲୁ ରେ! ତୋ ସଂସାର ଉଚ୍ଛନ୍ନ ହୋଇଗଲାରେ ମୂର୍ଖ । କି ଧନ କମେଇବୁ ତୁ...? କାହା ପାଇଁରେ? ହାଏ ହାଏ । ଏକ ପ୍ରକାର ଡକା ପକେଇଲେ ସର୍ବେ । ସମ୍ମିଳିତ କ୍ରୋଧ, ଅସନ୍ତୋଷ, ଈର୍ଷା, ଏମିତି ଫେଣ୍ଟାଫେଣ୍ଟି ହୋଇ ଗୁପ୍ତ ବୈଠକରେ ନିଷ୍ପତ୍ତି ନିଆଗଲା, ଏହାକୁ ବନ୍ଦ କରିବାକୁ ପଡ଼ିବ । ଦୃଢ଼ ପ୍ରତିବାଦ କରିବାକୁ ପଡ଼ିବ । ଗାଁର ସମ୍ମାନ ଅକ୍ଷୁଣ୍ଣ ରଖିବାକୁ ପଡ଼ିବ । ଯାହା କିଛି ଲୁଚାଛପା ଚାଲିଥିଲା, ସହି ହେଉଥିଲା । କିନ୍ତୁ ଏବେ ଖୁଲମଖୁଲା! ହାତରୁ ଫେରିଲେ

ଦୀନବନ୍ଧୁ ସାଇକେଲର ଡାହାଣ ହାଣ୍ଡେଲରେ ଟଙ୍ଗା ବ୍ୟାଗ୍‌ଟି ପ୍ରଥମେ ଓହ୍ଲେଇ ଦେଉଛି ସାବିତ୍ରୀ ଘରେ । ସାଇକେଲ ଉପରେ ବସି ଟିଂ ଟିଂ ଘଣ୍ଟି ବଜେଇ ଦେଲେ, ହସି ହସି ଘରୁ ବାହାରି ପଡୁଛି ସାବିତ୍ରୀ । ବେଳେବେଳେ ସାଇକେଲ ହାଣ୍ଡେଲ ଉପରେ ଲଦି ହୋଇ ଦୀନବନ୍ଧୁର ଗତି ବନ୍ଦ କରୁଛି, ଆଖପାଖରେ ଯାଉଥିବା ଲୋକମାନଙ୍କୁ ଶୁଣେଇ ଶୁଣେଇ କହୁଛି – ମୁଁ କ'ଣ ଡରିଛି କାହାକୁ, ତମେ ଆସୁନା ଭିତରକୁ, କିଏ କ'ଣ କରିବ ମୋର? ଚୂଆପଡ଼ିଆଣୀ ଝିଅ ମୁଁ, ହଁ!

ସାବିତ୍ରୀର ଆହ୍ୱାନ ଯୁକ୍ତ ଆମନ୍ତ୍ରଣକୁ ପାଦରେ ଆଡ଼େଇଯିବା ଏତେ ସହଜ ନୁହେଁ । ସାବିର ଟଣାଟଣା ଆଖି ସହ ଥରେ ଆଖି ମିଶିଗଲେ, ଚୁଡ଼ିଆଣୀ ଜାଲରେ ଛନ୍ଦି ହୋଇଯିବ ବୈରାଗୀ । ଶ୍ୟାମଳ ଅଙ୍ଗପ୍ରତ୍ୟଙ୍ଗରେ ତାର ଖୁନ୍ଦି ହୋଇ ରହିଛି ପୃଥିବୀଯାକର ଐଶ୍ୱର୍ଯ୍ୟ । କେଉଁ ପୁରୁଷ ପ୍ରତ୍ୟାଖ୍ୟାନ କରିବ ତା'ର ନିମନ୍ତ୍ରଣ!

ବୈଠକରେ ନିଷ୍ପତ୍ତି ହେଲା, ଦୀନବନ୍ଧୁକୁ ସିଧାସିଧା ଏକଥା ପଚରାଯିବ । କୈଫିୟତ ତଲବ୍ କରାଯିବ – ନିଜେ ବାହାହୋଇ, ଗୋଟାଏ ପିଲାର ବାପା ହୋଇ, ପ୍ରବାସରେ ସ୍ୱାମୀ ଥିବାବେଳେ ପର ସ୍ତ୍ରୀ ସହ ଏ ଯେଉଁ ସମ୍ପର୍କ ସେ ତିଆରି କରୁଛି, ସମ୍ପର୍କର ନାଁ କ'ଣ ? ସାବି ତା'ର କିଏ? କେଉଁ ଅଧିକାରରେ ସାବିତ୍ରୀ ଘରେ ରାତ୍ରିର ଶେଷ ପ୍ରହର ପର୍ଯ୍ୟନ୍ତ ସେ ଅଟକି ଯାଉଛି? ଏ ପ୍ରଶ୍ନର ଉତ୍ତର ତା'କୁ ଦେବାକୁ ପଡ଼ିବ, ନଚେତ୍ ପଞ୍ଚାୟତ ଡକାଇବାକୁ ପଡ଼ିବ ।

ଖୁବ୍ ଯୋର୍‌ରେ ହଁ ହାଁ ମାରିଲେ ସମସ୍ତେ, କିନ୍ତୁ ଅସଲ କଥା ହେଲା ଦୀନାକୁ ପଚାରିବ କିଏ? ତା ସାମ୍ନାକୁ ଯିବ କିଏ? ନାଇଁ ନାଇଁ ଯଦି କିଛି ଗୋଟାଏ ଅଘଟଣ ସେ ଘଟେଇଲା ସେଥିପାଇଁ ଦାୟୀ କିଏ ରହିବ? ହୁରୁମା, ହୁଙ୍କାପିଟାକୁ କି ବିଶ୍ୱାସ? ଏଣୁ ନିଷ୍ପତ୍ତି ହେଲା ଜଣେ ନୁହେଁ, ଏକାଥରେ ଆଠ ଦଶ ଜଣ ଯିବା, ଯାହା ହବ ଦେଖାଯିବ । ଯୋଡ଼ାକୁ ତ ଘୋଡ଼ା ସରିନୁହେଁ, ଦୀନା କିଏ କି? ସମୟ ସ୍ଥିର ହେଲା – ରବିବାର ସନ୍ଧ୍ୟା ଆଠଟା । ସମସ୍ତେ ରାଜି ତ? ପ୍ରଶ୍ନକଲେ ନେତୃସ୍ଥାନୀୟ ଯୁବକ । ଏବଂ, ବେକଟେକି ନିରୀକ୍ଷଣ କଲେ, ଆକଳନ କଲେ ବାହିନୀର ତାକତ ।

ହଁ ହଁ, ଏଥିରେ ଅରାଜି ହେବାରେ କ'ଣ ଅଛି । କିନ୍ତୁ ମୋର ରବିବାର ଟିକେ ଚଣ୍ଡିପୁର ପିଇସୀ ଘର ଯିବାର ଅଛି । ତୁମେମାନେ ଯାଅ, ଯାହା କରିବ ମୁଁ ରାଜି । ଜନୈକ ଯୁବକ ପ୍ରସ୍ତାବ ଦେଲେ ।

ମୋର ମଧ୍ୟ ସେଦିନ ରଘୁନାଥପୁର ଭଉଣୀ ଘରକୁ ରଜଭାର ନେଇଯିବାର ଅଛି, ତୁମେମାନେ ଚଳେଇ ଦିଅ । ଆଉ ଜଣେ ନିଜର ଅସୁବିଧା ବଖାଣିଲେ । ଏମିତି ଏମିତି ପ୍ରାୟ ଅର୍ଦ୍ଧାଧିକ ଯୋଦ୍ଧାଙ୍କର ପାରିବାରିକ, ବ୍ୟକ୍ତିଗତ, ସାମାଜିକ

କାର୍ଯ୍ୟମାନ ମନେପଡ଼ିଗଲା । କିନ୍ତୁ ଅସଲ କଥାଟି ଅନ୍ୟ ପ୍ରକାର । ମଞ୍ଜି ରହିଛି ଅନ୍ୟଠିଁ ।

ଦୀନବନ୍ଧୁ ସହ ସିଧାସଳଖ ଅପ୍ରିୟ ହେବାକୁ କେହି ଚାହୁଁ ନଥିଲେ । କାରଣ, ଗାଁର ଅଧାଅଧି ଲୋକ ଏବେ ମଧ ଦୀନବନ୍ଧୁର ସାହାଯ୍ୟ ପ୍ରାର୍ଥୀ । ଆର୍ଥିକ ଭାବେ ସ୍ୱଚ୍ଛଳ ଥିବାରୁ, ଦୀନବନ୍ଧୁ ରାତି ଅଧରେ ମଧ ସାହାଯ୍ୟ କରେ । ବିନା ସୁଧରେ ଟଙ୍କା ଧାର ଦିଏ । କାର୍ତ୍ତିକ ମାସରେ ବସ୍ତା ଧରି ଧାନପାଇଁ ଦୀନା ପିଣ୍ଡାରେ ଠେଲାପେଲା । ଦୀନବନ୍ଧୁର ପଦେ ପଦେ କଥା – ମୁଁ ଦେଢ଼ି ଲଗାଉନି, କି ସୁଧିଆ ଦେଉନି । ଯେତିକି ନଉଚ ଭଲରେ ଭଲରେ ସେତିକି ଫେରେଇ ଦବ । ବାସ୍ । ଲେଖାପଢ଼ା ନାହିଁ କି ଟିପ ଚିହ୍ନ ନାହିଁ । ରୋଗ ବୈରାଗ, ବାହା ପୁଆଣି, ଧୋଇ–ମରୁଡ଼ି ଏସବୁ ଦିନରେ କିଏ ଠିଆହବ ପାଖରେ?

ତେଣୁ ଯୋଜନା ବାତିଲ ହେଲା । କେବଳ ଦୀନବନ୍ଧୁ ନୁହେଁ, ସାବିତ୍ରୀକୁ ମଧ ପଚରାଯିବାର ଯେଉଁ ଅନୌପଚାରିକ ପ୍ରସ୍ତାବଟି ଆସୁଥିଲା, ତାହା ସେହି ପ୍ରସ୍ତାବରେ ହିଁ ରହିଗଲା – ଆଗତ, ଭବିଷ୍ୟତ ବିଚାର କରି । କିନ୍ତୁ ଅନ୍ୟ ଏକ ପ୍ରସ୍ତାବ ସର୍ବସମ୍ମତ ଗୃହୀତ ହେଲା – ସାବିତ୍ରୀକୁ ବାସନ୍ଦ କରାଯିବ । ତା ଜମିରେ କେହି ଭାଗଚାଷ କରିବେ ନାହିଁ । ଆଷାଢ଼ ମାସରେ ଆଣ୍ଠିଦେଲେ, ବହ୍ଧାତ୍ ମାଇକିନା ପାନେପାଇବ । ଘରେ ସ୍ୱାମୀ ନାହିଁ ବୋଲି ରଙ୍ଗରସ ଲଗେଇଛି । ତାକୁ ହାତରେ ନ ମାରି ଭାତରେ ମାରିବାକୁ ପଡ଼ିବ । ଜମାଟ ବାନ୍ଧିଥିବା କ୍ରୋଧ ଏବଂ ଚାପି ରହିଥିବା ବିଦ୍ରୋହକୁ ଏକାଥରେ ମନ ଭିତରୁ ଖୋଲିଦେଲେ ସମସ୍ତେ ଏବଂ ଆତ୍ମ ତୃପ୍ତିର ଖୋଲା ହସରେ ଉଚ୍ଛୁଳି ପଡ଼ିଲା ମିଟିଂଘର । କିନ୍ତୁ ହାଏ । ସବୁ ଯୋଜନା ଯେମିତି ପାଣି ଫାଟିଗଲା । ସବୁ ହିସାବ ଭୁଲ୍ ହୋଇଗଲା । ସେହି ବର୍ଷ ଦୀନବନ୍ଧୁର ହଳ, ପରମାନନ୍ଦ ବିଲରେ ବୁଲିଲା ।

ଦୀନବନ୍ଧୁର ହଳିଆ, ମୂଲିଆ ପରମା ବିଲରେ ଖଟିଲେ । ସେହି ବର୍ଷ ସାବି ଦେଢ଼ ଭରଣ ଧାନ ଅଧିକ ପାଇଲା ।

ବାରମ୍ବାର ଯୋଜନା ପଣ୍ଡ ହେଉଥିବାରୁ କିଛି ଉତ୍ସାହୀ ଯୁବକ ଅଭିନବ ବାଟଟିଏ କାଢ଼ିଲେ । ସାବିତ୍ରୀ ଘର ଝର୍କା ପାଖରେ ପ୍ରତିଦିନ ରାତିରେ ସ୍ୱର ବଦଳେଇ ବିଭିନ୍ନ ପ୍ରକାର ଦ୍ୱିଅର୍ଥ ବୋଧକ, ଅଶ୍ଳୀଳ ରଡ଼ି ଛାଡ଼ିଲେ । 'କ'ଣ ଦୀନବନ୍ଧୁ ତୁମେ ରାତିରେ ବି ବନ୍ଧୁ', 'ଦୀନା ଭାଇ ଗଲା ଗଲା, ସାବିନାନୀ ଦୁଆର ମେଲା', କିମ୍ବା 'ହଉ ହଉ କ'ଣ କରୁଛ ଆମେ ଦେଖୁଛୁ ଯେ... ।' ପାଟିରେ ଗାମୁଛା ବିଣ୍ଡା ଦେଇ କିମ୍ବା ନାକ ଟିପିଧରି ଏସବୁ କଥା କୁହାଯାଉ ଥିବାରୁ ପ୍ରକୃତରେ କିଏ କହୁଛି, ସ୍ୱରବାରିବା କଷ୍ଟ

ହୋଇପଡ଼େ । ଦୀନବନ୍ଧୁ ସବୁଦିନ ସେଠାରେ ନଥାଏ । ବେପାର କଥା ବୁଝୁବୁଝୁ ଝୋଟ ଗୋଦାମରେ ଅନେକ ରାତି ରହିଯାଏ । ସଂଯୋଗ ବଶତଃ ଯେଉଁଦିନ ସାବିତ୍ରୀ ଘରେ ସେ ଥାଏ, ଏପଟୁ ଦ୍ୱିଅର୍ଥ ବୋଧକ ବକ୍ରୋକ୍ତି ଶୁଣିଲେ, ତତ୍‌କ୍ଷଣାତ୍ ଦୁଆର ଖୋଲି ସମ୍ପୂର୍ଣ୍ଣ ଅସାମ୍ବିଧାନିକ ଶବ୍ଦରେ ଗାଁ ଦାଣ୍ଡ ଦୁଲୁକେଇ ଦିଏ । କୁହାଟ ମାରୁଥିବା ବୀରମାନେ ରାତ୍ରିର ଅନ୍ଧକାର ମଧ୍ୟରେ ଲୁଚିଯା'ନ୍ତି । ଗାଁ ଲୋକଙ୍କର ହରତକ୍ ଯେତିକି ବଢୁଥାଏ, ଦୀନବନ୍ଧୁର ସାବିତ୍ରୀ ଘରେ ରହଣି ସେତିକି ଦୀର୍ଘ ହେଉଥାଏ । ଏମିତି ଘଡ଼ିସନ୍ଧି ସମୟରେ ଦିନେ ହଠାତ୍ ପହଂଚିଲା ପରମାନନ୍ଦ । ପ୍ରାୟ ଦେଢ଼ବର୍ଷ ପରେ ।

ପରମାକୁ ଦେଖି ଉତ୍ସାହିତ ହୋଇପଡ଼ିଲେ ଯୁବଗୋଷ୍ଠୀ । ସମୟ ସୁବିଧା ଦେଖି ପରମା କାନରେ ମନ୍ତ୍ର ଫୁଙ୍କିବାକୁ ପଡ଼ିବ । ଏଇଟା ଠିକ୍‌ବେଳ । ଅନ୍ଧାର ରାତି । ତିନିଜଣ ଟୋକା ଯୋଜନା ମୁତାବକ ବାହାରିଲେ । ସେଦିନ ସାବିତ୍ରୀର ଝର୍କା ଖୋଲା । ଅନ୍ୟଦିନେ ବନ୍ଦ ଥାଏ । ପରମା ଆସିଛି ବୋଲି ବୋଧହୁଏ କବାଟ ଝର୍କା ସବୁ ମେଲା । ପିଣ୍ଡା ଉପରକୁ ଚଢ଼ି ଅତି ସନ୍ତର୍ପଣରେ, ସତର୍କତାରେ ଝର୍କା ପାଖରେ ତିନିଜଣ ଭିତରକୁ ଚାହିଁଲେ ।

ଘର ଭିତରେ ଲଣ୍ଠନଟିଏ ଜଳୁଛି । କାଚର ଉପର ଅଂଶ କଳାପଡ଼ି ଅଧିକ ଅନ୍ଧାର ବାହାରୁଛି ଯେମିତି । ଖଟ ଉପରେ ଆରାମରେ ଗୋଡ଼ ଲମ୍ବେଇ ବସିଛି ଦୀନବନ୍ଧୁ । ତା ପାଦ ପାଖରେ ବସିଛି ସାବିତ୍ରୀ । ବୁଢ଼ୀ କବାଟ ବନ୍ଧ ପାଖରେ ବସି କାନ ଡେ଼ରିଛି, ଆଖିକୁ ତାର ଦିଶୁନାହିଁ । ଘର ଭିତରେ ଟହଲ ମାରୁଛି ପରମାନନ୍ଦ । କଲିକତା ସହରର ଚାକଚକ୍ୟ, ବଙ୍ଗାଳୀମାନଙ୍କର କଥାବାର୍ତ୍ତା ଜୀବନ ଶୈଳୀ ଏବଂ ପଇସା ଫିଙ୍ଗିଲେ କଲିକତାରେ ବାପ-ମା ଛାଡ଼ି ଆଉ ସବୁ ଚିଜ ମିଳେ, ଏକଥା ବୁଝେଇବାକୁ ଚେଷ୍ଟାକରୁଛି । ଥଟା ମଜାରେ ଉଛୁଳି ପଡୁଛି ଘର, ହସି ହସି ଦୀନବନ୍ଧୁର ପାଦ, ଗୋଡ଼ ଉପରେ ଲୋଟି ଯାଉଛି ସାବିତ୍ରୀ । ପରମାନନ୍ଦ ସବୁ ଦେଖୁଛି, ପୁଣି ମଜା କଥାଟିଏ ଅଭିଜ୍ଞତାରୁ କହୁଛି । ଏବଂ ଦୀନବନ୍ଧୁର ପାଦ ବୁଢ଼ାଆଙ୍ଗୁଳିକୁ ଚିପିଦେଇ ସାବି କହୁଛି – ଆଜି ଛାଡ଼ିବିନି, ଆମ ଘରେ ଖାଇବାକୁ ପଡ଼ିବ । ଯେତେବେଳେ ମୁଁ ଖାଇବାକୁ ଡ଼ାକିଛି, ସେମିତି ଦାଣ୍ଡ ଦୁଆରୁ ପଳେଇବେ, ଆଜି ତୁମେ ଟିକେ ବୁଝେଇ କୁହ । ପରମାନନ୍ଦ ଉଦ୍ଦେଶ୍ୟରେ ପ୍ରସ୍ତାବ ବାଢ଼ିଲା ସାବି ।

ଝର୍କା ସେପଟେ ଯେଉଁ ତିନିମୂର୍ତ୍ତି ଉଙ୍କି ମାରୁଥିଲେ, ଏ ରହସ୍ୟ ସେମାନେ ବୁଝିପାରିଲେ ନାହିଁ । ଫେରି ଆସିଲେ । ଆଠ ଦିନ ରହି ପରମାନନ୍ଦ ବାହୁଡ଼ିଗଲା କଲିକତା ।

x x x x x

ଅନେକ ବର୍ଷ ପରେ ପୁଣିଥରେ ଖୁବ୍ ଯୋର୍‌ରେ ପାଟିତୁଣ୍ଡ ଶୁଭିଲା ଦୀନବନ୍ଧୁ ଘରୁ । ସଦ୍ୟ ପୁରୁଷୋତ୍ତମରୁ ତୀର୍ଥ ସାରି ଫେରିଥାଏ ଦୀନବନ୍ଧୁ । ପରିଣତ ବୟସ । ତୀର୍ଥ କରିବା କିଛି ଅପରାଧ ନୁହେଁ । ନାତି-ନାତୁଣୀ ହେଲେ, ନାତୁଣୀ ବାହାଘର ବି ସରିଲା, ସାନପୁଅ ବାହାହୋଇ ସଂସାର କଲା, ଏବେ ଦୀନବନ୍ଧୁର ଜଗନ୍ନାଥ ଡ଼ାକିରି ଲାଗିଲା । ପନ୍ଦର ଦିନ ନୀଳାଚଳରେ ରହି ଏବେ ଫେରିଛି ଦୀନବନ୍ଧୁ । ଗଣ୍ଡଗୋଳର ହେତୁ ସେହି ତୀର୍ଥ । ବଡ଼ବୋହୂ କଟାଳ କରି କହୁଥାଏ – ନିଜ ସ୍ତ୍ରୀ ଥାଉ ଥାଉ ପରସ୍ତ୍ରୀକୁ ସାଙ୍ଗରେ ଧରି କିଏ ତୀର୍ଥ କରିଯିବା ମୁଁ ଆଖିଉଠିବା ଦିନୁ ଦେଖିନାହିଁ । ତୁମେମାନେ କେହି ଶୁଣିଛ? ଦେଖିଛ?? ବଡ଼ପୁଅ, ବୁଢ଼ୀ ନୀରବ । ବର୍ଷବର୍ଷ ଧରି ଏମିତି ଶୁଣିଶୁଣି ସେମାନେ ବଧିର ।

ମୋ ମାମୁଁ ଘର ଗାଁର ସୁରଭାଇ ନିଜ ଆଖିରେ ଦେଖିଆସିଛି ସେମାନେ ପୁରୀରେ କ'ଣ କରୁଥିଲେ । ବଡ଼ବୋହୂ ତଥ୍ୟ ସହିତ ଯୁକ୍ତି ଉପସ୍ଥାପନ କରୁଥିଲା, ଯେମିତି ସେ ବର୍ଷବର୍ଷ ଧରି କରିଆସୁଛି ।

ବଡ଼ବୋହୂ ସଦର୍ପେ ଆଖି ବୁଲେଇ ଆଣିଲା ଚାରିପଟେ । ଆଶ୍ୱସ୍ତ ହେଲା, ତା'ର ଅକାଟ୍ୟ ଯୁକ୍ତିକୁ ଅକୁଣ୍ଠ ନୀରବ ସମର୍ଥନ ମିଳୁଛି ଏବଂ ପ୍ରତିପକ୍ଷର ପ୍ରତିରୋଧ କରିବା ପାଇଁ ସାମର୍ଥ୍ୟ ନାହିଁ । ତେଣୁ ସେ ଆକ୍ରୋଶକୁ ଦ୍ୱିଗୁଣିତ କରି ଚଢ଼ାଗଳାରେ ଦାବୀ କଲା – ଛି ଛି ଛି, କି ଅଲାଜୁକ ଏ ବୁଢ଼ାକାଳେ? କି ପ୍ରେମ!!

ରୁକିଆ ବାହାଘରକୁ ଯୋଉ କୋଡ଼ିଏ ହଜାର ପରମାନନ୍ଦ ନେଇଥିଲା, ସେ ଟଙ୍କା କାହିଁ? ଶୀଘ୍ର ସେ ଟଙ୍କା ପକା । କଲିକତା ଟଙ୍କା ରହିବ ବ୍ୟାଙ୍କରେ, ଆଉ ଆମ ଟଙ୍କାରେ ଘର ତିଆରି ହବ, ଝିଅ ବାହାଘର ହବ! ଏବେ ତୀର୍ଥ ବି ହେଲା! ତୁମେ ଯାହା ବି କୁହ, ଲୋକମାନେ ଯାହା କୁହନ୍ତି, ଠିକ୍ କୁହନ୍ତି । ଅଣ୍ଟାରେ କାନି ଖୋସିଲା ବଡ଼ବୋହୂ । ଏତେ ଯୋର୍‌ରେ ମୁହଁ ମୋଡ଼ିଲା ଯେ ଓଠଟା, ତା'ର କାନରେ ବାଜିଥାନ୍ତା । ଏବଂ, କ୍ଷତ ସ୍ଥାନକୁ ଆଉ ଟିକେ ଉଖୁରେଇ ଦେଲା – ମାଟ୍ରିକ୍ ପରୀକ୍ଷା ଦେଲା ପରମା ଝିଅ । ସେ ଯାଇ କଲିକତାରେ, ଆଉ ଇଏ ବାହାରି ପଡ଼ିଲେ ପରୀକ୍ଷା ସେଣ୍ଟର । ଲୋକ ଦେଖିଲେ, କଥା ଅଛପା ରହିଲା ??

ସେ ଗୋଟାଏ ଅଧ୍ୟାୟ । ପରମାନନ୍ଦ ଝିଅ ରୁକିଆ ଯେଉଁଦିନ ବସପୁର ସେଣ୍ଟର୍‌ରେ ମାଟ୍ରିକ୍ ପରୀକ୍ଷା ଦେବାକୁ ଗଲା, ଦୀନବନ୍ଧୁ ଦଶମାଇଲ ବାଟ ସାଇକେଲ ମାରି ସେଠି ହାଜର । ମାଷ୍ଟ୍ରମାନଙ୍କୁ ନେହୁରା ହେଇ କେତେ ଅନୁରୋଧ । ଝିଅପିଲାଟା, ପାରି କରିଦିଅନ୍ତୁ ଆଜ୍ଞା । ଶିକ୍ଷକମାନେ ମଧ୍ୟ ମୁରୁକି ହସା ଦେଲେ । କାରଣ ଦୀନବନ୍ଧୁକୁ ସେଠି କିଏ ନଜାଣେ ? ଚିହ୍ନା ଜଣା କିଛି ଲୋକ ପଚାରିଦେଲେ ମଧ୍ୟ – ସେ କିଏ କି ?

– ପରମା ଝିଅ ।

– କୋଉ ପରମା ?? ଅତି ସିଆଣିଆ କେତେକ ଅତିରିକ୍ତ ପ୍ରଶ୍ନକଲେ ।

– ଆମ ଗାଁ ପରମା ମ ! ସାବିତ୍ରୀ ଝିଅ ।

– ହଁ ! ସେ କଥା କହୁନା, ସାବିତ୍ରୀ ଝିଅ, କହୁଛ କ'ଣ ନା ପରମା ଝିଅ ।

ଏକ କୁଟିଳ ହସ ସଂକ୍ରମିତ ହୋଇଯାଏ । ଆମୋଦିତ ହେଉଥିଲା ଦର୍ଶକ ମଣ୍ଡଳୀ । ଦୀନବନ୍ଧୁ ବୁଝିପାରେ ତା'ର ଅର୍ଥ । କିନ୍ତୁ ପ୍ରତ୍ୟୁତ୍ତର ଦିଏ ନାହିଁ । ସେ ଯୋସ୍ ଏବେ ଆଉ ତା'ର ନାହିଁ! କିନ୍ତୁ ବଡ଼ବୋହୂ ଏ କଥା ଜାଣିଲା କେମିତି?

ଟଙ୍କା ଗଲା, ଇଜ୍ଜତ ଗଲା, ଶେଷରେ ମାଡ଼ ଖାଇଲା ଏ ଲୋକ, ତଥାପି ବଦଳିଲା ନାହିଁ । ବଡ଼ବୋହୂ ଉହୁଙ୍କି ଆସିଲା ଦି ପାଦ । ବୟସ ଥିବାବେଳେ ଦୀନବନ୍ଧୁ ସାମ୍ନାରେ ଠିଆ ହେବାକୁ ଯେଉଁମାନେ ଡରୁଥିଲେ, ସେମାନେ ଏବେ ଥଟା, ଟାପରା କଲେଣି । ବଡ଼ବୋହୂ ସେଥିରୁ ବାଦ୍ ପଡନ୍ତା ବା କେମିତି? ବୁଢ଼ା ନୀରବ ରହୁଥିବାରୁ ତା'ର ଉତ୍ସାହ ଆହୁରି ବଢ଼ିଗଲା । ଖୋଲିଗଲା ବୁଢ଼ାର ଗୋଇ । ଫିଟେଇ ଦେଲା ଦୀର୍ଘ ଦିନର ଅବଦମିତ କ୍ରୋଧ, ଘୃଣା ଏବଂ ପ୍ରତିଶୋଧର ଫୁଆରା । ଏଇଟା ହିଁ ଠିକ୍ ଦାଉ ସାଧିବାର ବେଳ ।

'ରୁକିଆ ଯଦି ପରମାର ଝିଅ ହୋଇଥାନ୍ତା, ତା ବାପା ବେଦୀରେ ବସି କନ୍ୟା ଦାନ କରିନଥାନ୍ତା! ତମେ କ'ଣ ତାଙ୍କର ବନ୍ଧୁ, ବାନ୍ଧବ ନା ସାହି ଭାଇ? ତମେ କାହିଁକି କନ୍ୟାଦାନ କଲ? ସାବି ତମର କିଏ କି ?

''ଚୁପ୍‌କର ! ଚୁପକର ବଦମାସ୍ !'' ଗର୍ଜି ଉଠିଲା ଦୀନବନ୍ଧୁ । ଛାତି ଭିତରୁ ଗରମ ବାମ୍ଫ ମେଞ୍ଚାଏ ବାହାରି ଆସିଲା ବୈଶାଖର ଦ୍ୱିପହର ଝାଞ୍ଜି ପରି । ଓଠ ଥରିଲା, ପାଟି ଖନି ମାରିଗଲା । ଅଣ୍ଟା ସଳଖି ଠିଆ ହେଲା ଦୀନବନ୍ଧୁ । 'ତୁମକୁ ବୋହୂର ସନମାନ ଦେଇଥିଲି, ଯାହା କହିଲ ମୋର ମନବୋଧ ହୋଇଗଲା ।'' ତା'ପରେ ଟିକେ ଦମ୍ ନେଲା ବୁଢ଼ା । ଦମ୍ଭକଲା ଅଣ୍ଟା ।

'କ'ଣ ହେଲା ରୁକିଆ ବାହାଘରରେ କୋଡ଼ିଏ ହଜାର ଖର୍ଚ୍ଚକଲି । କାହାର ବୋପାଧନ କି! ହକ୍ କମେଇ ଥିଲି, ଖର୍ଚ୍ଚ କଲି । ଆରେ କାହାକୁ ମୁଁ ନ ଦେଇଛି? ପ୍ରଶ୍ନକଲା ଏବଂ ଉତ୍ତର ଦାବି କଲାଭଳି ଚାହିଁଲା । ବଡ଼ ନାତୁଣୀ ବାହାଘରକୁ ଲକ୍ଷେ ଟଙ୍କା ଦେଇନି? ସାନପୁଅ ବେପାର ପାଇଁ ପଚାଶ ହଜାର ଦେଇନି? ଆଉ ତୁମେ ଯୋଉ ଚାରିପରସ୍ତ ସୁନାହାର ପକେଇଛ, ତାକୁ କିଏ ଦେଲା? ବାପଘରୁ ପରା ଦି ଖିଏ ମାଳି ପକେଇ ତୁମେ ଆସିଥିଲ! ଭୁଲିଗଲ ସବୁ !! କୋଉ ପୁଅ ବାହାଘରରେ ଛଦାମଟିଏ ମୁଁ ଯଉତୁକ ଆଣିଛି?

ନୀରବ, ନିସ୍ତବ୍ଧ ହୋଇଗଲେ ପରିବାରର ସମସ୍ତ ସଦସ୍ୟ। ବୁଢ଼ା ମୁଣ୍ଡକୁ ରକ୍ତ ଚଢ଼ିଲେ ସେ ଏମିତି ହୁଏ। କେହି ସମ୍ଭାଳିପଡ଼ନ୍ତି ନାହିଁ।

ତୁମେମାନେ କେବଳ ନେଇ ଜାଣିଛ ! ଆଉ ମୋ ବିରୋଧରେ ଚକ୍ରାନ୍ତ କରିଜାଣିଛ। କେହି ହେଲେ ମୋ ମନର କଥା ବୁଝିବାକୁ ଚେଷ୍ଟାକରିଛ ? କପେ ଚା' କରିଦେଇଛ ସକାଳୁ ! ଏଇ ତିରିଶ ବର୍ଷ ଭିତରେ ! ଦୁଧ ଗିଲାସେ କେତେବେଳେ ବଢ଼େଇଛ ମୋ ଆଡ଼େ? ଘରେ ପରା ଗାଈ ଦୁହାଁଳିଆ ! ସେକଥା ଛାଡ଼, ମୋ'ର ଦିହ ପା' ହେଲେ କେତେବେଳେ ମୋ ଦିହ ମୁଣ୍ଡରେ ହାତ ମାରିଛ ? ଆଁ ?

କାଉ କା କହିଲାବେଳକୁ, ଦୀନବନ୍ଧୁ ଦାନ୍ତଘସି ଫତେଇଟିଏ ଗଳେଇ ଦେଇ ବାହାରିଯାଏ ସାବିତ୍ରୀ ଘରକୁ। ଚୁଲିରେ ଚା'ଡେକଚି ବସେଇ ଅନେଇଥାଏ ସାବି। ଦାଣ୍ଡ ଦୁଆରେ ପାଦଶବ୍ଦ ଶୁଣିଲେ କାଉଁରିଆରେ ସେ ଦିଆସିଲି ମାରେ। ଲଂଘାରେ ସପ ପଡ଼ିଥାଏ ଆଗରୁ। ଖୁଣ୍ଟକୁ ଆଉଜି ବସେ ଦୀନବନ୍ଧୁ, ଠିକ୍ ରଜା ସିଂହାସନରେ ବସିବା ଭଳି। କି ଖରା, କି ବର୍ଷା ଦୀର୍ଘ ତିରିଶ ବର୍ଷ ହେଲାଣି ଏମିତି ସାବିତ୍ରୀର ଚା' ଗିଲାସରେ ଆରମ୍ଭ ହୁଏ ଦୀନବନ୍ଧୁର ସକାଳ। କେବଳ ସକାଳ କାହିଁକି, ମଧ୍ୟାହ୍ନ ଏବଂ ରାତ୍ରି ଭୋଜନ ମଧ୍ୟ ମାସରେ କୋଡ଼ିଏ ଦିନ ଏଇଠି ହୁଏ। ପରମାନନ୍ଦ ପାଞ୍ଚ ବର୍ଷ ହେଲା କଲିକତାରୁ ଫେରିବା ପରେ ମଧ୍ୟ ଏ କାର୍ଯ୍ୟସୂଚୀରେ କିଛି ପରିବର୍ତ୍ତନ ନାହିଁ।

କି ନିଲଠା ଲୋକ ମଃ ! ଛିଗୁଲେଇଲା ବଡ଼ବୋହୂ, ସାବି ଧୋବଣୀ ନୀତି ରାତିରେ କ୍ଷୀର ପି'ବାକୁ ଦିଏ, ସେବା କରେ ଏକଥା ତ ସମସ୍ତେ ଜାଣନ୍ତି। କିନ୍ତୁ ସେ କାହିଁକି କରେ ସେ କଥା କୁହ? ସେ ତୁମର କିଏ କି? ବଡ଼ବୋହୂ ତାର ଶେଷ ଅସ୍ତ୍ର ପ୍ରୟୋଗ କଲା।

କ'ଣ ତୁମେ ଚାହୁଁଛ? କ'ଣ ଶୁଣିବାକୁ ଚାହୁଁଛ? ଚିତ୍କାର କଲା ଦୀନବନ୍ଧୁ। କେବଳ ତୁମେ ନୁହଁ, ଏ ସଂସାରରେ ସମସ୍ତେ ବି ତୁମ ଭଳି ଜାଣିବାକୁ ଚାହିଁଛନ୍ତି! ତେବେ ଶୁଣ, ଏଇଟା ମୋ' ଘର, ଆଉ ସେଇଟା ବି ମୋ ଘର। ତା'ପରେ ବୁଢ଼ା ଚୁପ୍ ରହିଲା।

– ଆଉ ସାବି? ବଡ଼ବୋହୂ ଛିଞ୍ଚାଡ଼ିଦେଲା ମୁହଁ।

– ଦି'ଟା ମଣିଷ ଭିତରେ କି ସମ୍ପର୍କ ଆଉ ହବ? ରୋକ୍‌ଠୋକ୍ ଉତ୍ତର ଫେରେଇଲା ଦୀନବନ୍ଧୁ । ହୁଏତ ଆଉ କିଛି କହିବାକୁ ଚେଷ୍ଟା କରୁଥିଲା, କିନ୍ତୁ, ଛାତିକୁ ଚାପି ଧରି ଗଛ କାଟିଲା ପରି ଦୁମ୍ କରି କଚାଡ଼ି ହୋଇପଡ଼ିଲା।

ବଡ଼ ଡାକ୍ତରଖାନା ଖଟିଆରେ ଶୋଇଛି ଦୀନବନ୍ଧୁ । ଚେତା ଫେରି ନାହିଁ । ଦୁଇଦିନ ବିତିଗଲାଣି । ସାବିତ୍ରୀ, ଝିଅ-ଜ୍ୱାଇଁଙ୍କ ସହ ଅପଲକ ଚାହିଁ ରହିଛି । ଘର ଜଗିଛି ପରମାନନ୍ଦ । ଗାଁ ପିଲାଙ୍କଠୁ ଖବର ପାଇ ଅଧଘଣ୍ଟା ଭିତରେ ସେ ଧାଇଁ ଧାଇଁ ପହଂଚିଥିଲା ସ୍ୱାସ୍ଥ୍ୟ କେନ୍ଦ୍ରରେ । ଗାଡ଼ି ଖର୍ଚ୍ଚ, ଔଷଧ, ଡାକ୍ତର ଖର୍ଚ୍ଚ ସବୁ ସେ ତୁଲେଇଛି । ଗୋଡ଼ ପାଖରେ ବସି ପାଦ ଆଉଁସି ଦେଉଛି, ହାତ ବୁଲେଇଆଣୁଛି ପୁଙ୍ଗୁଳା ହୋଇପଡ଼ିଥିବା ତା ଜୀବନ ନାଟକର ଏମିତି ଏକ ଚରିତ୍ର ଉପରେ, ଯାହାକୁ ବୁଝିବାପାଇଁ ଚାଳିଶ ବର୍ଷ ଚେଷ୍ଟା କରି ମଧ୍ୟ ସେ ବିଫଳ ହୋଇଛି ।

ଡାକ୍ତରଙ୍କ ନିର୍ଦ୍ଦେଶରେ ଦୀନବନ୍ଧୁର ପାଦ ପାଖରୁ ଘୁଞ୍ଚିଗଲା ସାବିତ୍ରୀ । ଦୁଇଜଣ ଡାକ୍ତର ନଖରୁ ତାଳୁ ପର୍ଯ୍ୟନ୍ତ ତନ୍ନତନ୍ନ ପରୀକ୍ଷା କଲେ ଏବଂ ଛାତି ଉପରେ ବାରମ୍ବାର ଚାପଦେଲେ । ତା'ପରେ ପରସ୍ପର ଭିତରେ କିଛି ଆଲୋଚନା କରି ଘୋଷଣା କଲେ - ନା, ସେ ଆଉ ନାହିଁ । ଶବ ନେବାର ବ୍ୟବସ୍ଥା କର ।

ଥ ହୋଇ ବସିପଡ଼ିଲା ସାବିତ୍ରୀ ବୁଢ଼ୀ ଏବଂ ଈଷତ୍ ନୀଳ ପଡ଼ିଯାଇଥିବା ଦୀନବନ୍ଧୁର ମୁହଁକୁ ଟେକି ଧରିଲା ଦୁଇ ପାପୁଲିରେ । କେଉଁଠି ସଂଚିଥିଲା କେଜାଣି, ଦୁଇଟୋପା ଲୁହ ତା' କୋରଡ଼ଗତ ଆଖିରୁ ଝରିପଡ଼ିଲା ଦୀନବନ୍ଧୁର ଓଠ ଉପରେ ।



(ଝଙ୍କାର : ଜୁନ୍-୨୦୦୮)

# ଶୁଆ ପୁଅ

ସୁରଞ୍ଜନ ଛ'ମାସ ହେଲା ପତ୍ନୀଙ୍କୁ ମିଛ କହିଚାଲିଛନ୍ତି । ଅବଶ୍ୟ, ବେଳେବେଳେ ସତ ଠାରୁ ମଧୁର ମିଛ କଥାଟି ଦାମ୍ପତ୍ୟ ଜୀବନକୁ ବିପର୍ଯ୍ୟୟରୁ ବଞ୍ଚାଏ, ସମ୍ପର୍କକୁ ଗାଢ଼ା କରେ । କ୍ଷଣସ୍ଥାୟୀ ହେଉ ବରଂ, ଚେନାଏ ହସ ଫୁଟେଇପାରେ ଶୁଖିଲା ଓଠରେ । ଆଶ୍ୱାସନା ଭରିଦିଏ ମନରେ ।

କିନ୍ତୁ, ଏମିତି ମିଛି ମିଛିକା ଖେଳ କେତେଦିନ ? ତା'ର ମଧ ଗୋଟିଏ ସୀମା ଅଛି, ନା ନାହିଁ ?

ଶୁଆଟିଏ ଦରକାର । ଛୋଟ ହେଉ, କି ବଡ଼ ହେଉ । ପୁଣି, ସିଏ କଥା କହିବା ନିହାତି ଦରକାର ।

ଅପର୍ଣ୍ଣା, ଅଫିସ୍ ଫେରନ୍ତା ସ୍ୱାମୀଙ୍କ ବାଟକୁ ଚାତକ ଭଳି ଚାହିଁଥାନ୍ତି । ତାଙ୍କର ବିଶ୍ୱାସ ଥାଏ, ଆଜି ନିଶ୍ଚୟ ପଞ୍ଜୁରିଟି ଆଣିବେ ସ୍ୱାମୀ ଏବଂ କହିବେ – ବହୁ କଷ୍ଟରେ ମିଳିଲା, ଖୁବ୍ ଶୀଘ୍ର କଥା କହିବ । ଅଥଚ, ସେମିତି କିଛି ଘଟେନା । ସ୍ୱାମୀଙ୍କର ଖାଲିହାତ ଦେଖି ଆଖି ତାଙ୍କର ଛଳଛଳ ହୋଇଯାଏ, ମୁହଁ ଶୁଖିଯାଏ । କରୁଣ, ଦୟନୀୟ ଦିଶେ ଚେହେରା ।

ସୁରଞ୍ଜନ ପ୍ରତିଦିନ ନୂଆ ନୂଆ ଆଶ୍ୱାସନା ଦିଅନ୍ତି । 'ଆଜି ରାମବାବୁଙ୍କୁ କହିଛି, ଠିକ୍ ତାଙ୍କରି ଶୁଆ ଭଳି ଶୁଆଟିଏ ଆଣିଦେବେ । ଚାରିଦିନ ସମୟ ମାଗିଛନ୍ତି ।' କିମ୍ବା, 'ନୟାଗଡ଼ରୁ ଖାସ୍ ଲୋକଟିଏ ଆସିଥିଲା । ତା'ର କାମ ଅଛି ଆମ ଅଫିସ୍‌ରେ । ତା ଫାଇଲ୍ ମୁଁ ଡିଲ୍ କରୁଛି । ସେ କହିଛି, ମଣିନାଗ ପର୍ବତରୁ, ରାଜବଂଶୀ ଶୁଆଟିଏ ନିଶ୍ଚୟ ଏଇ ରବିବାର ଭିତରେ ଆଣିଦେବ ।' କିମ୍ବା, 'ମାଉସୀଙ୍କୁ କହିଛି । ତାଙ୍କ ଉପରେ ତୁମର ବିଶ୍ୱାସ ଅଛି ନା ନାହିଁ ?'

ଛ'ମାସ ବିତିଗଲା, କିନ୍ତୁ ଚାରିଦିନର କଣ୍ଟ ପୂରିଲା ନାହିଁ କି, ରବିବାର ଆସିଲା ନାହିଁ । ତାଲିକା ଆହୁରି ବଢ଼ିଚାଲିଲା । ସୁରଞ୍ଜନ ଜାଣନ୍ତି, ସତ କ'ଣ,

ବାସ୍ତବତା କ'ଣ । ଇତିହାସକୁ ସେ ଦୋହରାଇବାକୁ ଚାହାନ୍ତି ନାହିଁ । ଯେଉଁ ଶୁଆଟି ତାଙ୍କ ଘରେ ଥିଲା, ତାପାଇଁ କେତେ ମାନସିକ ଯନ୍ତ୍ରଣା ସେ ନ ପାଇଛନ୍ତି? ଆର୍ଥିକ, ଶାରୀରିକ ପୀଡ଼ା କଥା ଛାଡ଼ନ୍ତୁ । ଦୀର୍ଘ ତିନି ବର୍ଷ ହେଲା । ଗଳାରେ ଲାଗିଥିଲା କଣ୍ଟା ଭଳି । ସେ କେବଳ ସହୁଥିଲେ, ବରଦାସ୍ତ କରୁଥିଲେ । ସେଥିରୁ ମୁକ୍ତି ପାଇବାର ବାଟ ମଧ୍ୟ ତାଙ୍କୁ ଦିଶୁ ନଥିଲା ।

ସେ ଜାଣିଥିଲେ, ଘରେ ପହଞ୍ଚିଲା ବେଳକୁ କିଛି ଗୋଟାଏ କ୍ଷୟକ୍ଷତି ନିଶ୍ଚୟ ଘଟିଥିବ । ବାରଣ୍ଡାରେ ସଜ୍ଜିତ ଫୁଲକୁଣ୍ଡ ଗୋଟେ ଦି'ଟା କ୍ଷତାକ୍ତ ସୈନିକ ଭଳି ତଳେ ଗଡୁଥିବେ, କନ୍‌କନିଆ ଗୋଲାପର ଖଣ୍ଡ ଖଣ୍ଡ କଢ଼ି ନଚେତ ପିଜୁଳି ଗଛ ତଳେ ଫୁଲ ଛାଡ଼ି ନଥିବା କୁନିକୁନି ପିଜୁଳି ଆଠ ଦଶପୁଞ୍ଜା ପଡ଼ିଥିବ । ସାମୟିକ ଭାବେ ବ୍ୟବହୃତ ହେଉଥିବା, ସାଇକେଲ ଚକାରୁ ପବନ ବାହାରି ଯାଇଥିବ କିମ୍ବା ଗତକାଲି ସୃଷ୍ଟି ହୋଇଥିବା ସୋଫାର କଣାଟି ଆଉ ଟିକେ ବଡ଼ ହୋଇ ଅନ୍ତବୁଜୁଳାରୁ କିଛି ବାହାରି ଆସିଥିବ ।

ଏ ଉତ୍ପାତ ବର୍ଷେ ହେଲା ଚାଲିଛି । କାର୍ଯ୍ୟକ୍ରମ ସୁରଞ୍ଜନ ଅଫିସ୍ ବାହାରିଯିବା ପରେ ଆରମ୍ଭ ହୁଏ । ସେ ସ୍କୁଟର୍‌କୁ ଡାହାଣକୁ ଏକ ମିନିଟ୍ ଅଣେଇ ପରବର୍ତ୍ତୀ ଦୁଇ ମିନିଟ ଘୁଁ ଘୁଁ କରିବା ବେଳେ, ସାହି ପଡ଼ିଶା ଘଡ଼ିମିଳାଇ ନିଅନ୍ତି, ନିଶ୍ଚୟ ନ'ଟା ପଚାଶ । ଏବଂ, ଠିକ୍ ଦଶଟା ବେଳକୁ ଆରମ୍ଭ ହୋଇଯାଏ ବାଲ୍ୟ ମହୋତ୍ସବ – ସୁରଞ୍ଜନଙ୍କ ପତ୍ନୀ ଅପର୍ଣ୍ଣାଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ।

ଠୁକୁ ଠୁକୁ ଚାଲି ଶିଖୁଥିବା ବାଳୁତ ଠାରୁ ଆରମ୍ଭ କରି, ଆଠ ଦଶ ବର୍ଷୀୟ ସ୍କୁଲ-ଛଡ଼ା ସାତ ଆଠଜଣ ଗୁଣ୍ଡ ହୋଇଯା'ନ୍ତି ବାରଣ୍ଡାରେ । ଏହା ପଛରେ ଦୁଇଟି ଆକର୍ଷଣ ଥିଲା । ଗୋଟିଏ, ଅପର୍ଣ୍ଣାଙ୍କର ବାତ୍ସଲ୍ୟ ମମତା ଏବଂ ଅନ୍ୟଟି, ମିଟୁ । ପିଲାମାନେ ଆଣ୍ଟିଙ୍କ ଠାରୁ ଚକୋଲେଟ୍, ମିଠା, ଅଙ୍ଗୁର ଖାଇସାରିବା ପରେ ଆରମ୍ଭ ହୁଏ ମିଟୁ ସହ ଛୁଆଁ ଛୁଇଁ ଖେଳ । ମିଟୁର ବିଶେଷତ୍ୱ ସେ ପଞ୍ଜୁରି ଭିତରେ ନଥାଏ । ବସିଥାଏ ଟି-ପୟ ଉପରେ, ଝର୍କା ରେଲିଂରେ, କବାଟ ଉପରେ; ନଚେତ୍ ଝୁଲୁଥାଏ ବୈଠକ ଘରେ ତା'ପାଇଁ ବନ୍ଧା ହୋଇଥିବା ବାଉଁଶ ଦୋଳିରେ । ପିଲାଙ୍କୁ ଦେଖି ସେ ପରମେଲେଇ କୁରୁଳି ଉଠେ । ଟିଉଁ ଟିଉଁ ଶବ୍ଦ କରେ, ଏବଂ ଉଡ଼ିବା ଆରମ୍ଭ କରେ । ମିଟୁ ଉଡ଼ିଲେ ତାକୁ ଛୁଇଁବା ପାଇଁ ପିଲାଏ ତା ପଛରେ ଗୋଡ଼ାନ୍ତି । ସେ ଆହ୍ୱାନ କରେ । ଠିକ୍ ମୁଣ୍ଡ ଉପରେ ପର ବାଡ଼େଇ ଉଡ଼ିଯାଏ – ଘରୁ ଅଗଣା, ପିଜୁଳି ଗଛ, କାଠଗେଟ୍; ପୁଣି ଅଗଣା, ଘର, ପିଜୁଳି ଗଛ । ଅପର୍ଣ୍ଣା ମନଭରି ଉପଭୋଗ କରନ୍ତି ଏ ଲୀଳା । ପ୍ରାୟ ଘଣ୍ଟାଏ ପର୍ଯ୍ୟନ୍ତ ଏମିତି ଚାଲେ ଏବଂ ଯେତେବେଳେ ମିଟୁ ଅପର୍ଣ୍ଣାଙ୍କର

କୋଳରେ ଆସି ବସିପଡ଼େ, ତା'ପିଠି ଆଉଁଷି ପିଲାମାନଙ୍କ ଉଦ୍ଦେଶ୍ୟରେ ସେ କୁହନ୍ତି – ଯା'ରେ ପିଲେ, ମିଟୁ ଥକି ପଡ଼ିଲାଣି, କାଲିକୁ ଆସିବ ।

ରବିବାର ଖେଳହୁଏ ନାହିଁ । ସୁରଞ୍ଜନ ଘରେ ଥାନ୍ତି । ବହୁ ଯତ୍ନରେ ଏବଂ ଆତ୍ମୀୟତାର ସହ ଘରକୁ ଲାଗି ସୁରଞ୍ଜନ ଛୋଟ ବଗିଚାଟି କରିଛନ୍ତି । ସକାଳୁ ଏବଂ ସଞ୍ଜରେ ଘଣ୍ଟାଏ ଘଣ୍ଟାଏ ସମୟ ସେଥିରେ ଯାଏ । ଏଇ ଘରେ ଦଶ ବର୍ଷ ହେଲା । ଭଡ଼ାଘର ବୋଲି ବାଛ ବିଚାର ନାହିଁ । ଯଦି କେଉଁଠି ଭଲ ଚାରାଟିଏ ପାଇଲେ, ଫୁଲ ହେଉ କି ଫଳ ହେଉ, ତାହା ନିଶ୍ଚୟ ଆସିବ । ଲେମ୍ବୁ, ପିଜୁଳି, ସଜନା ତ ସେ ଲଗାଇଥିଲେ । ଏବେ ଫଳୁଛନ୍ତି ସମସ୍ତେ । ଶୀତଦିନେ ବିନ୍ସ, ମୂଳା, ପାଳଙ୍ଗ, ପୋଇ ସେହି ଛୋଟ ଜାଗାରେ ଏମିତି ଶୃଙ୍ଖଳିତ ଭାବେ ସେ ଲଗାନ୍ତି ଯେ, ଯିବା ଆସିବା ଲୋକଙ୍କ ଦୃଷ୍ଟି ନିଶ୍ଚୟ ପଡ଼ିବ । ଏମିତିକି କେତେକ ଶ୍ରଦ୍ଧାଳୁ 'ଗେଣ୍ଡୁଫୁଲ ଗଣ୍ଡାଏ ଦଉନାହାନ୍ତି, କାଲି ଗୁରୁବାର ଅଛି' କହି ଗେଟ୍ ଖୋଲନ୍ତି ଏବଂ ଫୁଲସହ ଯିବା ବେଳେ, 'ବଢ଼ିଆ ଲେମ୍ବୁ ହୋଇଛି ତ, ପାଣି କେମିତି ବାହାରୁଛି? ଆମ ଗାଁରେ ବି ଏମିତି ଲେମ୍ବୁ ଗଛଟିଏ ଥିଲା, କି ବାସ୍ନା ସେ ଲେମ୍ବୁର ! କଞ୍ଚା ଲଙ୍କା, ରସୁଣ, ତା ସାଙ୍ଗରେ ଲେମ୍ବୁରୁ ଯଦି ଚେନାଏ ଆପଣ ଚିପୁଡ଼ି ଦେବେ, ଓଃ ! କଂସାଏ ପଖାଳ ତା ସାଙ୍ଗକୁ । ଆଉ କୁହନ୍ତୁ ନାହିଁ, ସେ ଯୋଉ ତୃପ୍ତି । ସେ ଆନନ୍ଦ । ଆଜିକାଲି ବଜାର ଲେମ୍ବୁରେ ପାଣି କାହିଁ ? ବାସ୍ନା କଥା ଦୂରେ ଥାଉ ।' ଏତକ ସ୍ମୃତିଚାରଣ କରି ଚାରି ଛ'ଟା ଲେମ୍ବୁ, କିଛି ବିନ୍ସ ଏବଂ ଯଦି ସମ୍ଭବ ବାଇଗଣ ଦୁଇଟା ପକେଟ୍‌ରେ ପୂରାଇବେ ଏବଂ ଯିବାବେଳେ ଅପର୍ଣ୍ଣାଙ୍କୁ ଉଚ୍ଚସ୍ୱରରେ ପ୍ରଶଂସା କରିଯାନ୍ତି, ଯେମିତିକି ଘର ଭିତର ପର୍ଯ୍ୟନ୍ତ ପ୍ରଶସ୍ତି ପହଂଚିପାରିବ – ଯାହା କୁହନ୍ତୁ ଆପଣ । ମାନିବାକୁ ପଡ଼ିବ ଆପଣଙ୍କର ପତ୍ନୀଙ୍କର ରୁଚିକୁ । ଧନ୍ୟ କହିବ ତାଙ୍କ ହାତକୁ । ତାଙ୍କ ଚେଷ୍ଟା ନଥିଲେ ଏ ଗଛରେ ନା ଫୁଲ ଫୁଟନ୍ତା, ନା କଷି ଧରନ୍ତା । ଚାଲୁ ନାହାନ୍ତି ଦେଖିବେ ଆମ କ୍ୱାର୍ଟସରେ ବି ଦିଟା ଲେମ୍ବୁଗଛ ଅଣ୍ଡିରା ହୋଇ ଠିଆହୋଇଛି । ଏତେ ଜାଗା ଅଛି ପଛପଟେ, କ'ଣ ହବ, ପଡ଼ିଆ ।'

ସୁରଞ୍ଜନ ଆମୋଦିତ ହୁଅନ୍ତି । ମିଛ ବୋଲି ଜାଣି ସୁଦ୍ଧା ସେ ପ୍ରାତଃଭ୍ରମଣକାରୀଙ୍କୁ ପୁଣି କେବେ ଆସିବାପାଇଁ ଆମନ୍ତ୍ରଣ କରନ୍ତି ।

ଶୁଆ–ଖେଳରେ ବଗିଚାର କ୍ଷତି ଯେତିକି ହୁଏ, ତା'ଠୁଁ ଶତଗୁଣେ କ୍ଷତାକ୍ତ ହୁଅନ୍ତି ସୁରଞ୍ଜନ । ଭଙ୍ଗା ପିଜୁଳି ଡାଳ, କୁଦାକୁଦି ହୋଇ ନିଶ୍ଚିହ୍ନ ହୋଇଯାଇଥିବା ଦୁଇ ପତ୍ରିଆ ଶାଗପଟାଳି, ଛିଆ ଭଳି ଓହଳିଥିବା ବିନ୍ସ ଗଛର ମୂଳୋତ୍ପାଟନ ଦେଖି, ଅଫିସ୍ ଫେରନ୍ତା ଭାରାକ୍ରାନ୍ତ ମନରେ ସତେ ଯେମିତି ନିଆଁ ଲାଗିଯାଏ । ହାତ

ଗୋଡ଼ ଥରିଯାଏ । ରାଗରେ ପାଟି ଖନିମାରି ଯାଏ । ଅଥଚ, ଅପର୍ଣ୍ଣାଙ୍କ ଉପରେ ଏହାର ପ୍ରଭାବ କିଛି ପଡ଼େନା । ସେ ସ୍ୱଭାବ ସୁଲଭ ଧୀର ଉତ୍ତରଟିଏ ଦିଅନ୍ତି – 'ହ'ମ, ପିଲା ଖେଳିଲେ ତ ଏମିତି ହୁଏ । ଗଛ–ପତ୍ର କ'ଣ କଥା କହିବ । ଛୋଟ ପିଲା ନ ଜାଣି ଯଦି ଛିଣ୍ଡେଇ ଦେଲା ଦି'ଟା ପତ୍ର, କ'ଣ ଏମିତି ହେଲା ଯେ, ରାଗୁଛ !'

ସୁରଞ୍ଜନଙ୍କ ପାଖରେ ପାଲଟା ଉତ୍ତର ଥାଏ । 'ଗଛପତ୍ରର ବି ଜୀବନ ଅଛି । ସେମାନେ ମଧ୍ୟ କଥାକୁହନ୍ତି । ହୃଦୟଟିଏ ଦରକାର ସେ କଥା ବୁଝିବାପାଇଁ ।' ରାଗ, ରୋଷ, ବିରକ୍ତି ଏକାଠି ହୋଇ ତଣ୍ଟି ରୁନ୍ଧି ହୋଇଯାଏ । ସେ ଉତ୍ତର ଦେଇପାରନ୍ତି ନାହିଁ । ଢ଼ୋକି ଦିଅନ୍ତି । କାରୁଣ୍ୟର ହସ ଚେନାଏ ଉକୁଟି ଆସେ ତାଙ୍କ ଓଠରେ । ସେ ଜାଣନ୍ତି, ମିଟୁ କେବଳ ଗୋଟିଏ ପକ୍ଷୀ ନଥିଲା । ଅପର୍ଣ୍ଣାଙ୍କର ସ୍ନେହ, ଆଶିଷ, ସୁରକ୍ଷା–ସବୁତ ଆବୋରି ରହିଥିଲା ତାକୁ ।

ତିନି ବର୍ଷ ତଳେ ଶୁଆ ଏଠି ନଥିଲା । ଜନ୍ମ ବି ହୋଇ ନଥିଲା କହିଲେ ଚଳେ । ଅପର୍ଣ୍ଣାଙ୍କର ଦୂର ସମ୍ପର୍କୀୟା ଜଣେ ମାଉସୀ, ଯିଏ ସହରର ଅନ୍ୟ ପ୍ରାନ୍ତରେ ସପରିବାର ଦୀର୍ଘଦିନ ହେଲା ରହି ଆସୁଛନ୍ତି, ସେ ହିଁ କହିଲେ ଏବଂ ଯୋଗାଡ଼ କରିଦେଲେ । ମାଉସୀ ମଝିରେ ମଝିରେ ଆସନ୍ତି, ଝିଅାରୀର ଭଲ ମନ୍ଦ ବୁଝନ୍ତି, ଘରକରଣା ଦେଖନ୍ତି, ସଂକଟମୋଚନପାଇଁ ଅଭିଜ୍ଞତାରୁ ଇଲମ୍ ବି ଦିଅନ୍ତି । ତାଙ୍କର କଥା ଯେମିତି, ଜ୍ଞାନ ବି ସେମିତି । ରାଧାମାଧବଙ୍କ ନାଁ ତୁଣ୍ଡରେ ସବୁବେଳେ । ଦେଶୀ ଚିକିତ୍ସାରେ ତ ସେ ଆଜିକାଲିକା ଡାକ୍ତରଙ୍କୁ ପାଣି ପେଇବେ । ଝାଡ଼ା, ବାନ୍ତି, ଅଧକପାଳି ଏସବୁ ତ ଅତି ମାମୁଲି କଥା । ବାରମ୍ବାର କନ୍ୟା ପ୍ରସବ କରୁଥିବା ନାରୀ, ଗର୍ଭ ସଂଚାରର ତିନିମାସ ପରେ କେଉଁ ଉପଚାର କଲେ, ନିଶ୍ଚିତ ପୁତ୍ର ସନ୍ତାନର ଜନନୀ ହୋଇପାରିବ, ସେ ଇଲମ କେବଳ ମାଉସୀଙ୍କୁ ହିଁ ଜଣା । ଏବଂ, ଖାସ ତାଙ୍କରି ପଥ୍ୟ ସେବନକରି ତାଙ୍କ ଘର ପାଖର ଅଳ୍ପ କେତେଜଣ ଦିମାକିଆଣୀଙ୍କୁ ଛାଡ଼ିଦେଲେ, ପ୍ରାୟ ସମସ୍ତେ ପୁତ୍ରବତୀ ।

ଅପୁ ତ ନିଜ ଝିଅ ଜାଣ । ତା'ର ଦୁଃଖ, ମନ ଭିତର ବ୍ୟଥାକୁ ମାଉସୀ ଅନୁଭବ କରନ୍ତି । କିନ୍ତୁ ବିଶେଷ କିଛି ନିଦାନ ବତେଇପାରନ୍ତି ନାହିଁ । ତାଙ୍କର ସୂତ୍ର ତିନିମାସ ପରେ କାଟୁ କରେ । କିଛି କରି ନପାରୁଥିବାର ଦୁଃଖରେ ମାଉସୀ ଅନେକ ଥର କାନ୍ଦିଛନ୍ତି ବୋଲି ଝିଅାରୀ ପାଖରେ ଏକାନ୍ତରେ କୁହନ୍ତି । ତାଙ୍କର ଆପଣାପର ଭେଦ ନାହିଁ । ନିଜର ଘରକଥା ବି ବଖାଣିପକାନ୍ତି ଅପୁ ପାଖରେ । ବଡ଼ବୋହୂ ଟି ହୀରାଖଣ୍ଡେ । ରୂପକମ୍ ଟିକିଏ । ରୂପରୁ କ'ଣ ମିଳିବ ? ଗୁଣ ଥିଲେ ସିନା ପାଞ୍ଚଲୋକ କହିବେ । ମଝିଆଣୀର ଭାରି ଗଉଁ । କ'ଣ ଦି'ଟା ଜିନିଷପଟା ତା ବୋପା ଦେଇଛି

ଯେ ସେଇଥିପାଇଁ ତା'ର ଗର୍ବ କାହିଁରେ କେତେ । ସାନପୁଅଟି ପାଇଁ ମନଲାଖି ଝିଅଟିଏ ଆଖି ଆଗରେ ଥିଲା । କିନ୍ତୁ ତା କପାଳରେ ନାହିଁ । କୋଉଠୁ ଗୋଟାଏ ତଳଜାତିର ଝିଅକୁ ସେ କୁଆଡ଼େ କଥାଦେଇଛି । ମୁଁ ଶୁଣେଇ ଦେଇଛି, ତୋ କଥା ତୁ ବୁଝ । ସେ ଝିଅ ଏ ଘର ଦୁଆର ବନ୍ଧ ଡେଇଁପାରିବନି, ମୁଁ ବଂଚିଥିବା ପର୍ଯ୍ୟନ୍ତ । ବାପା ଯିବା ପରେ ଦୁଃଖ କଷ୍ଟରେ ତୁମକୁ ବଢ଼େଇଥିଲି କ'ଣ ଏଇଆ ଦେଖିବାକୁ ।

ଶାସ୍ତ୍ରପୁରାଣରେ ମାଉସୀଙ୍କର ବି ଦଖଲ ଅଛି । ଝିଆରୀକୁ ମନ ଦୃଢ଼ କରିବାକୁ, ରାଧାମାଧବଙ୍କୁ ଡାକିବାକୁ ଉପଦେଶ ଦିଅନ୍ତି । ଏମିତି ଉପଦେଶ ଦେଉ ଦେଉ ମାଉସୀ ବାଟଟିଏ କାଢ଼ିଲେ ସେହି ଶାସ୍ତ୍ର ପୁରାଣରୁ । 'ଯଦି ଅନ୍ୟ କାହାରି ସନ୍ତାନକୁ ପୋଷ୍ୟପୁତ୍ର ଭାବେ ଗ୍ରହଣ କରାଯାଏ, ତେବେ ପାଳିତ ପିତା-ମାତାଙ୍କର ଦୁଇ ବର୍ଷ ମଧ୍ୟରେ ପୁତ୍ର ସନ୍ତାନ ଅବଶ୍ୟ ଲାଭ ହେବ' ମାଉସୀଙ୍କର ଉପଦେଶ ବେଶ୍ କିଛି ସମୟ ଝିଆରୀକୁ ଚିନ୍ତାଗ୍ରସ୍ତ କଲା । ବନ୍ଧୁ-ବାନ୍ଧବ, ଭାଇ-ଭଉଣୀମାନଙ୍କର ପିଲାମାନଙ୍କ ଉପରେ ଚାରି ପରସ୍ତ ସେ ଆଖି ବୁଲାଇ ଆଣିଲେ । ଏବଂ, ଦୀର୍ଘଶ୍ୱାସ ନେଲେ । ଅଣୁ ପରିବାରରେ ବିଶ୍ୱାସୀ ଆଜିକାଲିର ପିତା-ମାତାମାନଙ୍କ ଉପରେ ରାଗ ମଧ୍ୟ ହେଲା । ଯାହାର ଅଧିକ ପିଲା, ସେଠି ଝିଅ ଅଧିକ । ଏଣୁ, ସଙ୍କଟରୁ ଯାଇ ମହାସଙ୍କଟରେ ପଡ଼ିଲେ ଅପର୍ଣ୍ଣା । କିଛି ଉପାୟ ନପାଇ ନିରୀହ ଛେଳିଛୁଆଟି ଭଳି ଚାହିଁଲେ ମାଉସୀଙ୍କୁ । ମାଉସୀ ଜ୍ଞାନୀ, ବିଦୁଷୀ । ପଢ଼ିନେଲେ ଅନ୍ତରର କଥା । ଝିଆରୀ ମୁଣ୍ଡ ଆଉଁସୀ ପ୍ରବୋଧନ ଦେଲେ - ଆଜିକାଲି ପୋଷାପୁଅ କାହାରି ଦୁଃଖ ବୁଝିଲେଣି? ଆଲୋ, ପୋଷାପୁଅ ଗୁଞ୍ଜାରୁଅ, କୁଆଡ଼କୁ ନୁହଁ । ଯେତେହେଲେ ରକ୍ତ ଟାଣିବ ନା ନାହିଁ? ତୁ ଖୋଇ ପେଇ ବଡ଼ କରିବୁ, ସେ କୁକୁର ଭଳିଆ ଲାଞ୍ଜ ହଲେଇ ଛୁ । ତୁ ସିଆଡ଼ିକି. ମନ ଦେନା । ଶାସ୍ତ୍ରରେ ଆହୁରି ବାଟ ବି ଅଛି । ଏହା କହି ମାଉସୀ, 'ଚା ଟିକେ କଲୁ ମା' ବରାଦଦେଲେ ଏବଂ ବଡ଼ବୋହୂର ଗୁଣ ବଖାଣିଲେ । ଗତ ହପ୍ତାରେ ମଝିଆ ପୁଅ ଗୋଟାଏ ବାକ୍ସ ଭଳିଆ ଯନ୍ତ୍ର ଆଣିଛି ଯେ, ସେଥିରେ ପୋଡ଼ପିଠା ବି ହୋଇପାରୁଛି । ମଝିଆଣୀ ଟିଭିଟାଏ ଆଣିଥିଲା । ସେଇଟା କ'ଣ ଖରାପ ହୋଇଗଲା । ମୁଁ କହିଦେଇଛି, ପଇସା ଦେଇ ଆଣିଥିଲ ନା ମାଗଣା ମଃ ?

ମାଉସୀ ଘରକଥା ଆରମ୍ଭ କଲେ, ସ୍ୱଳ୍ପ ସମୟରେ ସରେ ନାହିଁ । ପ୍ରଗଲ୍‌ଭ ହୋଇ ସେ ଘଣ୍ଟାଧିକ ଗପିପାରନ୍ତି । ଅପର୍ଣ୍ଣା, ଆତୁର ହୋଇ ଚାହିଁଥାନ୍ତି, ଶେଷ ଉପାୟଟି ହସ୍ତଗତ କରିବାପାଇଁ । କିନ୍ତୁ ମାଉସୀଙ୍କର ଘରକଥା ଛିଡୁନାହିଁ ।

ମଧ୍ୟାହ୍ନ ଭୋଜନ ପରେ, ମାଉସୀ କୁହୁକ ପେଡ଼ି ଖୋଲିଲେ - ବୁଝିଲୁ ଅପୁ, ଶାସ୍ତ୍ର କହିଛି, ମଣିଷ ଦେହରେ ଯୋଉ ଆତ୍ମା ପଶୁପକ୍ଷୀଙ୍କ ଦେହରେ ବି ସେଇଆତ୍ମା ।

ତେଣୁ ପୁଅ ବଦଳରେ ଶୁଆଟିଏ ପାଳିଲେ ସେତିକି ପୁଣ୍ୟ ମିଳିବ । ତୁ ମୋ କଥା ମାନ । ଶୁଆଟିଏ ଆଣି ବର୍ଷେ ପାଳିଲୁ । ଦେଖିବୁ, ପରେ କହିବୁ ମାଉସୀ ସତ କହୁଥିଲା କି ମିଛ ?

ଅପର୍ଣ୍ଣାଙ୍କୁ ଅନ୍ଧାରରେ ଧାରେ ଆଲୁଅ ଦିଶିଗଲା ଯେମିତି ଚାରିଦିନ ପରେ ସୁରଞ୍ଜନ ଅଫିସ୍‌ରୁ ଫେରି ଦେଖନ୍ତି ତ ବୈଠକ ଘରେ ପଡ଼ିଛି ଖବରକାଗଜ । ତା ଉପରେ ମଧ୍ୟମ ଧରଣର ଏକ ପଞ୍ଜୁରି ଏବଂ ତନ୍ମଧ୍ୟେ ଶୁକପକ୍ଷୀ । ମଞ୍ଜିବିହୀନ ଅଙ୍ଗୁର ପେଣ୍ଡାଟିଏ ହାତରେ ଧରି ବଳେଇ ବଳେଇ ତାକୁ ଖୁଆଉଛନ୍ତି ଅପର୍ଣ୍ଣା – ନେ ନେ ଆଉ ଗୋଟେ ନେ, ଅଚିହ୍ନା ବାରୁଛୁ କି ? ଭୟ କରୁଛି କି ? ନାଇଁ ନାଇଁ, ଡରନାଇଁ । ସୁନାଟା, ଧନଟା, ଏଇ ଟି ଟି ଟି, ମିଟୁ । ଏ ମିଟୁ, ଡାକିଲୁ ମାମା । ଡାକ୍ ଡାକ୍ ବାବା, ଡାକ୍ ।

ସୁରଞ୍ଜନ ଭାବିଲେ– ବୋଧହୁଏ ପଡ଼ିଶାଘରର କୌଣସି ପିଲା ତାଙ୍କ ପଞ୍ଜୁରିଟି ନେବାକୁ ଭୁଲିଯାଇଛି । କିନ୍ତୁ, ପତ୍ନୀଙ୍କର ଏମିତି ସ୍ନେହାସିକ୍ତ ଭାଷା ଶୁଣି ସେ ନିଜର ଭାବନାରେ ପରିବର୍ତ୍ତନ ଆଣିଲେ ଏବଂ ଆତଙ୍କିତ ହେଲେ । ଶୁଆ ଯୋଜନା ବିଷୟରେ ସେ ସମ୍ପୂର୍ଣ୍ଣ ଅଜ୍ଞ । ଗଛପତ୍ର, ବଗିଚା, ଫୁଲରେ ବିଶେଷ ରୁଚି ରଖୁ ନଥିବା ପତ୍ନୀ ହଠାତ୍ ଶୁଆ ପାଳନପାଇଁ କିପରି ଏବଂ କାହିଁକି ମନବଳାଇଲେ, ରହସ୍ୟ ଉନ୍ମୋଚନପାଇଁ ତାଙ୍କୁ ଲାଗିଲା ପନ୍ଦରଦିନ ଏବଂ ସେ ମଧ୍ୟ ମିଟୁକୁ ସହ୍ୟ କରିଗଲେ ।

ମିଟୁ ଆଗମନରେ, ଅପର୍ଣ୍ଣାଙ୍କର ଜୀବନଚର୍ଯ୍ୟା, କଥାବାର୍ତ୍ତା ସବୁଥିରେ ଆସିଲା ବ୍ୟାପକ ପରିବର୍ତ୍ତନ । ପିଲାଟିର ଯତ୍ନ ନେବାପରି ସେ ମିଟୁର ଖାଇବା, ପିଇବା, ପଞ୍ଜୁରି ସଫା କରିବା ସହିତ ପ୍ରତିଦିନ ସକାଳୁ ତାକୁ ପାଠ ପଢ଼ାଇଲେ ଘଣ୍ଟାଏ । ରାମ ରାମ ରାମ ରାମ, କୁଣିଆ ଆସିଲେ ବାବାମାମା, ଭୋକ ହେଲାଣି । ଚକ୍ରଧର – ପକ୍ଷୀ ଜନ୍ମରୁ ପାରିକର । ଏସବୁକୁ ମାଳା ଜପିଲା ଭଳି ଅପର୍ଣ୍ଣା ମିଟୁ ପାଖରେ ପ୍ରତିଦିନ କହିଲେ । ଏବେ ଗୁଣୁଗୁଣୁ ହୋଇ ସେ ଗୀତ ବି ଗାଇଲେ, ମଜା ମଜା କଥା କହି ମିଟୁକୁ ହସେଇବାକୁ ଚେଷ୍ଟା କଲେ, ନିଜେ ହସିଲେ । ତାଙ୍କର ମନ ଭିତରୁ ସବୁତକ ହତାଶା, ଅନୁଶୋଚନା ଆପଣାଛାଏ ଉଡ଼ିଗଲା । ସୁରଞ୍ଜନ ସନ୍ଦେହରେ ପଡ଼ିଲେ ଏସବୁ ଦେଖି । ମୁଣ୍ଡ ଫୁଣ୍ଡ ଖରାପ ହୋଇଯାଇନି ତ ଆଉ !

ବର୍ଷେ ବିତିଗଲା । ମାଉସୀଙ୍କ ହିସାବ ଅନୁସାରେ, ଏବେ ଅପର୍ଣ୍ଣାଙ୍କ ଦେହରେ ଶୁଭ ସୂଚନା ଦିଶିବା କଥା । କିନ୍ତୁ ସେମିତି କିଛି ସଂକେତ ନ ଦିଶିବାରୁ ମାଉସୀଙ୍କୁ ଡକାଇଲେ ବିକଳ ହୋଇ, ସୁରଞ୍ଜନ ଅଫିସ୍ ଯିବାପରେ । କାରଣ ତାଙ୍କ ସାମ୍ନାରେ ଏସବୁ କଥା ଆଲୋଚନା କରିହେବନି । ଅପର୍ଣ୍ଣା ଅନୁଭବ କଲେଣି, ମିଟୁ ପ୍ରତି

ସ୍ୱାମୀଙ୍କର ମନୋଭାବରେ ଯଥେଷ୍ଟ ପରିବର୍ତ୍ତନ ଘଟିଲାଣି । ସେ ଏବେ ଚିଡ୍ ଚିଡ୍, ବିଡ୍ ବିଡ୍ ହେଲେଣି । ସତେ ଅବା ମିଟୁ ତାଙ୍କର ଶତ୍ରୁ ! କେତେ କୁଆଡ଼େ ଖର୍ଚ୍ଚ ଯାଉଛି, ଅଧକେଜି ଅଙ୍ଗୁର ଆଣିବାକୁ କହିଲେ, କହିବେ - ତାକୁ ଭାତ ଦଉନ । ରାମବାବୁଙ୍କ ଶୁଆ ପଖାଳ ଖାଉଛି ପରା, ଯା'କୁ ସେଓ, ଅଙ୍ଗୁର କ'ଣ ଦଉଛ? କଥା ଛଳରେ ସେ ବି କହିଲେଣି ଥରେ ଦୁଇଥର - କାହିଁକି ଆକାଶର ମୁକ୍ତପକ୍ଷୀକୁ ବାନ୍ଧି ରଖିଛ, ଛାଡ଼ି ଦଉନ । ଧର୍ମ ହଉଛି ନା ପାପ ହେଉଛି? ଆଉ ଦିନେ ତ କଥା କାହିଁ କେତେ ଦୂର ଚାଲିଯାଇଥାନ୍ତା । ଅପର୍ଣ୍ଣା ଚୁପ୍ ରହିଲେ ବୋଲି କିଛି ହେଲାନି । ଗାଁରୁ ଖବର ଆସିଥିଲା - ମା'ଦେହ ଖରାପ, ପୁଅ - ବୋହୂଙ୍କୁ ଦେଖିବାକୁ ଚାହୁଁଛି । କିନ୍ତୁ ସମସ୍ୟା ହେଲା, ମିଟୁକୁ ଛାଡ଼ି ଯିବେ କେମିତି? ପଡ଼ିଶା ଘର ଦୁଷ୍ଟ ପିଲା, ଭୁଆଁ ବିରାଡ଼ି ଏସବୁ ବିପଦଙ୍କ ହାତରେ ମିଟୁକୁ ଛାଡ଼ି ଯାଇହବ ? ସୁରଞ୍ଜନ କହିଲେ - ତାକୁ ଉଡ଼େଇ ଦିଅ । କିନ୍ତୁ ଅପର୍ଣ୍ଣା ଅଡ଼ି ବସିଲେ, ମୁଁ ରହୁଛି ତୁମେ ଯାଅ । ସେଇଆ ହେଲା । ସୁରଞ୍ଜନ ଏକା ଗାଁକୁ ଗଲେ ଏବଂ ବହୁ ଲଜ୍ୟାଜନକ, ଅପ୍ରୀତିକର ପ୍ରଶ୍ନର ସମ୍ମୁଖୀନ ହେଲେ । ମିଛ କହି କେତେ ଢ଼ାଙ୍କିବେ ସତକୁ? କି ଦେହ ଖରାପ ହେଇଛି କି ଏମିତି ? ଆଉ କ'ଣ କାହାର ଦେହ ଖରାପ ହଉନି, ନା ବିଦେଶରେ ରହୁ ନାହାଁନ୍ତି ? କିଛି ହେଲାନି ସିନା, ବୁଢ଼ିଟା କେତେ ଖୋଜୁଥିଲା ବୋହୂକୁ? କେତେ ଭଉ ପାଉଥିଲା । ବୋହୂଟା ଶେଷରେ ଏଇଆ କଲା । ମୁହଁ ବି ଚାହିଁଲାନି । ହଉ ହେଲା, ତାଙ୍କ ଘରକଥା ସେ ବୁଝିବେ, ଆମର କ'ଣ ଯାଉଛି ।

ସୁରଞ୍ଜନଙ୍କର ଦେହରେ କଣ୍ଟା ଫୋଡ଼ିଲା ପରି କଥାଗୁଡ଼ାକ ଗଳିଯାଉଥିଲା । ବଜ୍ର ଶପଥ ନେଲେ ସେଇଠି, ଏଠୁ ଗଲେ ପ୍ରଥମେ ଖୋଲିବେ ପଞ୍ଜୁରି ଦ୍ୱାର । ବହୁତ ହେଲା, ଆଉ ନୁହେଁ ।

ମାଉସୀ ଶୁଆର ଅଣ୍ଟ ଓ ଲାଞ୍ଜ ବାରମ୍ବାର ନିରୀକ୍ଷଣ କଲେ ଏବଂ ରିପୋର୍ଟ ଦେଲେ - ମିଟୁର କିଛି ତ୍ରୁଟି ନାହିଁ । ସେ କଥା ନ କହିବା ପଛରେ ଆଉ କିଛି ମନ୍ଦ ଗ୍ରହ କାର୍ଯ୍ୟ କରୁଛି । ତେବେ ଆଉ ଗୋଟାଏ କାମ କର୍ । କିଛି ଛୋଟ ପିଲାଙ୍କୁ ଆଣି ଶୁଆ ପାଖରେ ଖେଳା । ଅବୋଧ ଶିଶୁ ତ ଭଗବାନଙ୍କ ଅବତାର, ଶୁଆ ବି ଭଗବାନଙ୍କ ଅବତାର । ଉଭୟଙ୍କର ଭେଟ ହେଲେ ସେ କଥା କହିବ ଏବଂ ମିଟୁ କଥାକହିବା ପରେ ହିଁ ନିଶ୍ଚିତ ଶୁଭ ସୂଚନା ମିଳିବ ।

ଅପର୍ଣ୍ଣା ଦେଖିଲେ, ଏ କଥାଟି ଏତେ ସହଜ ସାଧ୍ୟ ନୁହେଁ । ଶୁଆଟିଏ ରଖିବାରୁ ପତିଙ୍କର ଯେମିତି ମନୋଭାବ, ସାହି ପଡ଼ିଶାର ପିଲାଙ୍କୁ ଆଣି ଖେଳାଇଲେ, ସେ ଆଉ ରଖିବେନି ସଂସାର । ତଥାପି ତ କିଛି କରିବାକୁ ପଡ଼ିବ । ମାଉସୀଙ୍କ କଥା

ମାନିବାକୁ ପଡ଼ିବ । ଅତଃ, ବହୁ ଚିନ୍ତା କରି, ମନ ଦୁଃଖରେ ତକିଆରେ ମୁହଁ ମାଡ଼ି ଶୋଇରହିଲେ । ସନ୍ଧ୍ୟା ବେଳକୁ ପତି ଆସି ଦେଖନ୍ତି ତ, ପତ୍ନୀଙ୍କର ବିଷାଦଯୋଗ । ମନରେ ସରାଗ ନାହିଁ, ହସ ନାହିଁ । ଟା କପେ ମିଳିବା ତ ଦୂରର କଥା । ଯାହା ପଚାରିଲେ ଉତ୍ତର ମିଳୁଛି, ନାଇଁ ସେ କିଛି ନୁହେଁ, ମଝିରେ ମଝିରେ ସୁଁ ସୁଁ ବି ଆରମ୍ଭ ହୋଇଗଲା ।

ସୁରଞ୍ଜନ ଛଟପଟ ହେଲେ । ତାଙ୍କର ବୁଦ୍ଧି ବିଦ୍ୟା କିଛି କାମ କଲାନାହିଁ । ସେ ବୁଝିପାରିଲେ ନାହିଁ, ପ୍ରକୃତରେ ଅସୁବିଧାଟି କୋଉଠି ରହିଗଲା । ସକାଳୁ ଅଫିସ ଯିବା ପର୍ଯ୍ୟନ୍ତ ଏବଂ ଗତକାଲି ମଧ୍ୟ ପତ୍ନୀଙ୍କ ସହ ହୋଇଥିବା ସବୁ ପ୍ରକାର କଥାକୁ ସେ ମନେପକାଇ ବିଶ୍ଳେଷଣ କଲେ । କାହିଁ, ତାଙ୍କ ତୁଣ୍ଡରୁ କିଛି କଥା ଖସିଗଲା କି? କିଛି ଫରମାଇସ୍ ଚିଜ ସେ ଆଣିନାହାନ୍ତି କି ? ତାଙ୍କର ସ୍ମୃତି ଶକ୍ତି ଯାହା କାମକଲା, ପ୍ରାୟ ଏକମାସ ଅତୀତରେ ବି ଏମିତି ଘଟଣା କିଛି ଘଟିନାହିଁ । ସେ କିଛି ବୁଝିପାରିଲେ ନାହିଁ । ସ୍ତ୍ରୀଙ୍କୁ ବୁଝିବା କ'ଣ ଏତେ ସହଜ କଥା କି ?

କିନ୍ତୁ ଅପର୍ଣ୍ଣା ଭଲଭାବେ ଜାଣିଥିଲେ, କେଉଁ ସମୟରେ, କି ପ୍ରକାର, କେଉଁ ମୁଦ୍ରାରେ ସ୍ୱାମୀଙ୍କୁ ଦାବୀ କଲେ, ସେ ତଥାସ୍ତୁ କହନ୍ତି । ତେଣିକି ତାହା ତାଙ୍କ ସାଧ ଭିତରେ ଥାଉ କି ନଥାଉ । ଅପର୍ଣ୍ଣା ଅପେକ୍ଷା କଲେ ସେହି ମୁହୂର୍ତ୍ତକୁ – ରାତ୍ରିର ଅନ୍ଧାକାରକୁ, ନିସ୍ତବ୍ଧତାକୁ ଏବଂ ପୁରୁଷର ଦୁର୍ବଳ ମୁହୂର୍ତ୍ତକୁ ।

ଏବଂ, ସେ ସଫଳ ବି ହେଲେ । ତା ପରଦିନ ଠୁଁ, ସୁରଞ୍ଜନ ଆଖି ବୁଜିଦେଲେ ଅନେକ କଥାକୁ । ଦେହସୁଆ କରିଦେଲେ ଅନେକ ଯନ୍ତ୍ରଣାକୁ । ସେ ଜାଣୁଥିଲେ, ତାଙ୍କ ଅନୁପସ୍ଥିତିରେ ତାଙ୍କର ପ୍ରିୟ ବଗିଚାଟି ପାଲଟେ ଗୋଟେ ଖେଳପଡ଼ିଆ । କ୍ଷତବିକ୍ଷତ ହୁଅନ୍ତି ନିରୀହ ଗଛ, ଫୁଲକୁଣ୍ଡ ଏବଂ ଶାଗପଟାଳି । ହଁ, ଗୋଟେ ଅଜବ ଘଟଣା ଘଟିଲା ଦିନେ । ଖେଳୁଖେଳୁ ପଞ୍ଜୁରିର ଦ୍ୱାର ଖୋଲିଦେଲା ପିଲାଟିଏ । ବାହାରି ଆସିଲା ମିଟୁ । ଖଣ୍ଡି ଉଡ଼ାଦେଲା ବୈଠକଖାନାରେ । ହାଉଳି ଖାଇଲେ ସମସ୍ତେ । ଗଲା, ଏଥର ନିଶ୍ଚୟ ଖସିଯିବ । ଅପର୍ଣ୍ଣା ଭିତରେ ଥିଲେ, ପାଟି ଶୁଣି ଦୌଡ଼ିଆସିଲେ । ସମସ୍ତଙ୍କୁ ଚକିତ, ହତବାକ୍ କରି ମିଟୁ ଦୁଇ ଘେରା ବୁଲିଲା ସମସ୍ତଙ୍କ ମୁଣ୍ଡ ଉପରେ ଏବଂ ଲଥକରି ବସିଗଲା ଅପର୍ଣ୍ଣାଙ୍କ କାନ୍ଧରେ । ଆଉ ଉଡ଼ିଲାନି । କି ଗଲା ନାହିଁ । ସେହି ଦିନଠୁଁ, ମିଟୁ ରାତିରେ ପଞ୍ଜୁରି ଭିତରେ ଏବଂ ଦିନରେ ପଞ୍ଜୁରି ବାହାରେ । ପିଲାମାନଙ୍କ ସହ ଛ'ମାସ, ବର୍ଷେ ଖେଳିଲା ମିଟୁ । କିନ୍ତୁ ଅପର୍ଣ୍ଣାଙ୍କର ମନସ୍କାମନା ପୂରଣ ହେଲା ନାହିଁ । ସେ ଟିଉ ଟିଉ ଶବ୍ଦ ଛଡ଼ା ଆଉ କିଛି ଉଚ୍ଚାରଣ କରିପାରିଲା ନାହିଁ । ମାଉସୀଙ୍କ ଭବିଷ୍ୟବାଣୀରେ ଅପର୍ଣ୍ଣାଙ୍କର ଅତୁଟ ବିଶ୍ୱାସ । ମିଟୁ ନିଶ୍ଚୟ କଥା

କହିବ ଏବଂ ସେ ଦିନେ ନା ଦିନେ ଶୁଭ ଖରବଟି ଶୁଣେଇ ଚମକେଇ ଦେବେ ସୁରଞ୍ଜନଙ୍କୁ । କିନ୍ତୁ ହାଏ ।

ନରମ ଶୀତୁଆ ସକାଳ ସେ ଦିନ ଆଣିଥିଲା ଭିନ୍ନ ଏକ ଖବର । ସୁରଞ୍ଜନ ଅଫିସ୍ ଗଲେ । ପିଲାମାନେ ରୁଣ୍ଡ ହୋଇ ମିଟୁ ସହ ଖେଳ ଆରମ୍ଭକଲେ । ମିଟୁ ପଞ୍ଜୁରିରୁ ବାହାରି ବାରଣ୍ଡା, ଝର୍କା ରେଲିଂ, ଏବଂ ଶେଷରେ ବସିଲା ପିଜୁଳି ଗଛରେ । ସେ ବସେ, ପିଲାମାନେ ଡାକିଲେ ଲେଉଟି ଆସେ । ସେଦିନ ହଠାତ୍ କ'ଣ ହେଲା କେଜାଣି ମିଟୁ ଉପରକୁ ଚାହିଁଲା । ସୁନେଲି ରଙ୍ଗର ଖରା ବିଛେଇ ହୋଇପଡ଼ିଛି ସାରା ଆକାଶରେ । ଏହି ସମୟରେ ଦଶ ବାରଟି ଶୁଆ ମିଟୁ ଉପର ଦେଇ ଉଡ଼ିଯାଉ ଯାଉ ଅଟକି ଗଲେ ଏବଂ ଓହ୍ଲାଇ ଆସି ବସିଲେ ପିଜୁଳି ଗଛ, ଛାତ ଏବଂ ସଜନା ଗଛରେ । ଟିଉଁ ଟିଉଁ କଥାବାର୍ତ୍ତା ହେଲେ ତାଙ୍କ ତାଙ୍କ ଭିତରେ । ସମସ୍ୱରରେ ଖୁବ୍ ଜୋର୍‌ରେ ଆୱାଜ୍ କଲେ ଏବଂ ଉଡ଼ିଗଲେ ଏକତ୍ର । ମିଟୁ ଦେଖୁଥିଲା, ଶୁଣୁଥିଲା, ବୋଧହୁଏ ବୁଝୁଥିଲା ବି ସେମାନଙ୍କର କଥା । କ'ଣ ଭାବିଲା ତା'ପରେ, ହଠାତ୍ ଲମ୍ଫ ଦେଲା ନୀଳ ଆକାଶକୁ । ଆଉ ଫେରିଲାନି ।

ଏହା ଭିତରେ ଛ'ମାସ ବିତିଗଲାଣି । ଅପର୍ଣ୍ଣା ପ୍ରାୟତଃ ମୂକ ପାଲଟି ଯାଇଛନ୍ତି । ତାଙ୍କର ପ୍ରଗଲ୍‌ଭତା, ଚଞ୍ଚଳତା, ହସ, ଖୁସି ଯେମିତି ଉଡ଼ିଯାଇଛି ମିଟୁ ସାଙ୍ଗରେ ଏବଂ ତା ସହିତ ଭାଙ୍ଗିଯାଇଛି ସୁନେଲି ସ୍ୱପ୍ନ । ମିଛ ହୋଇଯାଇଛି ମା'ହେବାର ସମସ୍ତ ସମ୍ଭାବନା । ତେଣୁ, ଏବେ ପୁଣିଥରେ ସ୍ୱାମୀଙ୍କୁ ଆକୁଳ ନିବେଦନ – ଯେମିତି ହଉ, ଶୁଆଟିଏ ଆଣିଦିଅ ।

ସୁରଞ୍ଜନ ଏହି ଛ'ମାସ ହେଲା, ନିରୋଳା ମିଛ ହିଁ କହିଛନ୍ତି । ଶୁଆ ଖୋଜିବା ତ ଦୂରର କଥା, ସେ କଥା ଚିନ୍ତା ବି କରିନାହାନ୍ତି ଏବଂ ରାଣ ନିୟମ ପକେଇ ମାଉସୀଙ୍କୁ କହିଛନ୍ତି – ଶୁଆ କଥା ଆଉ ଉଠାନା ।

ଆଜି କାହିଁକି କେଜାଣି ମନ ହେଲା, ଏ ମିଛ ଖେଳର ଅନ୍ତଃ ହେବା ଦରକାର । ସେ ଜାଣନ୍ତି, ତାଙ୍କର ସତକଥା ଶୁଣିବା ପରେ ଅପର୍ଣ୍ଣା ତାଙ୍କୁ ଘୃଣା କରିପାରନ୍ତି । ମନ କଷ୍ଟ କରିପାରନ୍ତି । ଭାଙ୍ଗି ଯାଇପାରନ୍ତି । ତଥାପି ସତ ତାଙ୍କୁ କହିବାକୁ ପଡ଼ିବ – ଶୁଆ ଖୋଜିନାହାନ୍ତି କିବା ଶୁଆ ରଖିବା ପକ୍ଷରେ ସେ ନାହାନ୍ତି ।

ବିଚଳିତ ମନ, ଇତଃସ୍ତତଃ ଆଖି, ଭାରାକ୍ରାନ୍ତ ହୃଦୟରେ ସୁରଞ୍ଜନ ସ୍କୁଟର ଷ୍ଟାଣ୍ଡ ମାରିଲେ ଘର ସାମ୍ନାରେ । ମୁହଁ ଟେକି ନ ଚାହିଁଲେ ବି ସେ ଅନୁମାନ କରୁଥିଲେ, ଅନୁଭବ କରୁଥିଲେ, ଚଉକାଠ ପାଖରେ ଠିଆ ହୋଇଥିବେ ଅପର୍ଣ୍ଣା । ଆଖି ତାଙ୍କର ଖୋଜୁଥିବ ସ୍ୱାମୀଙ୍କ ହାତରେ ପଞ୍ଜୁରି । ପଞ୍ଜୁରି ପାଇବା ପରେ ଲିଭିଯାଇଥିବା ହସ

ପୁଣି ଫେରିଆସିବ, ଅବସାଦ ଭାଙ୍ଗିଯିବ, ଉଦାସପଣ ନିରୁଦ୍ଦିଷ୍ଟ ହୋଇଯିବ ସବୁ ଦିନପାଇଁ । ସେ ପୁଣି ହସିବେ, କଥା କହିବେ ।

ସୁରଞ୍ଜନ ମୁହଁ ଟେକି ଚାହୁଁନାହାନ୍ତି । ସ୍କୁଟରରେ କ'ଣ ଗୋଟାଏ ଅସୁବିଧାର ବାହାନା କରି ତାକୁ ଖୁଟ୍‌ଖାଟ୍ କରୁଛନ୍ତି ଏବଂ ଭାବୁଛନ୍ତି, କଥା କୋଉଠୁ ଆରମ୍ଭ କରିବେ । ସ୍ୱୀକାରୋକ୍ତି ଦେବାପାଇଁ ଶକ୍ତି ସଂଚୟ କରୁଛନ୍ତି ସେ ।

'କ'ଣ ସେତେବେଳୁ ଖଟ୍‌ଖାଟ୍ କରୁଛ ମ ! କେତେବେଳୁ ମୁଁ ଠିଆହେଲଣି ଜାଣିପାରୁନା !' ହସି ହସି ଚଉକାଠରୁ ଓହ୍ଲାଇ ଆସିଲେ ଅପର୍ଣ୍ଣା । ସୁରଞ୍ଜନ ନିଜ କାନକୁ ବିଶ୍ୱାସ କରିପାରୁନଥାନ୍ତି । ଅପର୍ଣ୍ଣା କଥା କହୁଛି! ପୁଣି ହସି ହସି । ଯଦିଚ ସେ ଦେଖୁଛି, ତାଙ୍କ ହାତରେ ପଞ୍ଜୁରି ନାହିଁ, ତା ପରେ ବି !! କିଛି ଚମତ୍କାର ହେଲା କି ଆଉ !

ସୁରଞ୍ଜନ ମୁହଁ ଉଠାଇଲେ ସ୍କୁଟର୍ ଡିକିରୁ । ସେତେବେଳକୁ ଅପର୍ଣ୍ଣା ଆସି ଅତି ପାଖରେ ଏବଂ ତାଙ୍କ ହାତ ଉପରେ ହାତରଖି ସେ ହସୁଛି । ଓଠରେ, ଆଖିରେ, ମନରେ ସବୁଥିରେ ପରିପୂର୍ଣ୍ଣତାର ଜୁଆର ଯେମିତି ଉଛୁଳି ଆସୁଛି ତା ଭିତରୁ ।



(ଅଭିଯାନ : ଶାରଦୀୟ / ଦୀପାବଳି – ୨୦୦୭)

# ଏକ ବିରଳ ମୃତ୍ୟୁ

ଯଦି ସେ ନେତାଟିଏ ହୋଇଥାନ୍ତା, ତା'ହେଲେ ତା'ର ସ୍ୱର୍ଗାରୋହଣ ଖବର ସଚିତ୍ର ପ୍ରକାଶ ପାଇଥାନ୍ତା ସମସ୍ତ ଖବର କାଗଜର ପ୍ରଥମ ପୃଷ୍ଠାରେ । ଟି.ଭି.ରେ ଦିଶିଥାନ୍ତା ତା'ର ମର ଶରୀରକୁ ବେଢ଼ି ରହିଥିବା ଶୋକାକୁଳ ପରିବାରର ଚିତ୍ର । ନାହିଁ ତ, ଯଦି ବ୍ୟବସାୟୀଟିଏ ହୋଇଥାନ୍ତା, ତା'ର ଇହଲୀଳା ସମ୍ବରଣର ଖବର ଏକଲକ୍ଷ ଜନସଂଖ୍ୟା ବିଶିଷ୍ଟ ଏହି କ୍ଷୁଦ୍ର ଗ୍ରାମ୍ୟ-ସହରର ଲୋକମୁଖରେ ନିଶ୍ଚୟ ବ୍ୟାପି ଯାଇଥାନ୍ତା ମୃତ୍ୟୁର ମାତ୍ର କିଛି ସମୟ ପରେ । କିଛି ନହେଲା ନାହିଁ, ଯଦି ଶିକ୍ଷିତ-ଗଣ୍ୟମାନ୍ୟ-ଧୋବ ଫରଫର ମୁରବୀ ସ୍ଥାନୀୟ ବ୍ୟକ୍ତି ହୋଇଥାନ୍ତା, ତେବେ ତା' ସାହି ବସ୍ତିର ଲୋକମାନେ ତ ଜାଣିଥାନ୍ତେ ସେ କେବେ ଶଯ୍ୟାଶାୟୀ ହେଲା, ଅଚଳ ହେଲା, ନିର୍ମାଲ୍ୟ ପାଣି ପି'ଲା ଏବଂ କେତେବେଳେ ଆଖି ବୁଜିଲା ।

ଏସବୁ ବିଲ୍‌କୁଲ କିଛି ହେଲା ନାହିଁ । ସେ କେବେ ଶୁକୁଶୁକୁ ହେଲା, ଗୋଟିକିଆ ପକେଇଲା ଏବଂ ମଲା; ମଣିଷ କଥା ଛାଡ଼, ଚନ୍ଦ୍ରସୂର୍ଯ୍ୟ ମଧ୍ୟ ଜାଣିପାରିଲେ ନାହିଁ । ଦିନ ଦଶଟା ପର୍ଯ୍ୟନ୍ତ କବାଟ ନ ଫିଟିବାରୁ ପଡ଼ୋଶୀମାନେ ସନ୍ଦେହ କରି ଭିତରେ ପଶିଲେ ଦେଖିଲେ ଜାକିଜୁକି ହୋଇ ଶୋଇଛି ନେତରା ଉଁ ନାହିଁ କି ଚୁଁ ନାହିଁ, ଘର ସାରା ଦୁର୍ଗନ୍ଧ ।

ଲୋକତୁଣ୍ଡରେ ବସ୍ତି ଟପି ଖବରଟି ଖେଳିଗଲା ସାରା ସହର । ଯିଏ ଶୁଣିଲା ତା ପାଟିରୁ ବାହାରି ପଡ଼ିଲା – ଆହା, ନେତରା ଚାଲିଗଲା ! ଆଉ କେହି ସ୍ମୃତିଚାରଣ ସହ କହିଲେ – କେତେଥର ମତେ ମାଗଣାରେ ଘରେ ନ ଛାଡ଼ିଛି ! ପଇସା ଯାଚିଲେ କହିବ, ମୁଁ ତ ଘରକୁ ଫେରୁଥିଲି, ରିକ୍‌ସାକୁ ତ ଟାଣିଟାଣି ନେଇଥାନ୍ତି, ଆପଣ ଚାଲିଚାଲି କାହିଁକି ଯାଉଛନ୍ତି ! ଆହା, ବିଚରା ଚାଲିଗଲା ।

ଅପେକ୍ଷାକୃତ ବୟସ୍କମାନଙ୍କ ମଧ୍ୟରୁ କିଛି ତୁ ତୁ ହୋଇ କହିଲେ – ତା ହାତରୁ ଯିଏ ପାନଖଣ୍ଡେ ଥରେ ଖାଇଥିବ, ସାରା ଜୀବନ ମନେରଖିବ । ବୟସ ଥିବାବେଳେ ଆମର ଖଟି ତ ତା'ରି ଦୋକାନ ସାମ୍ନାରେ ! ଆହା, ଚାଲିଗଲା !

କେହି କେହି ବିଚାରବନ୍ତ ଆଉ ପାଦେ ଆଗକୁ ଯାଇ କହିଲେ – ତା ଭଳିଆ ନିଛନ୍ଦୁଆ, ବୋକାଲୋକ ସାରାଜୀବନ – ସବୁଠି ରହିଲା, ପୁଣି କୋଉଠି ରହିପାରିଲାନି, ସବୁ କାମ କଲା, ପୁଣି କୋଉ କୂଳର ହେଲାନି । ଆହା, ବିଚରା ମରିଗଲାନି ତ ତରିଗଲା, ମୁକ୍ତି ପାଇଗଲା ।

ଏବେ ନେତରାର ଶବ ଯିବ ବିଦ୍ୟୁତ ଚୁଲା ପର୍ଯ୍ୟନ୍ତ । ଦେଖଣାହାରୀଙ୍କ ଅପେକ୍ଷା ମ୍ୟୁନସିପାଲିଟି ମଢ଼ବୁହା ଗାଡ଼ିକୁ । ଘଣ୍ଟାଏ ତଳୁ ଖବର ଗଲାଣି, ଗାଡ଼ି ଏ ପର୍ଯ୍ୟନ୍ତ ଆସିନାହିଁ ।

ପଡ଼ୋଶୀମାନଙ୍କର ନେତରା କୁଡ଼ିଆ ସାମ୍ନାରେ ଛୋଟକାଟର ଭିଡ଼ । ସମସ୍ତଙ୍କ ନାକ ବନ୍ଦ – ରୁମାଲ, ଲୁଗାକାନି ନହେଲେ ହାତ ପାପୁଲିରେ । କେବଳ ଆହା, ଚୁ ଚୁ, ବିଚରା ଶବ୍ଦମାନ ଘୁରି ବୁଲିଲେ ବାୟୁମଣ୍ଡଳରେ ।

'ତା'ର କୁଆଡ଼େ ଦି'ଟା ମାଇକିନା ଥିଲେ, କୁଆଡ଼େ ଗଲେ ସେମାନେ ?' ଭିଡ଼ ଭିତରୁ ପ୍ରଶ୍ନଟିଏ ଉଖାରି ଦେଲେ ଜନୈକ ଶୁଭେଚ୍ଛୁ ।

'ସେ ତ ତିରିଶ କି ଚାଳିଶ ବର୍ଷ ତଳର କଥା', ଉତ୍ତର ଦେଲେ ଆଉ ଜଣେ । 'ପ୍ରଥମର ପିଲାପିଲି ନ ହେବାରୁ, ମାଝୀପଡ଼ାର ଗୋଟାଏ ମାଇକିନାକୁ ସେ ଦୁତିଅ ହେଲା ଯେ, କିଛି ଦିନ ପରେ ଯାର ଯାହାକିଛି ଟଙ୍କା ପଇସା ଥିଲା ଧରି ଦୁଇଟାଯାକ ମାଇକିନା ଛୁ । ପାନ ଦୋକାନରୁ ନେତରାର ଯାହା ଆୟ, ତାହା ତ ସେ ଦୁଇଜଣଙ୍କ ବେଶପଟାକୁ ନିଅଣ୍ଟ ।'

ବକ୍ତା ଚୁପ୍ ରହିବାର ଦେଖି ଶ୍ରୋତାମାନେ ଆହୁରି ପାଖକୁ ଲାଗିଆସିଲେ । ନାକ, ପାଟି ବନ୍ଦ କରି ଆଖି ନଚେଇ ପ୍ରଶ୍ନ କଲେ – ତା'ପରେ ?

'ଆମେ ପରା ତା ପାନ ଦୋକାନରେ ଆଡ୍ଡା ମାରୁ । ସବୁ ଦେଖିଛୁ ।' ଗନ୍ଧକୁ ଭୃକ୍ଷେପ ନକରି ବକ୍ତା ବଖାଣିଲେ ଅଭିଜ୍ଞତା – ଜଣେ କାଳୀ ଆଉ ଜଣେ ଶ୍ୟାମଳୀ । ହେଲେ କ'ଣ ହବ – କାଳି ସୁନ୍ଦରୀ, ହଃ, ଦେଖିଲା ଭଳିଆ । କିନ୍ତୁ କ'ଣ ହବ ! ବକ୍ତା ସ୍ୱଗତୋକ୍ତି କଲେ । ଖର ନଇ ସୁଅରେ ଧେଡ଼ିଆ, ନିର୍ବୁଦ୍ଧିଆ, ନିର୍ଦ୍ଧନ ନେତରା ଜାଣି ବାଲିବନ୍ଧଟିଏ, ସେ ବନ୍ଧ ରହିବ ? ଭାଙ୍ଗିଗଲା । ଦୁଇଜଣଯାକ ଠିକାଦାରଙ୍କ ହାତଧରି ଓ୍ୱାଲ୍‌ଟିୟର୍ ପଳେଇଲେ । ଯୋଉ ଗଛରେ ଡାଳ-ପତ୍ର ନାହିଁ, କି ଦମ୍ଭ ନାହିଁ, କୋଉ ପକ୍ଷୀ ତା ଡାଳରେ ବସା ବାନ୍ଧିବ ? ବକ୍ତା ପ୍ରଶ୍ନଟି ସଳଖିଦେଲେ ଶ୍ରୋତାଙ୍କୁ । ଆହା ବିଚରା ! ମିଳିଲା ସମବେତ ଉତ୍ତର ।

'ପ୍ରାୟ ଆଠ/ଦଶ ଘଣ୍ଟା ତଳୁ ମଲାଣି । କେତେ ଦାୟିତ୍ୱହୀନ ଏ ମ୍ୟୁନସିପାଲିଟି ବାଲା । ଜନୈକ ପଡ଼ୋଶୀ ବିରକ୍ତ ହେଲେ । 'ଏମାନଙ୍କର ସମୟଜ୍ଞାନ ନାହିଁ,

ଦାୟିତ୍ୱଜ୍ଞାନ ନାହିଁ, କାହିଁକି ଟ୍ୟାକ୍ସ ଦେବା ଏମାନଙ୍କୁ ?' ପ୍ରଶ୍ନକର୍ତ୍ତା ଜନତାଙ୍କ ଉଦ୍ଦେଶ୍ୟରେ ପ୍ରଶ୍ନ ଫିଙ୍ଗି ସଚେତନ ନାଗରିକର ଦାୟିତ୍ୱ ନିର୍ବାହ କରିଥିବାର ଆତ୍ମସନ୍ତୋଷରେ ଆଶ୍ଚର୍ଯ୍ୟ ହୋଇ ଚାହିଁଲେ ନିଜର ତାରିଖ ବାହାରୁଥିବା ଘଡ଼ିକୁ ।

ଏହା ତ ନିଶ୍ଚିତ ଥିଲା, ନେତରାର ଶବ ପୁରୀ ସ୍ୱର୍ଗଦ୍ୱାର ଯିବ ନାହିଁ, କି ଚନ୍ଦନକାଠ-ଘିଅରେ ଦାହ କରାଯିବ ନାହିଁ । ଏମିତିକି ଛ'ଖଣ୍ଡ କାଠ ମଧ୍ୟ ତାକୁ ମିଳିବ ନାହିଁ, ମୁଖାଗ୍ନିର ପ୍ରଶ୍ନ ହିଁ ନଥିଲା । ମର୍ତ୍ତ୍ୟମଣ୍ଡଳରେ ଯେଉଁମାନେ ସ୍ୱର୍ଗସୁଖ କରନ୍ତି, ସେମାନେ ହିଁ ସ୍ୱର୍ଗଦ୍ୱାର ବାଟେ ସ୍ୱର୍ଗକୁ ଯା'ନ୍ତି । ନେତରା ତ ଜୀବଦ୍ଦଶାରେ ନରକରେ ଆଉଟୁ ପାଉଟୁ ହେଲା । ପେଟ ପୂରିଲାନି, ପିଠି ଲୁଚିଲାନି, ମୁଣ୍ଡ ଉପରେ ଚାଳଖଣ୍ଡେ ବି ମିଳିଲାନି । ତା'ର ପୁଣି ଗୋଟେ ସଂସାର କ'ଣ ? ସ୍ୱର୍ଗ କ'ଣ, ନରକ କ'ଣ ? ଯଦି ଇଲେକ୍‌ଟ୍ରିଚୁଲା ପାଖକୁ ଯାଇପାରିଲା, ସେଇଟା ହିଁ ତାପାଇଁ ବଡ଼ କଥା । ଦେଖାଯାଉ ସେ ଭାଗ୍ୟ ତା କପାଳରେ ଲେଖାଅଛି କି ନାହିଁ !

ହଠାତ କୋଳାହଳ ବଢ଼ିଗଲା । ଦୁଇଟା ମଟର ସାଇକେଲ ଅଟକିଲା ନେତରା ଦୁଆର ପାଖରେ । ଭିଡ଼ଠେଲି ତା କୁଡ଼ିଆ ଭିତରକୁ ପଶିଗଲେ ଚାରିଜଣଜାକ ଆରୋହୀ । ନିଜ ନିଜ କ୍ୟାମେରାରେ ବିଭିନ୍ନ କୋଣରୁ ନେତରାର ଫଟୋ ଉଠିଲା । ଭିଡ଼ିଓ କ୍ୟାମେରାରେ ନେତରାର ନଖଠୁଁ ଚୁଟି ପର୍ଯ୍ୟନ୍ତ ଧୀରେ ଧୀରେ ଚିତ୍ର ଉତ୍ତୋଳନ ହେଲା । ଯଦି ମାଉଁସ ଥାନ୍ତା, ତେବେ ଫୁଲି ମୁଦ୍‌ଗର ହୋଇଯା'ନ୍ତାଣି । ଏବେ ବି ସେ ଦିଶୁଛି ବେକାଏ ହାଡ଼ ପରି ଏବଂ ତା'ସହ ଫଟୋରେ ସାମିଲ ହେଲେ ତା'ର ଆସବାବ ପତ୍ର – ଦୁଇଟି ଡେକଚି, ଗୋଟେ ଚେପଟା କଡ଼େଇ, ପଟେ ଥାଳି, ଗୋଟେ କୋଣରେ ଅଣ୍ଟା ଭାଙ୍ଗି ପଡ଼ିଥିବା ଛିଣ୍ଡା ସପ ଏବଂ ବେଶ୍ କିଛିଦିନ ହେଲା ନିଆଁ ଧରି ନଥିବା ଚୁଲି ।

ବେଳେବେଳେ ଜୀବନ ଇତିହାସର ମୋଡ଼େ ମଲାପରେ ବଦଳେ । ଏକଥା ଅସମ୍ଭବ, ଅବିଶ୍ୱାସ ହେଲେ ମଧ୍ୟ ନେତରା ପ୍ରମାଣ କରି ଦେଖେଇ ଦେଲା । ଯଦି ଆଉ ପଚାଶ କି ଶହେ ବର୍ଷ ବଂଚିଥାନ୍ତା ଏତେଗୁଡ଼ାଏ ଫଟୋ କେବେ ବି ଉଠି ନଥାନ୍ତା ତା'ର । ସତେ ଯେମିତି ଜୀବନ୍ତ ନେତରା ଠାରୁ ମୁର୍ଦାର ନେତରା ବହୁଗୁଣେ ମୂଲ୍ୟବାନ, ଅଧିକ ଆକର୍ଷଣୀୟ, ଏବଂ ତା ମଢ଼ ଭିତରେ କେଉଁ ଏକ ରହସ୍ୟମୟ ଚିଜ ଯେମିତି ପଶିଯାଇଛି, ତାହା ଉଦ୍‌ଘାଟନ କରିବାପାଇଁ ଚେଷ୍ଟା କରୁଥିଲେ ଫଟୋ ଉଠାଉଥିବା ସାମ୍ବାଦିକ ଏବଂ ତାଙ୍କୁ ସହଯୋଗ କରୁଥିବା ସ୍ଥାନୀୟ ଦୁଇଜଣ ନେତା ।

ଫଟୋ ଉଠା ପର୍ବ ଶେଷ ହେଲା ପରେ ନେତା ଜଣକ ସେଠାରେ ଯେଉଁ ରହସ୍ୟ ଉନ୍ମୋଚନ କଲେ, ପରବର୍ତ୍ତୀ ସମୟରେ ତାହା ସୃଷ୍ଟିକଲା ଚାଞ୍ଚଲ୍ୟ । ସ୍ଥାନୀୟ ବାସିନ୍ଦା ସେହି ଗୂଢ଼ତତ୍ତ୍ୱର ଭେଦ ବି ପାଇ ନଥିଲେ ।

ମଢ଼ ପ୍ରଦକ୍ଷିଣ କରି ନେତା ବାହାରକୁ ଆସିଲେ ଏବଂ ଘୋଷଣା କଲେ – ଏହା ଏକ ସାଧାରଣ ମୃତ୍ୟୁ ନୁହେଁ । ଅପମୃତ୍ୟୁ । ଏହା ଏକ 'ଅନାହାର ମୃତ୍ୟୁ' ।

ଚାହୁଁ ଚାହୁଁ ଅନାହାର ମୃତ୍ୟୁ ସମ୍ବାଦ ବିଜୁଳି ବେଗରେ ପ୍ରସାରିତ ହୋଇଗଲା ଭୁବନେଶ୍ୱରରୁ ଦିଲ୍ଲୀ । ବିଧାନସଭା ଚାଲିଥାଏ । ଏଇଟା ଠିକ୍ ସମୟ । ପାଣିପାଗ ବିଶେଷଜ୍ଞଙ୍କ ଅନୁମାନ ଭୁଲ୍ ହୋଇପାରେ, କିନ୍ତୁ ନେତାଙ୍କ ଗଣିତ କେବେ ଭୁଲ ହୁଏ ନାହିଁ । କେବେ ବ୍ୟର୍ଥ ହୁଏ ନାହିଁ । ବିଜୁଳି–ଘଡ଼ଘଡ଼ି ବର୍ଷା ସବୁ ସେମାନଙ୍କ ହାତରେ । କେବଳ ସୁଯୋଗକୁ ଅପେକ୍ଷା ।

ଦଳିତ, ଅବହେଳିତ, ଦୁଃଖିମାନଙ୍କର ଦୁଃଖମୋଚନପାଇଁ ସେମାନେ ସଦାସର୍ବଦା ସୁଯୋଗ ଖୋଜନ୍ତି – ନେତରା ସୃଷ୍ଟି କରିଦେଲା ଏକ ବିରଳ ସୁଯୋଗ । ଏହାକୁ ହାତଛଡ଼ା କାହିଁକି କରନ୍ତେ ସେମାନେ ?

ଆକସ୍ମିକ ଭାବେ ଗାନ୍ଧିଛକ ହୋଇ ଉଠିଲା ଚଳଚଞ୍ଚଳ । ଟଙ୍ଗା ହେଲା ସାମିଆନା । ଲାଗିଲା ମାଇକ୍ । ପଡ଼ିଲା ନାଲି ନାଲି ଚୌକି । ବିଛା ହେଲା ଦରି ଏବଂ ଦରି ଉପରେ ରଖାଗଲା ନେତରାର ଶବ ।

ଦୋକାନ ବଜାର ବନ୍ଦ କରାଗଲା । ଗାଡ଼ି ମଟର ଯିଏ ଯେଉଁଠି ଠିଆ ହୋଇଥିଲା ସେଇଠି । ଚାହୁଁ ଚାହୁଁ ଜମା ହୋଇଗଲେ ଦୁଇଶ'ରୁ ଅଧିକ କର୍ମୀ । ଘଟଣା କ'ଣ ଜାଣିବାପାଇଁ କିଛି ବାଟୋଇ ଅଟକି ଗଲେ । ମହ ମହ ଚନ୍ଦନ ଧୂପକାଠି ବାସ୍ନାରେ ମହକି ଉଠିଲା ମଞ୍ଚ । ପଚାଗନ୍ଧ ଯେମିତି ଚନ୍ଦନ ବଳୟ ଭେଦକରି ଯାଇନପାରେ, ସେଥିପାଇଁ ଶବ ଚାରିପଟେ ମେଞ୍ଚା ମେଞ୍ଚା ଧୂପକାଠି ଜଳିଲା ।

ଦର୍ଶକ ବୋକା ପ୍ରାୟ ମଞ୍ଚ ଆଡ଼କୁ ଚାହୁଁଛନ୍ତି । ଆଜି କିଛି ଗୋଟାଏ ଦୁର୍ଲଭ ଘଟଣା ନିଶ୍ଚୟ ଘଟିବାକୁ ଯାଉଛି । ମଲାପରେ କୋକେଇରେ ବୁହା ହୋଇ ଶ୍ମଶାନକୁ ଯିବାର ପରମ୍ପରା ସହିତ ଯେଉଁମାନେ ପରିଚିତ, ଏ ପ୍ରକାର ନୂଆ ଆଡ଼ମ୍ବର ଦେଖି ସେମାନେ ବିସ୍ମିତ । ସେମାନେ କେବଳ ଏତିକି ବୁଝୁଥିଲେ, ଏହା ଏକ ସାଧାରଣ ମୃତ୍ୟୁ ନୁହେଁ । ଏଥିରେ କିଛି ଭିନ୍ନତା ନିଶ୍ଚୟ ରହିଛି । ଯାହାର ଅନ୍ୟନାମ – ଅନାହାର ମୃତ୍ୟୁ । ନେତରା ଏମିତି ଏକ ଜୀବନ ଜୀଇଁଥିଲା, ଯାହାର ପ୍ରତିବାଦ ନଥିଲା, କ୍ଷୋଭ ନଥିଲା, କାହାପ୍ରତି ଅସୂୟା ମଧ ନଥିଲା । ସମୟ ତାକୁ ଯେମିତି ଏବଂ ଯେଉଁ ବାଟରେ ଠେଲିଲା ସେ କେବଳ ଗଡ଼ି ଚାଲିଲା । ତା'ର ନିଜ ଇଚ୍ଛାରେ ସେ ସ୍ୱପ୍ନ ଦେଖୁନଥିଲା କିମ୍ବା ସ୍ୱପ୍ନକୁ ସାକାର କରିବାକୁ ଅଣନିଃଶ୍ୱାସୀ ହୋଇ ଧାଉଁ ନଥିଲା । ବାଲି ଗରଡ଼ା ଭଳି ଗଡ଼ି ଚାଲୁଥିଲା ଏବଂ କ୍ରମଶଃ ଛୋଟ ହୋଇଯାଉଥିଲା ଆପଣା ଛାଏଁ ।

ଗାଁରୁ ଅଠର ବର୍ଷ ବୟସରେ ଆସି ସେ ଯେତେବେଳେ ଏହି ସହରରେ ପାଦ ଦେଲା, ସେତେବେଳେ ଏ ସହର ଥିଲା ଗ୍ରାମ୍ୟ ଯୁବତୀ ପରି ସରଳ । ନଥିଲା ଚାକଚକ୍ୟ କିମ୍ବା ଆଡ଼ମ୍ବର । ରାଧାମାଧବ ମନ୍ଦିର ସମୀପ ଏକ ପରିତ୍ୟକ୍ତ ସ୍ଥାନରେ ସେ ତିଆରି କଲା ଘର ଏବଂ ପ୍ରାୟ ପାଞ୍ଚବର୍ଷ ରହିଲା ସେଇଠି ।

ତୋ ଗାଁ ନାଁ କ'ଣ ? ଆଉ ସବୁ କିଏ ଅଛନ୍ତି ପରିବାରରେ? ଏମିତି ସ୍ୱଭାବିକ ପ୍ରଶ୍ନ ବହୁବାର ସେ ସାମ୍ନା କରିଛି । ଚିରାଚରିତ ଏହି ପ୍ରଶ୍ନର ଉତ୍ତରପାଇଁ ସେ ଖଞ୍ଜି ରଖିଥାଏ ନିରୋଳା ମିଛଟିଏ – ମୋର କେହି ନାହାନ୍ତି, ମୁଁ ଛେଉଣ୍ଡ ପିଲା ।

ମିଛ କାହିଁକି କହେ ସେ ନିଜେ ଜାଣେ । ତା'କଥା ଅବଶ୍ୟ ସମ୍ପୂର୍ଣ୍ଣ ମିଛ ନୁହେଁ । ବାପା–ମା ପାଞ୍ଚବର୍ଷ–ଛ ବର୍ଷ ବେଳୁ ଯାଇଛନ୍ତି, ଏକଥା ସତ । କିନ୍ତୁ ଭାଇ–ଭାଉଜ ତ ଅଛନ୍ତି । ସେମାନଙ୍କୁ କାହିଁକି କାଟିଦେଲା ?

ହଁ, ଏମିତି କଥା କିଛି ଅଛି, ଯାହାକୁ ଛାତି ତଳେ ଚାପି ରଖାଯାଏ । ସେ କଥା ନା କହିହୁଏ, ନା ସହି ହୁଏ । କେବଳ ଟେଳାଏ ନିଆଁ ଭଳି ଛାତି ଭିତରେ ଜଳେଇ ରଖିବାକୁ ହୁଏ । ତାକୁ ନିଜେ ହିଁ ଅନୁଭବ କରିହୁଏ, ଆଉ କାହାରିକୁ ତାହା ଦିଶେନି । ଭାଇ–ଭାଉଜ ପୈତୃକ ସମ୍ପତ୍ତିରୁ ଭାଗ ଦେବାପାଇଁ ମନା କରିଦେଲେ, ଏକଥା ସେ କାହାକୁ କହିଥାନ୍ତା ? ନିଜ ମା' ପେଟର ଭାଇ ପରା, ତା ବିରୋଧରେ କହିବା ପାଇଁ ତା'ର ବଳ କୁଳେଇଲା ନାହିଁ । ମାଧ ପଧାନ ଠାରୁ ବଡ଼ ଭାଇ କିଛି ଟଙ୍କା ଧାର ଆଣିଥିଲା ମା'ର ଶୁଦ୍ଧିକ୍ରିୟାପାଇଁ । ସୁଝିପାରିଲାନି । ମାଧ ବୁଢ଼ା ତ ରାଢ଼, କେଉଁ ଛାଡ଼ିବାର ଜନ୍ତୁ ! ଯାହାକୁ ଧାର କିମ୍ବା ସୁଧିଆ ସେ ଦିଏ, ଗୋବର ଲେଣ୍ଡା ପରି ସେଠୁ ମାଟି ଉଠେଇ ଆଣେ । ଏକଥା ସମସ୍ତେ ଜାଣନ୍ତି । ତଥାପି ତା'ପାଖକୁ ଯା'ନ୍ତି କାରଣ ସୁବିଧା ଅସୁବିଧାରେ ସେ ଅଞ୍ଚଳରେ ମାଧବୁଢ଼ା ହିଁ ଟଙ୍କା ଗଣିଦିଏ ରାତିଅଧରେ । ସେ ଭାଇକୁ ବାଟଟିଏ ବତେଇଲା – ନେତରାକୁ ତିନି ବର୍ଷପାଇଁ ମୋ ଘରେ ଛାଡ଼ିଦେ, ବୋଲହାକ କରିବ । କି'ବା କାମ? ଗୋରୁ ଗୋଠ ଆଉ ଛ'ଜଣ ହଳିଆଙ୍କ କାମ ଦେଖାଶୁଣା । ବାସ୍ । ପୁଅ ଦି'ଟା ତ ଜମି ଚିହ୍ନିଲେ ନାହିଁ, ବାହାରେ ହଷ୍ଟେଲ୍‌ରେ ରହି ପଢ଼ିଲେ । ନେତରା ମୋ ଘରେ ଜାଣି ପୁଅ ଭଳିଆ ରହିବ । ଖାଇବ, ପିଇବ ରଜା ନଅର ଭଳିଆ ଘର ପଡ଼ିଛି, ଶୋଇବ । ଚାହୁଁ ଚାହୁଁ ତିନିବର୍ଷ ଗଡ଼ିଯିବ ଆଉ ତୋର ସୁଧ–ମୂଳ ମିଶି ପାଞ୍ଚ ହଜାର ହେଲାଣି, ସେଇଟା ବି ସୁଝିଯିବ ।

ବଡ଼ଭାଇ ଅରାଜି ହେବାର କାରଣ ନଥିଲା । ଅରାଜି ହେଲା ଖୋଦ ନେତରା । କହିଲା – ନିଜ ବିଲରେ ଖଟିବି, ଦି'ହଜାର ଟଙ୍କାର ଯୋଉ ଧାର ଆଣିଥିଲ, ଏକାବର୍ଷରେ

ସୁଝିଦେବି । ଯାହାହେଲେ ବି ପାଞ୍ଚମାଣ ପୈତୃକ ଜମି ତ ଅଛି । ସେଇ କ'ଣ କମ୍ ? ହେଲେ ଭାଉଜ ନଛୋଡ଼ ବନ୍ଧା । ଯେମିତି ହଉ, ମାଧବୁଢ଼ାର କରଜ ବୋଝ ନେତରା କାନ୍ଧରେ ଯାଉ । ଦିଅର ଗୁଁ ପୁଁ ହେବାରୁ ଭାଉଜ ଶେଷ ଅସ୍ତ୍ର ପ୍ରୟୋଗ କଲା – ଯଦି ମାଧବୁଢ଼ା ଘରକୁ ନ ଯିବୁ, ଏଠି ତତେ ଗେଫେଇବ କିଏ ? ଯିବୁ ଯଦି ଯା', ନଗଲେ ଜମି ବାଡ଼ିରୁ ଛୁଞ୍ଚି ମୁନରେ ମୁନେ ବି ଦେବିନି ।

ନେତରା ମୁଣ୍ଡ ଝାଇଁ ମାରିଦେଲା । ଭାଉଜର ପାଟି ଖର, ମୁହଁକୁ ଚାହେଁ ନା । ଡବଡବ ଆଖିରେ ବଡ଼ଭାଇକୁ ଚାହିଁଲା । ମୁଣ୍ଡ ପୋତି ଭାଇ ନୀରବ । ଭାଉଜ କଥା ଉପରେ ସେ କେବେ ବି କଥା କହିନାହିଁ । ଭାଇ ଚୁପ୍‌ଚାପ୍ ରହିବାର ଦେଖି ନେତରା ସେଇଠି ନିଷ୍ପତ୍ତି ନେଲା, ଆଉ ସେମିତି ଲୁଙ୍ଗି ପିନ୍ଧା ଅବସ୍ଥାରେ ବାହାରି ଆସିଲା । ମନକୁ ବୁଝେଇ ଦେଲା – ନିଜ ଭାଇ ତ, ଖାଇଲେ ଖାଉ, ତା'ସହ ବାଦ କାହିଁ କରିବି? ଏବଂ, ଏହାପରେ ଗାଁ କଥା ମନରୁ ପୂରା ପୋଛି ଦେଲା ।

'ଆଜି ଆମପାଇଁ ଏକ କଳଙ୍କିତ ଦିବସ ।' ଘୋ–ଘୋ ହୋ–ହୋ ହେଉଥିବା କ୍ଷୁଦ୍ର ଜନସମୁଦ୍ରଙ୍କୁ ସମ୍ବୋଧନ କରୁଥିଲେ ଯୁବ ନେତା । 'ଅନାହାରରେ ମୃତ୍ୟୁବରଣ କରିଥିବା ଆମର ବନ୍ଧୁ, ଭାଇ, ଆମର ସହୋଦର, ମୋର ଅତିପ୍ରିୟ ନେତ୍ରାନନ୍ଦ ଭାଇ, ଆଜି ଆମ ସମସ୍ତଙ୍କର ଆଖି ଖୋଲିଦେଇଛନ୍ତି ।

ଶ୍ରୋତାମାନେ ସାବ୍‌ଧାନ ମୁଦ୍ରାରେ ଠିଆହେଲେ । ଭାଷଣ ଶୁଣି ତାଙ୍କର ରକ୍ତ ଟିକେ ଗରମ ହେଲାଭଳି ଅନୁଭବ କଲେ । ଏଣେ ନେତାଙ୍କ ଯୋସ୍ ମଧ ବଢ଼ିଗଲା – 'ଆମେ ଏ ଅନ୍ୟାୟର ପ୍ରତିବାଦ କରିବା, ଏହାର ଦୃଢ଼ ମୁକାବିଲା କରିବା । ଆମ ମାଟିରେ ନାହିଁ କ'ଣ? ହୀରା ନୀଳା ମୋତି ମାଣିକ୍ୟଠୁ ଆରମ୍ଭ କରି ଜଙ୍ଗଲ, ଝରଣା, କ୍ଷେତ... ନାହିଁ କ'ଣ ? ତଥାପି ଆମେ ଉପାସ ରହିବା କାହିଁକି, ଅନାହାରରେ ମରିବା କାହିଁକି ?

ଶ୍ରୋତାମାନେ, ଯେଉଁମାନେ ବକ୍ତାଙ୍କର ମୁହଁ ଦେଖିପାରୁ ନଥିଲେ, ବୁଢ଼ା ଅଙ୍ଗୁଠି ଟିପ ଅଗରେ ଭିଡ଼ ଭିତରେ ଠିଆ ହେଲେ । ଏମିତି ସତ୍ୟବଚନ କହୁଥିବା ନେତାଙ୍କର ପାଦଧୂଳି ନେବା ଦରକାର । ମଞ୍ଚ ଉପରେ କେହି ଜଣେ କରତାଳି ମାରିବାରୁ ସାମ୍ନା ଜନ ସମୁଦ୍ରରୁ କରତାଳିର ଢ଼େଉ କଚାଡ଼ି ହୋଇପଡ଼ିଲା ନେତାଙ୍କ ଉପରେ ।

'ଆମେମାନେ ସମସ୍ତେ ଏକାଠି ହେବା । ସରକାରଙ୍କୁ ଦେଖାଇଦେବା ଗରିବ, ଖଟିଖିଆ, ମଜୁରିଆ, ମେହେନତି ମଣିଷମାନେ ହିଁ ତୁମ ଚୌକିକୁ ଓଲଟପାଲଟ କରିଦେଇପାରିବେ । ଦେଶରେ ବିପ୍ଳବ ଆଣିପାରିବେ – କୁହ ଭାଇମାନେ, ଇନ୍‌କିଲାବ୍ – ଜିନ୍ଦାବାଦ୍ ।

ଶ୍ରୋତାମାନେ ଏବେ ଉତ୍ତେଜିତ ହୋଇପଡ଼ିଲେ । ତାଙ୍କ ଭିତରେ ଏମିତି ପାରିବାରପଣ ରହିଛି, ଏତେ ଶକ୍ତି ରହିଛି, ଏକଥା ପୂର୍ବରୁ କେବେ ଜାଣିନଥିଲେ । ପାଞ୍ଚ ବର୍ଷରେ ଥରେ ଟିପ ଦେଇ ଭୋଟ ଦେବା ଛଡ଼ା, ସରକାର ନାମକ ଜିନିଷଟି କେମିତିଆ, ତା'ର ସ୍ୱରୂପ କ'ଣ, କାମ କ'ଣ, କୋଉଠି ରୁହେ, ସେ ମଣିଷ କି ରାକ୍ଷସ, ସେ ଚୌକିରେ ବସେ କି ଖଟିଆରେ ବସେ, ଏସବୁ ଚିନ୍ତା କରିବାର ଆବଶ୍ୟକତା ଏବଂ ଅବକାଶ ସେମାନଙ୍କର ନଥିଲା ।

'ଆଜି ବନ୍ଧୁ ନେତ୍ରାନନ୍ଦ ଅକାଳରେ କାହିଁକି ମଲେ ଏହାର ଜବାବ୍ ସରକାର ଆମକୁ ଦେବାକୁ ପଡ଼ିବ ।' ଆଉ ଜଣେ ବରିଷ୍ଠ ନେତା ଉଦ୍‌ବୋଧନ ଦେଲେ 'ଆମେମାନେ ସମସ୍ତେ ନେତ୍ରାଭାଇଙ୍କୁ ତହସିଲ ଅଫିସ୍‌ରେ ଦେଖିଛନ୍ତି, ବ୍ଲକ୍‌ରେ ଖଣ୍ଡେ ବି.ପି.ଏଲ. କାର୍ଡ଼ପାଇଁ ଧାଡ଼ିବାନ୍ଧି ଠିଆହୋଇଥିବାର ଦେଖିଛନ୍ତି । ଏ କଥା ଆମେ ସମସ୍ତେ ଜାଣନ୍ତି । ଆମର ଦୁର୍ଭାଗ୍ୟ, ଆମେ ଗରିବ, ଖଟିଖିଆଙ୍କର କଥା ବୁଝୁଛି କୋଉ ସରକାର, ଆପଣମାନେ ଉତ୍ତର ଦିଅନ୍ତୁ, ବୁଝୁଛି କି ?'

ନେତାଙ୍କର ପ୍ରଶ୍ନ କିଛି ସମୟ ଉଦ୍‌ବେଳନ ସୃଷ୍ଟିକଲା ଜନତାଙ୍କ ମଧ୍ୟରେ । ତା'ପରେ ହୋ ହୋ ହୋଇ ଏକ ସ୍ୱରରେ ଯେଉଁ ଧ୍ୱନି ଶୁଭିଲା, ନେତା ସନ୍ତୁଷ୍ଟ ହେଲେ – ସମସ୍ତେ ତାଙ୍କ ସହ ଏକମତ । 'ଆପଣମାନେ ବିଶ୍ୱାସ କରିନପାରନ୍ତି', ବକ୍ତା ଏଥର ଗମ୍ଭୀର ହେଲେ 'ମୁଁ ନେତ୍ରାଭାଇଙ୍କ ରିକ୍‌ସାରେ ଅନେକ ଥର ବୁଲିଛି, ତାଙ୍କ ଦୁଃଖ ଦେଖିଛି ନିଜ ଆଖିରେ, କିନ୍ତୁ କ'ଣ କରିପାରିବା ଆମେ? ଆମ ପାର୍ଟି ତ ପାୱାର୍‌ରେ ନାହିଁ । ମୁଁ କିଛି କରିପାରିଲିନି ତାଙ୍କପାଇଁ । ସେ ସହିଦ ହୋଇଗଲେ ଆମ ପାଇଁ – ବୋଲ ଭାଇମାନେ, ସହିଦ ନେତ୍ରାଭାଇ – ଅମର ରହେ ।'

ଶ୍ରୋତାମାନେ ଟିକେ ହଡ଼ବଡ଼େଇ ଗଲେ । ଜିନ୍ଦାବାଦ୍ ଧ୍ୱନି ଦେବା ସେମାନେ ଜାଣନ୍ତି । ତାଳିଟାଏ ବାଜିଲେ ବି ତା ପଛକୁ ଅମୁକ ଭାଇ ଜିନ୍ଦାବାଦ୍ ଧ୍ୱନି ସ୍ୱତଃ ବାହାରିଯାଏ ସେମାନଙ୍କ ପାଟିରୁ । କିନ୍ତୁ, 'ଅମର ରହେ' ନାରାରେ ସେମାନେ ଯେହେତୁ ଅଭ୍ୟସ୍ତ ନୁହଁନ୍ତି, କେହି କେହି 'ଅମର ଭାଇ' ଜିନ୍ଦାବାଦ୍ ବୋଲି ମଧ୍ୟ ଉଚ୍ଚାରଣ କରିଦେଲେ ।

'ଆମେ ଏହି ଅନ୍ୟାୟର ଦୃଢ଼ ପ୍ରତିବାଦ କରିବା' ପ୍ରମୁଖ ନେତା ଘୋଷଣାକଲେ । 'ଆସନ୍ତା କାଲି ବଜାର ବନ୍ଦ, ପନ୍ଦର ତାରିଖ ଜିଲ୍ଲା ବନ୍ଦ ଏବଂ ତିରିଶ ତାରିଖ ସାରା ଓଡ଼ିଶା ବନ୍ଦ କରି ଆମେ ପ୍ରତିବାଦ କରିବା । ଅଖ–ଚକ ଜଖମ କଲେ ସରକାର ଆପଣା ଛାଏଁ ବନ୍ଦ ହୋଇଯିବ ଏବଂ ଆପଣମାନେ ହେବେ ଏହି ମହାସମରର ଜଣେ ଜଣେ ଲଢୁଆ ସେନାପତି ।'

ଏହି ସମୟରେ କେହିଜଣେ ପୋଲିସ ଗାଡ଼ିକୁ ଲକ୍ଷ୍ୟକରି ଅତି ଉତ୍ସାହରେ ଟୋକାଟିଏ ଫିଙ୍ଗିଦେଲା । ଅବସ୍ଥା ଅସମ୍ଭାଳ ଆଡ଼କୁ ମୁହାଁଇଲା । ପ୍ରମୁଖ ନେତା ତତ୍‌କ୍ଷଣାତ୍ ନିଜ ମୋବାଇଲ୍ ଫୋନ୍‌ରୁ ଅପରପାର୍ଶ୍ୱର କୌଣସି ବ୍ୟକ୍ତିଙ୍କ ସହ ଏକ ସଂକ୍ଷିପ୍ତ ଆଲୋଚନା କରିବା ପରେ ହାତଯୋଡ଼ି ଠିଆହେଲେ – ଭାଇମାନେ ଆମେ ହିଂସା ଆଚରଣ କରିବା ନାହିଁ ।

ଏବେ ଯେଉଁସବୁ ଘଟଣା ଘଟିଲା ଏବଂ ଆଗକୁ ଘଟିବାକୁ ଯାଉଛି ସେସବୁ ନେତରା ଓରଫ୍ ନେତ୍ରାନନ୍ଦକୁ ଇତିହାସ ପୃଷ୍ଠାରେ ସ୍ଥାନ ଦେବ କି ସୁଅ ମୁହଁରେ ପତ୍ରଭଳି ଅତି ତୁଚ୍ଛଭାବେ ଫିଙ୍ଗିଦେବ, ତାହା ଏବେଠୁଁ ଅନୁମାନ କରିହେବ ନାହିଁ । କିନ୍ତୁ ଗୋଟାଏ କଥା କିଛି ଜାଣିବା ଶୁଣିବା ଲୋକଙ୍କୁ ଚିନ୍ତାରେ ପକାଇଲା – ସତରେ କ'ଣ ନେତ୍ରାନନ୍ଦକୁ ଏତେ ପାଖରେ, ଏମିତି ଆତ୍ମୀୟତାର ସହ ଏହି ନେତାମାନେ ଦେଖିଛନ୍ତି । କେବେହେଲେ ତା ସହ ଠିଆହୋଇଛନ୍ତି ଦୁଃଖ ସମୟରେ ।

ନେତରାର ଜୀବନ ଧାରା, ତୈଳଖମ୍ଭକୁ ଚଢୁଥିବା ମାଙ୍କଡ଼ ପରି । ଯଦି କେବେ ତିନିଫୁଟ ଚଢୁଥିଲା, ତା ପରେ ପୁଣି ଥରେ ଖସି ପଡୁଥିଲା ସେହି ତିନିଫୁଟ । ମୋଟ ଉପରେ ସେ ଯୋଉଁଠି ଥିଲା, ସେଇଠି । ଉପରକୁ ଟିପେ ମାତ୍ର ଯାଇପାରିଲା ନାହିଁ ।

ଗାଁକୁ ପଛକରି, ପୈତୃକ ସମ୍ପତ୍ତିକୁ ତୁଚ୍ଛକରି ଯେତେବେଳେ ସେ ସହରରେ ପହଞ୍ଚିଲା, ସେଥିପାଇଁ ନା ଥିଲା ତାର କିଛି ଯୋଜନା, ନା ଥିଲା କେହି ଚିହ୍ନା ପରିଚିତ ଲୋକ । ସଂଯୋଗବଶତଃ, ଭୋକ ଉପାସରେ ରାଧାମାଧବ ମନ୍ଦିର ବେଢ଼ାରେ ଗୋଟାଏ ଦିନ ବସିବା ପରେ, ମନ୍ଦିର ପୂଜକ ରାଧାକାନ୍ତ ପଣ୍ଡାଙ୍କର ଦୃଷ୍ଟି ପଡ଼ିଲା ତା ଉପରେ । ପୂଜକ, ସତେଅବା ଈଶ୍ୱର ପ୍ରେରିତ ଦେବଦୂତ ଭଳି ଉଭା ହେଲେ ତା ପାଖରେ । ତାଙ୍କରି ବଳ ପାଇ ପରିତ୍ୟକ୍ତ ରାସ୍ତକଡ଼ର ସରକାରୀ ଜମିରେ ସେ ତିଆରି କଲା ନିଜର ଆବାସ ଏବଂ ତାକୁ ଲାଗି ପାନ ଦୋକାନ ।

ଠାକି ଗଲା ନେତରା ଏବଂ କିଛି ଦିନ ପରେ ପୂଜକଙ୍କ ସହାୟତାରେ ସେହି ମନ୍ଦିରରେ ବାହା ହୋଇପଡ଼ିଲା କମଳିନୀକୁ । କମଳିନୀ ସେହି ପଡ଼ାରେ ରହୁଥିଲା ମାମୁଁ ଘରେ, ଛେଉଣ୍ଡ ପିଲା । ଚାରି ପାଞ୍ଚଜଣଙ୍କ ଘରେ ସେ ପାଇଟି କରେ । ଦୁଇଜଣ ଏବେ ମନ ଦେଇ ଲାଗିଗଲେ ସଂସାର ନାଆକୁ ସୁରୁଖୁରୁରେ ଚଳେଇବାପାଇଁ ।

କିନ୍ତୁ ନେତରା କପାଳରେ ତ ଏମିତି ସରଳ ରୈଖିକ ଜୀବନ ବିଧି ଲେଖିନାହିଁ, ସେ କରିବ କ'ଣ? ନିଃଶ୍ୱାସ ପ୍ରଶ୍ୱାସ ଭଳି ପଛକୁ ପଛ ଲାଗିଆସିଲା ବିପତ୍ତିପରେ ବିପତ୍ତି । କମଳିନୀର ମାଉସୀ ଝିଅ ଭଉଣୀ ଗୋଟାଏ ମାଝୀ ଟୋକା ସହ ପଳେଇଥିଲା ହାଇଦ୍ରାବାଦ୍ । ସେଠି ତା'ସହ ବର୍ଷେ ଦେଢ଼ବର୍ଷ ରହିଛି କି ନାହିଁ, ଇଟାଭାଟିରେ

କାମ କରୁଥିବା ସେ ଟୋକା ସେଇଠି ମରିଗଲା । ଅଗତ୍ୟା ଲକ୍ଷ୍ମୀ ଫେରିଆସିଲା ଘରକୁ । ବିଜାତିରେ ଯାଇଛି ବୋଲି ଘରେ ପୁରେଇଲେ ନାହିଁ ବାପା–ଭାଇ, ଶାଶୁ ଘର ଲୋକ କହିଲେ – ବାହାଘରର କିଛି ପ୍ରମାଣ ଅଛି? ବିଚାରି ଲକ୍ଷ୍ମୀ ଏ ଓଳି ସେ ଓଳି ହୋଇ ପହଂଚିଲା କମଳିନୀ ପାଖରେ । ନେତରା ଶୁଣିଲା ସବୁକଥା । ଦୁଃଖୀର ଭାଷା ଦୁଃଖୀ ହିଁ ବୁଝିପାରେ । କହିଲା – ଏ କୁଡ଼ିଆରେ ଦି'ଜଣ ତ ରହୁଛେ, ଆଉ ଜଣେ ରହୁ, ଖଟିବ ଖାଇବ, ଅସୁବିଧା କ'ଣ ?

ତା'ପରେ ସବୁ ଓଲଟ ହୋଇଗଲା । ମ୍ୟୁନିସିପାଲଟି ବାଲା ରାସ୍ତା ଚୌଡ଼ା କରିବାପାଇଁ ଝୁମ୍ପୁଡ଼ି ଭଙ୍ଗା ଆରମ୍ଭ କଲେ ତ, ପ୍ରଥମ ପାଳି ପଡ଼ିଲା ନେତରାର । ଯେଉଁ ଅଞ୍ଚଳରେ ପ୍ରତିବାଦ ନାହିଁ, ଭଙ୍ଗା କାର୍ଯ୍ୟଟି ସେଉଠୁଁ ଆରମ୍ଭ ହୁଏ । ଘରଭଙ୍ଗାପାଇଁ ଆଉ ଦୁଇଦିନ ଅଛି, ନେତରା ଦିନେ ସକାଳୁ ଉଠି ଦେଖେତ ଲକ୍ଷ୍ମୀ–କମଳିନୀ ଦୁହେଁ ନାହାନ୍ତି ଘରେ । ସେମାନେ ଗଲେ ଯେ ଗଲେ, କୁଆଡ଼େ ଗଲେ ତା'ର ପତ୍ତା ଆଉ ମିଳିଲାନି ।

ଚେର ଲାଗିଆସୁଥିବା ଗଛଟି ଉପୁଡ଼ି ପଡ଼ିଲା – ନେତରା ପୁଣି ଏକଲା ହୋଇଗଲା, ଚୁପ୍‌ଚାପ୍, ଶୂନଶାନ୍ ।

ଏବେ ଯେଉଁଠି ଡମପଡ଼ା ବସ୍ତି ଅଛି, ସେ ଜାଗାଟି ସହରର ସବୁଠୁ ଅପରିଚ୍ଛନ୍ନ । ମ୍ୟୁନସିପିଲିଟି ସେଠି ଅଳିଆ କୁଢ଼ାଏ । ତଥାପି ସେହି ସନ୍ତସନ୍ତିଆ, ଅପରିଷ୍କାର ଆବର୍ଜନା କୁଣ୍ଡ ଭିତରେ ବସବାସ କରନ୍ତି ପ୍ରାୟ ତିରିଶ୍‌ଟି ପରିବାର । ରାସ୍ତାର ଉତ୍ତରପଟ ବେଶ୍ ପରିଷ୍କାର, ଉଚ୍ଚା ଉଚ୍ଚା ଘର, ବିଜୁଳି ବତୀ, ଚିକ୍‌ଚକ୍ । ଦକ୍ଷିଣ ପଟଟା ଅଳିଆ ଫିଙ୍ଗାପାଇଁ ଉଦ୍ଦିଷ୍ଟ । ସହରର ସୌନ୍ଦର୍ଯ୍ୟରେ ଏ ସ୍ଥାନଟି ଯେମିତି ଗୋଟାଏ ପୋଡ଼ାଦାଗ । ତେଣୁ କଲ୍ୟାଣ ମଣ୍ଡପ ତିଆରି କରିବାପାଇଁ ଯୋଜନା ହୋଇ ଫଳକ ପୋତା ହେଲାଣି ଢ଼େର ବର୍ଷ ତଳୁ । କିନ୍ତୁ ଦୁଇ ପୁରୁଷ ହେଲା ରହି ଆସୁଥିବା ତିରିଶଟି ପରିବାର, ତା ଭିତରେ ଦୁଇ ଶ'ଭୋଟର୍, ସେମାନଙ୍କୁ ଉଠେଇବା କ'ଣ ଏତେ ସହଜ ? ନେତରା ସେଇଠି କୁଡ଼ିଆ ମାରିଲା ।

ଯାହା ସଂଚୟ ଥିଲା, ଗଲା ନୂଆ ଘର ତିଆରିରେ । ଏବେ କ'ଣ କରିବ ବୋଲି ଅନିଶ୍ଚିତତାରେ ଆଉଟୁ ପାଉଟୁ ହେଉଥିବା ବେଳେ ଜଣେ ପଡ଼ୋଶୀ ତାକୁ ନେଇ ପରିଚୟ କରାଇଦେଲେ ନିରାକାର ପଟ୍ଟନାୟକଙ୍କ ସହ । ରାସ୍ତାର ଆରପଟେ ତାଙ୍କ କୋଠା । କୋଡ଼ିଏଟି ରିକ୍‌ସାର ସେ ମାଲିକ । ତେଜରାତି ଦୋକାନ ମଧ୍ୟ ଅଛି । ପଟ୍ଟନାୟକ ବାବୁ ପ୍ରସ୍ତାବ ଦେଲେ – ଗୋଟାଏ ଦିନ ରିକ୍‌ସା ଭଡ଼ା ଅନ୍ୟମାନଙ୍କଠୁ ପନ୍ଦର ଟଙ୍କା ନଉଚି, ତୁ ନୂଆ ଏ ଲାଇନ୍‌ରେ, ତେଣୁ ଦଶ ଟଙ୍କା ନେବି । ବଡ଼ ବଡ଼

ଖର୍ଚ୍ଚ ମୋର, ଚକା ପ୍ୟାଚ୍ ଭଳି ଛୋଟ ଖର୍ଚ୍ଚ ତୋର । ଯେତେ ଅଧିକ କମେଇବୁ ସବୁ ତୋର, କ'ଣ ରାଜି?

ନେତରା ଅରାଜି ହବ ବା କାହିଁକି? ପ୍ରଥମେ ଟିକେ ଅଡୁଆ ଅଡୁଆ ଲାଗୁଥିଲା । ସଂକୋଚ ବି । ଯାହା ହେଲେ ବି ପାନ ଦୋକାନରେ ସେ ମାଲିକ ଭଳି ବସୁଥିଲା । ଏବେ ବସ୍‌ଷ୍ଟାଣ୍ଡରେ ଗରାଖ ଈଶ୍ୱରଙ୍କୁ ଅପେକ୍ଷା କରିବାକୁ ପଡୁଛି । ପଟ୍ଟନାୟକ ବାବୁ ଭାରି ଉପକାରୀ ମଣିଷ । ଯେଉଁଦିନ କମ୍ ରୋଜଗାର, ସେ ଦିନର ଭଡ଼ା ଅନ୍ୟ କେବେ ଆଡ୍‌ଜଷ୍ଟ କରିବାକୁ କହନ୍ତି । ବେଳେବେଳେ ଭଲ ବନ୍ଦ ବି ପଚାରନ୍ତି, ଦେହ ପା'କୁ ଜଗି ଚଳିବାକୁ ପରାମର୍ଶ ଦିଅନ୍ତି । ସେତିକି ନୁହେଁ, ନେତରା ନାଁରେ ଗୋଟାଏ ରେସନ୍ କାର୍ଡ଼ ମଧ୍ୟ ସେ ବାହାର କରିଦେଇଛନ୍ତି । କହିଛନ୍ତି – 'ତୋର ଦରକାର ହେଲେ, କହିବୁ । ହରିଆ, ମାଧ, କାଳୁ ସମସ୍ତଙ୍କ କାର୍ଡ଼ ପରା ଏଇଠି ମୋ ପାଖରେ ।

କ୍ରମେ, ନେତରା ରିକ୍‌ସାବାଲାର ଗୋଟାଏ ଭିନ୍ନ ପରିଚୟ ସୃଷ୍ଟିହେଲା । ତା'ର ବିଶେଷତ୍ୱ, ସେ କେବେ ଗ୍ରାହକ ସହ ମୁଲଚାଲ କରେ ନାହିଁ । ପାଞ୍ଚ ଦେଲେ ହଁ, ଦୁଇ ଦେଲେ ହଁ, ନାହିଁ ତ କେହି କେହି ନେହୁରା ହୋଇ କହିଲା, ଅଖଞ୍ଜ ମାଇପିଟା ଡାକ୍ତରଖାନା ଟିକେ ନିଅନନ୍ତି ? ଏଇନା ପଇସା ନାହିଁ । ଚାଲିଲା ନେତରାର ବି.ଏମ୍. ନଂ.ସତାବନ । ପୁଣି ଯଦି ଭାଟି ପାଖରେ କେହି ଭଦ୍ରଲୋକ ଗୋଡ଼ ଟଳମଳ କରି ଭୂଇଁ ଉଣ୍ଡାଳେ, ଖୋଜାପଡ଼େ ନେତରାକୁ, ନହେଲେ ବିନା ପଇସାର ଏ ବେକାର କାମ ଆଉ କିଏ ବା କରିବ? ଖାସ୍ ଏଇଥିପାଇଁ ଅନେକ ବଡ଼ବଡ଼ିଆଙ୍କ ସହ ତା'ର ପରିଚୟ ଅଛି । ଅବଶ୍ୟ ନିଶା ଛାଡ଼ିଗଲେ ନେତରାକୁ ଚିହ୍ନିବାକୁ ସେମାନେ ଟିକେ କୁଣ୍ଠିତ ହୁଅନ୍ତି । ହେବା ମଧ୍ୟ ସ୍ୱାଭାବିକ – ସେମାନେ କୋଉଠି, ନେତରା କୋଉଠି !

ପୁଣି ଆରମ୍ଭ ହେଲା ବିପର୍ଯ୍ୟୟ, ବୋଧହୁଏ ନାଟକର ଶେଷ ଦୃଶ୍ୟ । ସହରରେ ଚାଲିଲା ଟାଉନ୍ ବସ୍ ଆଉ ଅଟୋ ରିକ୍‌ସା । ଖୋଦ୍ ପଟ୍ଟନାୟକ ବାବୁ ଦି'ଟା ଅଟୋ କିଣିଲେ କିସ୍ତିରେ ।

ନେତରାର ବୟସ ବଢ଼ିଲା, ବଳ ହଟିଲା, ତା ସାଙ୍ଗକୁ ଇନ୍‌କମ୍ ମଧ୍ୟ କମିଲା । ଦେହ ପରାଣ ମେଣ୍ଟେଇବାକୁ ଦେଶୀ ଭାଟି ଆଡ଼େ ହପ୍ତାରେ ଥରେ ଦୁଇ ଥର ଯାଉଥିଲା । ଏବେ ରୋଜ୍ ଗଲା । ଦିନେ ଦିନେ ତ କିଛି ନ ଖାଇ ହାଣ୍ଡିଆ ପି'ଶୋଇଲା । ଏବେ ଆରମ୍ଭ ହୋଇଗଲା ପେଟ ବେମାରି । ଡାକ୍ତର ପରୀକ୍ଷା କରି କହିଲେ – ପେଟରେ ପଥର ହୋଇଛି, ଅପରେସନ୍ ହବ, ପାଞ୍ଚ ହଜାର ଯୋଗାଡ଼ କର । ପାଞ୍ଚ ଟଙ୍କାର ମୁଣ୍ଡ ସେ ତାକୁ ପାଞ୍ଚ ହଜାର ମିଳିବ କାହୁଁ ?

ସେଇ ନେତରା ଶବ ଏବେ ଡାକ୍ତରଖାନା ପିଣ୍ଡାରେ ।

ବିଧାନସଭାରେ ମୁଖ୍ୟମନ୍ତ୍ରୀ ଘୋଷଣା କରିଛନ୍ତି – ବାରଘଣ୍ଟା ଭିତରେ ଜିଲ୍ଲାପାଳ ତଦନ୍ତ କରି ରିପୋର୍ଟ ଦେବେ । ବିଶେଷ ଡାକରା ପାଇ ଆନ୍ଦୋଳନର ନେତାମାନେ ଏବେ ଭୁବନେଶ୍ୱର ମୁହାଁ । ଦୋଷୀକୁ କଠୋର ଦଣ୍ଡ ମିଳିବାର ଦୃଢ଼ ପ୍ରତିଶ୍ରୁତି ମିଳିବା ପରେ ବିଧାନସଭା ଏବେ ଶାନ୍ତ ।

ପୋଷ୍ଟମର୍ଟମ୍ ପରେ ଡାକ୍ତରଖାନା କର୍ତ୍ତୃପକ୍ଷ ଅପେକ୍ଷା କରିଛନ୍ତି ନେତ୍ରାନନ୍ଦର ପରିବାର କିମ୍ବା ଅନ୍ୟ କୌଣସି ଶୁଭେଚ୍ଛୁଙ୍କ ଆଗମନକୁ, ଶବ ହସ୍ତାନ୍ତରପାଇଁ ।

ନେତରା ଏବେ ସମ୍ପୂର୍ଣ୍ଣ ଏକଲା । ବୋଧହୁଏ ଏହି ଏକଲାପଣ ହିଁ ତା ଜୀବନ । ଜୀବନକୁ ଶବ୍ଦମୟ କରିବାପାଇଁ ଯେତେବେଳେ ସେ ଚେଷ୍ଟା କରିଛି, ତା'ର ସ୍ୱରପେଟିକା ଆପଣାଛାଏଁ ବନ୍ଦ ହୋଇଯାଇଛି । ମରିଯାଇ ସେ ହାରିଯାଇଛି କିମ୍ବା ଜିତିଯାଇଛି ସମୟର ଖେଳରେ, ଏ ପ୍ରଶ୍ନର ଉତ୍ତର ସେହି ସମୟ ହିଁ କହିବ ।

ତା ପରିଦିନ ଖବରକାଗଜ ପୃଷ୍ଠାରେ ତିନୋଟି ଖବର ପାଠକଙ୍କର ଦୃଷ୍ଟି ଆକର୍ଷଣ କଲା ।

ପ୍ରଥମ – ମୁଖ୍ୟମନ୍ତ୍ରୀଙ୍କର ଘୋଷଣା 'ରାଜ୍ୟରେ ଖାଦ୍ୟଦ୍ରବ୍ୟ ପ୍ରଚୁର ମହଜୁଦ ଅଛି । ଅନାହାର ମୃତ୍ୟୁ କେଉଁଠାରେ ବି ଘଟିନାହିଁ । ଡାକ୍ତରି ରିପୋର୍ଟ ଅନୁସାରେ ନେତ୍ରାନନ୍ଦ ସାହୁ ନାମକ ଜନୈକ ବ୍ୟକ୍ତିର ମୃତ୍ୟୁ ଖାଦ୍ୟ ପଦାର୍ଥର ବିଷକ୍ରିୟା ପ୍ରଭାବ ହେତୁ ଘଟିଛି । ତାଙ୍କ ଘରୁ ପାଞ୍ଚକେଜି ଚାଉଳ, ଏକ କେଜି ଡାଲି ଏବଂ ପାଞ୍ଚ ଶ'ଗ୍ରାମ ଆଳୁ ପୋଲିସ୍ ଠାବ କରିଛି । ଏହାସହ ଯୋଗାଣ ବିଭାଗ ରିପୋର୍ଟ ଅନୁସାରେ, ଶ୍ରୀ ସାହୁ ପ୍ରତିମାସରେ ତାଙ୍କର କଣ୍ଟ୍ରୋଲ ସାମଗ୍ରୀ ଡିଲର୍ ଠାରୁ ନେଉଛନ୍ତି । ଏଣୁ ଅନାହାର ମୃତ୍ୟୁ ଖବର ସମ୍ପୂର୍ଣ୍ଣ ଭିତ୍ତିହୀନ ।'

ଦ୍ୱିତୀୟ ଖବର – ବିଶିଷ୍ଟ ଦଳିତ ନେତା ରାଘବନନ୍ଦ ଦାସଙ୍କର ସରକାରୀ ଦଳରେ ଯୋଗଦାନ । ଖୁବ୍ ନିକଟରେ ତାଙ୍କୁ ଖାଦ୍ୟ ନିଗମର ଅଧ୍ୟକ୍ଷ ଭାବେ ନିଯୁକ୍ତି ମିଳିବ ବୋଲି ଜଣାଶୁଣା ମହଲରୁ ପ୍ରକାଶ । କହିବା ବାହୁଲ୍ୟ, ରାଘବାନନ୍ଦ ବାବୁ, ଗତକାଲି ଚାଞ୍ଚଲ୍ୟ ସୃଷ୍ଟିକାରୀ ନେତ୍ରାନନ୍ଦ ରାଲିର ଥିଲେ ପୁରୋଧା ।

ତୃତୀୟ ଖବରଟି ଗୋଟିଏ ଫଟୋ । ଡାକ୍ତରଖାନା ବାଣ୍ଡାରେ ଗୋଟେ ଶବକୁ ଜଗି ବସିଛନ୍ତି ଦୁଇଟି କୁକୁର ଏବଂ ଫଟୋତଳେ ଲେଖାଅଛି – ମଣିଷର ପ୍ରକୃତ ବନ୍ଧୁ ।



(ସଚିତ୍ର ବିଜୟା – ନଭେମ୍ବର ୨୦୦୯)

# ଗୁରୁ ଦକ୍ଷିଣା

ଆଗରୁ ଯେ କେବେ ରଘୁମାଷ୍ଟ୍ରେ ଭୁବନେଶ୍ୱର ଆସି ନଥିଲେ, ସେମିତି ଭାବିବା ଉଚିତ ନୁହେଁ । ଲିଙ୍ଗରାଜ ଦର୍ଶନ, ପୁରୀ–କୋଣାର୍କ ଭ୍ରମଣ କମ୍‌ସେକମ୍ ପାଞ୍ଚଥର ସେ କରିଥିବେ, କିନ୍ତୁ ସେ ହେଲା ଦଶ/ପନ୍ଦର ବର୍ଷ ତଳର କଥା । ସେ ବେଳ ଆଉ ଏ ବେଳର ରାଜଧାନୀ ଭିତରେ ତ ଆକାଶ–ପାତାଳ ତଫାତ୍ । ସେତେବେଳେ ରାସ୍ତାଘାଟ ଏତେ ଆଡ଼ାଚୌଡ଼ା, ଚିକ୍‌କଣ ନଥିଲା, ପ୍ରତିଛକରେ ଦପ୍‌ଦପ୍ ଟ୍ରାଫିକ୍ ଲାଇଟ୍ ନଥିଲା କିମ୍ବା ଝିଅ ପିଲାଟିଏ ଟ୍ରାଫିକ୍ ଷ୍ଟାଣ୍ଡରେ ଠିଆ ହୋଇ ଗାଡ଼ି ନିୟନ୍ତ୍ରଣ କରିପାରେ, ଏକଥା ମଧ୍ୟ କାହାରି ଚିନ୍ତାରେ ନଥିଲା ।

ମନ୍ତ୍ରୀଙ୍କ ନିବାସରେ ପହଞ୍ଚିବାପାଇଁ ତାଙ୍କୁ ବେଶ୍ କିଛି ସମୟ ଚାଲିଚାଲି ଆସିବାକୁ ପଡ଼ିଲା ଏବଂ ପେନ୍‌ସନ୍ ମନ୍ତ୍ରୀ କହିଲେ କିଏ, ଆଉ କେଉଁଠାରେ ରହନ୍ତି ସେ ଖବର ଭୁବନେଶ୍ୱରର ଲୋକ ଯେ ଜାଣନ୍ତି ନାହିଁ, ଏକଥା ହିଁ ତାଙ୍କୁ ଅଧିକ ଆଶ୍ଚର୍ଯ୍ୟ କରୁଥିଲା । ବୋଧହୁଏ, ଏହି ଲୋକମାନେ ଖବରକାଗଜ ପଢୁନାହାନ୍ତି । ନଚେତ ଯୋଜନା–ସମନ୍ୱୟ–ମତ୍ସ୍ୟ–ପଶୁପାଳନ ତଥା ପେନ୍‌ସନ୍ ମନ୍ତ୍ରୀ ପ୍ରାଣନାଥ ମହାପାତ୍ରଙ୍କୁ ଜାଣିନଥାନ୍ତେ କେମିତି ? ଯାହାକୁ ପଚାରିଲେ, ଗୋଟିଏ ଉତ୍ତର ମିଳିଲା – ଆଗରେ ଦେଖନ୍ତୁ ।

ଖୋଜି ଖୋଜି ମନ୍ତ୍ରୀ ନିବାସରେ ପହଞ୍ଚି ଯେଉଁ ଅବସ୍ଥା ଦେଖିଲେ, ସେ ନିଜକୁ ବିଶ୍ୱାସ କରିପାରିଲେ ନାହିଁ । ପ୍ରଥମତଃ ପଚାଶ କି ଶହେ ଲୋକ, ଦ୍ୱିତୀୟରେ ସମସ୍ତେ ପ୍ରାୟ ଆତଙ୍କିତ ହୋଇ ଏପଟ ସେପଟ ଖୋଜିବାରେ ବ୍ୟସ୍ତ । ଗୋଟାଏ ବିରାଟ ସାପ ପଶିଯାଇଛି ମନ୍ତ୍ରୀଙ୍କ ଅଗଣା ଭିତରକୁ । ଯେଉଁ ଦୁଇଜଣ ମାଳୀ ପ୍ରଥମ ଏବଂ ଶେଷଥର ସର୍ପଟିକୁ ଦେଖିଥିଲେ, ସେମାନଙ୍କ ମାପରେ ସାପଟି ନିହାତି କମ୍‌ରେ ଛ ରୁ ସାତଫୁଟ ହେବ । ଫୁଲକୁଣ୍ଡ – ଗାମଲା, ଲନ୍ ଅଥବା ତା ପାଖକୁ ଲଗାଯାଇଥିବା କିଛି ଦେଶୀ–ବିଦେଶୀ ଫୁଲଗଛ ଭିତରେ ସାପଟି କେଉଁଠି ଲୁଚିଯାଇଛି । ମନ୍ତ୍ରୀ ମହୋଦୟ ସକାଳୁ ସକାଳୁ ମୁଖ୍ୟମନ୍ତ୍ରୀଙ୍କ ଡାକରା ପାଇ ବସିବା ଜାଗାରୁ ଉଠିଗଲେ । ଜଣେ

ଦୁଇଜଣ ଗୁହାରିଆଙ୍କର ପାଳି ପଡ଼ିଛି କି ନାହିଁ, ଡାକରା ଆସିଗଲା – ଯେଉଁ ସ୍ଥାନରେ ଯେମିତି ଅବସ୍ଥାରେ ଅଛନ୍ତି ତୁରନ୍ତ ଆସନ୍ତୁ । ଭାଗ୍ୟ ଭଲ, ନିତ୍ୟକର୍ମ ସାରି ମନ୍ତ୍ରୀ ମହୋଦୟ ଦରବାର କାର୍ଯ୍ୟ ଆରମ୍ଭ କରୁଥିଲେ । ରଘୁମାଷ୍ଟ୍ରେ ପହଂଚିବା ବେଳକୁ ମନ୍ତ୍ରୀ ବାହାରି ଗଲେଣି ଏବଂ ସାପଖୋଜା ଆରମ୍ଭ ହୋଇଗଲାଣି ।

ମାଷ୍ଟ୍ରେ ପଞ୍ଜାବି ଉପର ପକେଟରୁ ଦରଖାସ୍ତ ବାହାରି କରି ପୁଣିଥରେ ପଢ଼ିଲେ । କାଳେ କେଉଁଠି କିଛି ଛାଡ଼ି ଯାଇଥିବେ କିମ୍ବା ବର୍ଣ୍ଣାଶୁଦ୍ଧି ରହିଯାଇଥିବ । ମନ୍ତ୍ରୀଙ୍କ ହାତକୁ ଯିବା ପୂର୍ବରୁ ଦରଖାସ୍ତଟି ତ୍ରୁଟିଶୂନ୍ୟ ହେବା ଦରକାର । ଡାହାଣ ପଟକୁ ଢ଼ଳିଢ଼ଳି ଅକ୍ଷରଗୁଡ଼ିକ ଶୃଙ୍ଖଳିତ ଛାତ୍ରଛାତ୍ରୀ ପରି ବସିଥାନ୍ତି ସମ୍ପୂର୍ଣ୍ଣ ଚାରିପୃଷ୍ଠା । ଉଣେଇଁଶ ପଞ୍ଚଷଠି ରୁ ଦୁଇହଜାର ପାଞ୍ଚ । ଚାଳିଶବର୍ଷର ଶିକ୍ଷକତା, ଅନୁଭବ, ସାମାଜିକ ଦାୟିତ୍ୱବୋଧ ଏବଂ ସର୍ବୋପରି ଅବସର ପରେ ପେନ୍‌ସନ୍ କାଗଜ ଠିକ୍‌ଠାକ୍ କରିବାପାଇଁ ତିନିବର୍ଷର ଅସଫଳ ଧାଁ ଧପଡ଼ର ନିର୍ଯାସ ହେଉଛି ଏହି ଚାରିପୃଷ୍ଠା କାଗଜ ।

'ସାପ ପଶିଲା କେମିତି ? କେଉଁବାଟେ ?' ଜନୈକ ଦର୍ଶନାଭିଳାଷୀ ଅନ୍ୟଜଣକୁ ପ୍ରଶ୍ନ କଲେ । 'ଗେଟ୍‌ରେ ସିକ୍ୟୁରିଟି, ଚାରିପଟେ ମେଘନାଦ ପାଚେରି, ତା ଉପରେ ଲୁହାକଣ୍ଟା ବାଡ଼, କୁକୁର ଛୁଆଟିଏ ତ ପଶିବା ମୁସ୍କିଲ, ଛ'ଫୁଟିଆ ସାପ ପଶିଲା କେମିତି ?'

'ସାପ କଥା ଛାଡ଼, ଭୁବନେଶ୍ୱରରେ ପରା ହାତୀ ପଶିଲେଣି !' ମିଳିଲା ଉତ୍ତର । ଏବଂ, କଥାକୁ ଆଉ ଟିକେ ବଢ଼େଇ ଭଦ୍ର ବ୍ୟକ୍ତି କହିଲେ – 'ସେମାନେ କ'ଣ ପରମିସନ୍, ଆପଏଣ୍ଟମେଣ୍ଟ ନେଇ ଆସିଥାନ୍ତେ ବୋଲି ଆପଣ ଭାବୁଛନ୍ତି ?' ଗମ୍ଭୀର ପରିବେଶ ସାମାନ୍ୟ ହାଲକା ଲାଗିଲା ସତ, କିନ୍ତୁ ଆଶ୍ୱସ୍ତ ହୋଇପାରିଲେନି କେହି । ତ୍ରସ୍ତ ଆଖିଗୁଡ଼ିକ ଏଣେତେଣେ କେବଳ ଖୋଜିବାରେ ବ୍ୟସ୍ତ । କିଛି ଚାଲାକ୍ ବ୍ୟକ୍ତି ନିଜ ଜୋତା ତଳ ପାଖରେ ରଖିଥିବା ହାଣ୍ଡବ୍ୟାଗ୍, ବସିଥିବା ଚୌକି ଚାରିପଟ ଝଡ଼ାଝଡ଼ି କରି ଦୀର୍ଘଶ୍ୱାସ୍ ନେଲେ ।

ରଘୁମାଷ୍ଟ୍ରେ ବଉଳ ଗଛ ଚାରିପଟେ ତିଆରି ସିମେଣ୍ଟ ବେଞ୍ଚ ଉପରେ ଚକାଆସନରେ ବସି ଦରଖାସ୍ତର ପ୍ରତିଟି ଧାଡ଼ି, ଶବ୍ଦ, ଅକ୍ଷରକୁ ପରଖୁଥାନ୍ତି ଏବଂ ଦେଖୁଥାନ୍ତି ଚାଳିଶ ବର୍ଷର ଚାକିରୀ କାଳ, ଦୁଷ୍ଟପିଲାଟିଏ ମାଡ଼ ଭୟରେ ସ୍କୁଲରୁ ବସ୍ତାନିଧରି ତାଙ୍କ ଆଖିକୁ ଫାଙ୍କି ଖସିଯିବା ଭଳି କେମିତି ଖସିଗଲା ତାଙ୍କ ହାତରୁ ।

ସରକାରଙ୍କର ନୂଆ ନିୟମ ହେଲାଣି । ଯେଉଁଦିନ ଅବସର ଗ୍ରହଣ, ସେହିଦିନ ପେନ୍‌ସନ୍ କାଗଜ ସରକାର ଧରେଇଦେବେ । ଏଭଳି ଖବର, ଫଟୋ, ବେଳେବେଳେ

ଖବରକାଗଜରେ ଆସେ । ରଘୁମାଷ୍ଟ୍ରେ ଦେଖିଛନ୍ତି ମଧ୍ୟ । କିନ୍ତୁ, ତାଙ୍କପାଇଁ ସବୁ ଯେମିତି ଭୁଲଭାଲ୍ ହୋଇଯାଇଛି, ହାତଛଡ଼ା ହୋଇଯାଉଛି । ସବୁ ଦୋଷ ତାଙ୍କ ମୁଣ୍ଡରେ ଲଦା ହେଉଛି – ଏମିତି ଏମିତି ତିନିବର୍ଷ ବିତିଗଲାଣି, କିନ୍ତୁ ପେନ୍‌ସନ୍ ମିଳୁନାହିଁ ।

ରଘୁମାଷ୍ଟ୍ରେ ଜାଣିଛନ୍ତି ଅସୁବିଧା କେଉଁଠି । ଅଥଚ ସମସ୍ୟା ସମାଧାନ କରିବାର ସାଧ୍ୟ ତାଙ୍କର ନାହିଁ । ଅବସର ଗ୍ରହଣ କରିବା ପୂର୍ବରୁ ସରକାରଙ୍କ ଠାରୁ ଆସିଥିବା ଅର୍ଥର ସଦ୍‌ବିନିଯୋଗ ହୋଇଛି ବୋଲି ଯେଉଁ ଲେଖାଟି ଦରକାର, ମାଷ୍ଟ୍ରେ ତାହା ଦେଇନାହାନ୍ତି । ତାଙ୍କ ଉପରେ ଦୁଇଲକ୍ଷ ଟଙ୍କାର ହିସାବ ବାକି ଅଛି । ସ୍କୁଲ ଘର ତିଆରିପାଇଁ ସରକାର ଯୋଗାଇଦେଲେ ଟଙ୍କା । ସରକାର ନିୟମ କଲେ – ପ୍ରଧାନ ଶିକ୍ଷକଙ୍କୁ ଅର୍ଥ ଦିଆଯିବ । କଣ୍ଟ୍ରାକ୍ଟର୍ କାମ କଲେ ଅକାଳରେ ଘର ଭୁଷୁଡ଼ି ପଡୁଛି । ତେଣୁ ଠିକାଦାରଙ୍କୁ ଏଥିରେ ନ ପୂରେଇ ସରକାର ପ୍ରଧାନଶିକ୍ଷକଙ୍କୁ ଦାୟିତ୍ୱ ଦେଲେ । ଡ୍ରାଫ୍ଟ ଆସିଗଲା ମାଷ୍ଟ୍ରଙ୍କ ନାଁରେ । ମାଷ୍ଟ୍ରେ ଗ୍ରହଣକଲେ ମଧ୍ୟ । ଏଣୁ ନିୟମତଃ, ଅର୍ଥ କେମିତି ଖର୍ଚ୍ଚ ହେଲା ତା'ର ହିସାବ ସେହି ମାଷ୍ଟ୍ରେ ହିଁ ଦେବାର କଥା, ଯାହାକୁ ରଘୁମାଷ୍ଟ୍ରେ ଏ ପର୍ଯ୍ୟନ୍ତ ଦେଇନାହାନ୍ତି । କଥା ଏଇଠି ଅଟକି ଯାଇନି । ସରକାରଙ୍କ ପାଖରେ ଦରଖାସ୍ତ ପହଞ୍ଚିଛି, ଲଖନପୁର ପ୍ରାଥମିକ ବିଦ୍ୟାଳୟ ପ୍ରଧାନଶିକ୍ଷକ ରଘୁନାଥ ଦାସ, ବିଦ୍ୟାଳୟ ଗୃହ ନିର୍ମାଣପାଇଁ ଆସିଥିବା ଟଙ୍କାରେ ତାଙ୍କ ଝିଅ ବାହାଘର କରିଛନ୍ତି । ସ୍କୁଲଘର ତିଆରି ହୋଇନାହିଁ, ସର୍ବସାଧାରଣ ଅର୍ଥ ତୋଷରପାତରେ ତାଙ୍କୁ ତୁରନ୍ତ ଗିରଫ୍ କରାଯାଉ ।

ରଘୁମାଷ୍ଟ୍ରେ ଜଣେ ସଚ୍ଚୋଟ, ନିଷ୍ଠାପର, ସ୍ୱାଭିମାନୀ, କର୍ତ୍ତବ୍ୟନିଷ୍ଠ ଶିକ୍ଷକ ଥିଲେ ବୋଲି ଅବସରକାଳୀନ ବିଦାୟ ସଭାରେ ଉପସ୍ଥିତ ସ୍କୁଲ ପରିଚାଳନା କମିଟିର ସଭ୍ୟ-ସଭ୍ୟା, ଗ୍ରାମବାସୀ, ଅଭିଭାବକ, ଛାତ୍ର-ଛାତ୍ରୀବୃନ୍ଦ ସମସ୍ତେ ଭାବବିହ୍ୱଳ ହୋଇ ଘୋଷଣା କରିଛନ୍ତି । ସ୍ମୃତିଚାରଣ କଲାବେଳେ କିଛି ଅଭିଭାବକ ଏକଥା ମଧ୍ୟ ଉଲ୍ଲେଖ କଲେ ଯେ – ଯଦି ରଘୁମାଷ୍ଟ୍ରଙ୍କ ଛାଟ ତାଙ୍କ ପିଠିରେ ବାଜି ନଥାନ୍ତା, ସେମାନେ ଆଜି ଅମଣିଷ ହୋଇ ଯାଇଥା'ନ୍ତେ ।

ରଘୁମାଷ୍ଟ୍ରେ କେବଳ ଶିକ୍ଷକ ନଥିଲେ । ସେ ଥିଲେ ଜଣେ ଭଲ ଗଣକ । ଜ୍ୟୋତିଷ ଶାସ୍ତ୍ରରେ ତାଙ୍କର ମଧ୍ୟ ଦଖଲ ଥିଲା । ନବଜାତକର କୋଷ୍ଠି ତିଆରି ଠାରୁ ଆରମ୍ଭ କରି ଶୁଭବିବାହପାଇଁ ଜାତକ-ମେଳକ ସେ ଭଲଭାବେ କରିପାରୁଥିବାର ଖ୍ୟାତି କେବଳ ସେ ଗାଁରେ ନୁହେଁ, ବରଂ ଆଖପାଖ ପାଞ୍ଚ ଛ'ଟି ପଞ୍ଚାୟତରେ ଅଛି ।

ଲଖନପୁର ସ୍କୁଲ ହତା ଭିତରକୁ ପଶିଗଲେ ପେଟ ପୂରିଯିବ । ପରିଷ୍କାର ପରିଚ୍ଛନ୍ନ । ଶୁଖିଲା ପତ୍ରଟିଏ ମଧ୍ୟ ଆପଣ ଗଛତଳେ ଦେଖିବେ ନାହିଁ । ଫଳ ଫୁଲ ଭରା ଯେଉଁ ବଗିଚାଟି ହତା ଭିତରେ ଅଛି, ତା ଉପରେ ଗାଁର ଅନେକ ଲୋକଙ୍କ ଆଖି । ରଘୁମାଷ୍ଟ୍ରେ ନାହାନ୍ତି ବୋଲି କୌଣସି ସୂତ୍ରରୁ ଯଦି ସେମାନେ ଜାଣନ୍ତି, କୌଶଳ କରି କିଛି ଅମୃତଭଣ୍ଡା, କଦଳୀ ଫେଣାଏ, କିଛି ନହେଲେ ଫୁଲ ଚାଙ୍ଗୁଡ଼ିଏ ସେମାନେ ଅବଶ୍ୟ ତୋଳିନେବେ ।

ମାଷ୍ଟ୍ରଙ୍କର ପାଠ ପଢ଼ାବି ସେମିତି । ଯେତେ ଦୁଷ୍ଟପିଲା ହେଉ, ମାଷ୍ଟ୍ରେ ଯଦି 'ଧୀରେ ଘେନ କାନନରେ କୃଷ୍ଣ ବିଳମ୍ବିତ' ଆବୃତ୍ତି କରୁଛନ୍ତି, ସେ କାନଢ଼େରି ଆଖି ତରାଟି ଅନେଇବ । କେବଳ ପିଲାନୁହନ୍ତି, ରାସ୍ତାରେ ଯାଉଥିବା ବାଟୋଇ ଧିମେଇ ଯାଏ ଖାସ ମାଷ୍ଟ୍ରଙ୍କର ଆବୃତ୍ତି ଶୁଣିବାପାଇଁ । ଲୋକମାନେ ଜାଣନ୍ତି ଦୁଇଶ/ତିନିଶ ଲୋକଙ୍କୁ ବିନା ମାଇକ୍‌ରେ ରଘୁମାଷ୍ଟ୍ରେ ଯେ କୌଣସି ବିଷୟରେ ଦୁଇଘଣ୍ଟା ଅତି ସୁନ୍ଦର ଭାବେ ସମସ୍ତେ ଶୁଣିବା ଭଳି ସ୍ୱରରେ ବୁଝାଇପାରିବେ । ଖାସ୍ ସେଥିପାଇଁ ପଞ୍ଚାୟତ ପଡ଼ିଆରେ ଅନୁଷ୍ଠିତ ମ୍ୟାଲେରିଆ ନିରାକରଣ, କୁଷ୍ଠ ନିବାରଣ, ପରିବାର ନିୟୋଜନ ସଭାକୁ ବକ୍ତା ଭାବେ ରଘୁମାଷ୍ଟ୍ରେଙ୍କୁ ଆଗ ଖୋଜାପଡ଼େ ।

ରଘୁମାଷ୍ଟ୍ରଙ୍କର ଏତେ ସବୁ ଗୁଣ ମାତ୍ର କେତେଟା ଦିନରେ ସିଲଟରେ ଲେଖା ଅକ୍ଷର ଭଳି ପୋଛି ହୋଇଗଲା, ଯେତେବେଳେ ପ୍ରଚାରିତ ହେଲା – ସରକାରୀ ଟଙ୍କା ଆତ୍ମସାତ୍ କରିଥିବାରୁ ରଘୁମାଷ୍ଟ୍ରଙ୍କୁ ପେନ୍‌ସନ୍ ମିଳିଲା ନାହିଁ । ଏବେ ସେ ବନ୍ଧା ହୋଇ ଜେଲ୍ ଯିବେ ।'

ଦରଖାସ୍ତକୁ ଦୁଇପରସ୍ତ ପଢ଼ି ସାରିଲେଣି ରଘୁମାଷ୍ଟ୍ରେ, ସେଇ ଗଛମୂଳେ, ଚକା ଆସନରେ । ମନରେ ତଥାପି ଦ୍ୱନ୍ଦ୍ୱ, ଗ୍ଲାନି, ଅଭିମାନ । ପିଲାଗୁଡ଼ାକ ଯଦି ଭୁଲ ବଶତଃ କିଛି କରିଦେଲେ ତେବେ ସୁଧାରିଲ ନାହିଁ କାହିଁକି? ତୁମ ନାଁରେ ଆଜି ବାଧ ହୋଇ ମନ୍ତ୍ରୀଙ୍କୁ ଲେଖିବାକୁ ପଡ଼ିଲା ।

ସୁବ୍ରତ ଯେତେହେଲେ ବି ପୁଅ ଭଳି । ସ୍କୁଲ କମିଟିର ସଭାପତି ହେଲେ ମଧ୍ୟ ସେ ତାଙ୍କର ଛାତ୍ର, ତାଙ୍କୁ ମାନେ । ଅଥବ, ସେ ଏମିତି ଗୋଟାଏ ବଦବାସୀ କରିବ, ଯାହା ଫଳରେ ସାର୍ ପେନ୍‌ସନ୍ ପାଇବେ ନାହିଁ, ହଇରାଣ ହେବେ, ଏ କଥା ସେ ବୁଝିଲାନି ।

ସୁବ୍ରତ ତାଙ୍କରି ଛାତ୍ର, ଗାଁ ହିସାବରେ ପୁତୁରା । ମାଟ୍ରିକ ଫେଲ୍ ହେବାପରେ ଏଣେତେଣେ ବୁଲୁଥିଲା । ଛୋଟମୋଟ ଠିକାଦାରୀ ବି କରୁଥିଲା । ଯେହେତୁ ଚଳନ୍ତି ଏମ.ଏଲ୍.ଏ.ଙ୍କ ସହ ତା'ର ଭଲ ସମ୍ପର୍କ, ତେଣୁ ବିଧାୟକ ପାଣ୍ଠି ଖର୍ଚ୍ଚ କରିବା ପାଇଁ

ବେଶ୍ କିଛି କ୍ୱାମ ବରାଦ ବି ପାଇଲା । ମଟର ସାଇକେଲ ଚଢ଼ିଲା । ମେଢ଼ିଆ ଓରଫ୍ ସୁବ୍ରତର ଆଉ ଗୋଟିଏ ପରିଚୟ ବି ଅଛି । ନିଜର ଗୁଳୁରାଣ ମେଣ୍ଟାଇବାପାଇଁ ସେ ସାମୟିକ ଭାବେ ଆଖପାଖରେ ଚୋରି ବି କରୁଥିଲା, କିନ୍ତୁ ଧରା ପଡୁନଥିଲା - ଧରା ପଡୁଥିଲେ ତା'ର ସହଯୋଗୀ । ପ୍ରମାଣ ନ ମିଳିଲେ ସୁଦ୍ଧା, ତା'ର ଚାଲିଚଳଣି ଥାଟବାଟରୁ ଗାଁ ଲୋକେ ଅନୁମାନ କରନ୍ତି, ସେ ଚୋରି ହିଁ କରୁଛି; ନହେଲେ ଚାକିରି ବାକିରି କରିଥିବା, ଥିଲାବାଲାଙ୍କ ଘରେ ମାସରେ ଦୁଇ ତିନିଥର ମାଉଁସ ତରକାରୀ ହେବା କଷ୍ଟ ହେଉଥିବା ବେଳେ, ମେଢ଼ିଆ ଘରେ ରୋଜ ମାଛ-ମାଂସ । ତା ସ୍ତ୍ରୀ ପିନ୍ଧେ ଖଣ୍ଡୁଆ ପାଟ, ବେକରେ ଚାରିପରସ୍ତିଆ ହାର । ପୁଣି କି ପ୍ରକାର ସେଣ୍ଟ ପକାଏ ଯେ, ମହ ମହ ବାସୁଥାଏ ସବୁବେଳେ । କୋଉଠୁ ଆସେ ଏସବୁ ? ତେଣୁ ବାଡ଼ିରୁ କଦଳୀ କାନ୍ଦି, କଖାରୁ, ଘର କାମପାଇଁ ଆସିଥିବା ଲୁହାରଡ଼, ସିମେଣ୍ଟ; ଗୁହାଳୁ ଛେଳି, ସାଇକେଲ ଅନ୍ତର୍ଦ୍ଧାନ ହେବା ସେ ଅଞ୍ଚଳରେ ସାଧାରଣ କଥା ।

ଦିନେ ସ୍କୁଲରେ ପହଞ୍ଚି ମେଢ଼ିଆ ରଘୁମାଷ୍ଟ୍ରଙ୍କୁ ନିଜର ଇଚ୍ଛା ପ୍ରକାଶକଲା । 'ଦାଦା ମୁଁ ସ୍କୁଲ କମିଟିର ସଭାପତି ହେବି ।'

ରଘୁମାଷ୍ଟ୍ରେ ଘଡ଼ିଏ ଚାହିଁଲେ - ମେଢ଼ିଆକୁ ଏବଂ ତା ସାଙ୍ଗରେ ଆସିଥିବା ଆଉ ଚାରିଜଣ ଯୁବକଙ୍କୁ । ମାଷ୍ଟ୍ରେ ସମସ୍ତଙ୍କୁ ଚିହ୍ନନ୍ତି, ସେମାନଙ୍କ ଗୁଣଗ୍ରାମ ବି ଜାଣନ୍ତି । କିନ୍ତୁ ସେ ବୁଝିପାରିଲେ ନାହିଁ, ହଠାତ ଶିକ୍ଷା ପ୍ରସାରପାଇଁ ମେଢ଼ିଆର ମନବଳିଲା କାହିଁକି? ତା'ର କାର୍ଯ୍ୟକଳାପ ତଥା ମନୋଭାବରେ ବିଶେଷ କିଛି ପରିବର୍ତ୍ତନ ତ ସେ ଲକ୍ଷ୍ୟ କରିନାହାନ୍ତି ଏହା ଭିତରେ!

'ମୋର ପୁତୁରା ପଢୁଛି, ତେଣୁ ମୁଁ ନିଶ୍ଚିତ ଭାବେ ଅଭିଭାବକ । ଆସନ୍ତା ମିଟିଂରେ ମୁଁ ନିଶ୍ଚୟ ସଭାପତି ଭାବେ ନିର୍ବାଚିତ ହେବି ।' ମେଢ଼ିଆ ମାଷ୍ଟ୍ରଙ୍କର ନୀରବତାକୁ ଲକ୍ଷ୍ୟ କରି ସନ୍ଦେହ ଦୂରକଲା ଏବଂ ଯିବାବେଳେ ଆଉ ଏକ ରହସ୍ୟ ଉନ୍ମୋଚନ କଲା 'ପାଣ୍ଡୁ ଭାଇ ଚାହୁଁଛନ୍ତି, ନହେଲେ ମୋର ଏସବୁରେ ଆଗ୍ରହ ନଥିଲା । ତାଙ୍କ କଥା ତ ମୁଁ ଭାଙ୍ଗି ପାରିବିନି ।'

ରଘୁମାଷ୍ଟ୍ରଙ୍କର ହଁ, ନାହିଁ ର କିଛି ମୂଲ୍ୟ ନଥିଲା । ସ୍ଥାନୀୟ ବିଧାୟକ ପ୍ରାଣନାଥ ବାବୁ ଯଦି ଏକଥା ଚାହୁଁଛନ୍ତି, ତେବେ ତାଙ୍କର ଏଥିରେ କହିବାର କିଛି ନାହିଁ ।

କହିବା ନିଷ୍ପ୍ରୟୋଜନ, ନିର୍ଦ୍ଧାରିତ ସମୟରେ, ସୁବ୍ରତ ମହାନ୍ତି ଲଖନପୁର ପ୍ରାଥମିକ ବିଦ୍ୟାଳୟ ପରିଚାଳନା କମିଟିର ସଭାପତି ନିର୍ବାଚିତ ହେଲା ଏବଂ ତା'ପ୍ରତି ଅକୁଣ୍ଠ ସମର୍ଥନ ଜ୍ଞାପନ କରିଥିବାରୁ ଗ୍ରାମବାସୀଙ୍କୁ ଏକ ଭୋଜିରେ ସେ ଆପ୍ୟାୟିତ କଲା । ଭୋଜିଖାଇ ଗାଁ ଲୋକେ 'ମେଢ଼ିଆ ଭଳି ସୁଧାର, ପରିଶ୍ରମୀ, ଯୁବନେତା

ଆମ ଗାଁର ଭବିଷ୍ୟତ' ବୋଲି ମନ୍ତବ୍ୟ ଦେଲେ । ପ୍ରାୟ ଏକମାସ ପରେ ସଭାପତି ସୁବ୍ରତ ନିଜର ଶିକ୍ଷାବିକାଶ ସମ୍ବନ୍ଧୀୟ ଯୋଜନା ପ୍ରଧାନଶିକ୍ଷକଙ୍କୁ ଜଣାଇଲେ । 'ପ୍ରାଣଭାଇଙ୍କୁ କହି ସ୍କୁଲପାଇଁ ଦୁଇଲକ୍ଷ ଟଙ୍କା ସାଙ୍କସନ୍ କରିଛି । ଆଗପଟକୁ ଦୁଇ ବଖରା ଘର ତିଆରି ହବ । ଆପଣଙ୍କ ନାଁରେ ଅର୍ଡର୍ ଆସିବ ଆର ସପ୍ତାହରେ ।'

ରଘୁମାଷ୍ଟ୍ରଙ୍କ ଓଠରୁ ହସ ଟେନାଏ ଖସିଗଲା । ମେଢ଼ିଆ ଯେ ପାରିବାର ପିଲା, ସେଥିରେ ଆଉ ସନ୍ଦେହ ରହିଲା ନାହିଁ । ସ୍କୁଲପାଇଁ ଘରଟିଏ ନିହାତି ଦରକାର ଥିଲା । ପୁରୁଣା ଟାଇଲ୍ ଛପର ଭାଙ୍ଗିଗଲାଣି । ବର୍ଷାଦିନେ ତ ଅବସ୍ଥା ଅସମ୍ଭାଳ । ଯା'ହଉ ଗୋଟାଏ ବଡ଼ ଚିନ୍ତାଗଲା । ଆଶୀର୍ବାଦ ଦେବାପାଇଁ ମେଢ଼ିଆର ପିଠି ଥାପୁଡ଼େଇ କହିଲେ - ସାବାସ୍ । ତା'ପରେ ମେଢ଼ିଆ ଦାଦାଙ୍କୁ ଦୃଢ଼ ପ୍ରତିଶ୍ରୁତି ଦେଲା । ଆପଣ ବିଲ୍‌କୁଲ୍ ଚିନ୍ତା କରନ୍ତୁ ନାହିଁ, ଆପଣ ବସିବେ, କାମ ହବ । ଚାରିମାସରେ ଘର କାମ ସରିବ ।

ରଘୁମାଷ୍ଟ୍ରେ ଗଦଗଦ ହୋଇପଡ଼ିଲେ । ମେଢ଼ିଆ କଥାର ଗୂଢ଼ ରହସ୍ୟ ତାଙ୍କ ସରଳିଆ ମୁଣ୍ଡରେ ପଶିଲା ନାହିଁ । ତାଙ୍କୁ ଖାଲି ଦିଶିଲା ଦୁଇ ବଖୁରିଆ କୋଠାଘର, ତା ଭିତରେ କିଚିରି ମିଚିରି ଶବ୍ଦକରି ଡେଇଁ ବୁଲୁଥିବା ପିଲାଙ୍କର ସରଳ, ନିଷ୍ପାପ ଚେହେରା ।

ଭୂମିପୂଜା ଉତ୍ସବ ସଭାପତିଙ୍କ ପୌରୋହିତ୍ୟରେ ଅତି ବର୍ଣ୍ଣାଢ଼୍ୟ ଭାବେ ଅନୁଷ୍ଠିତ ହେଲା । ରଘୁମାଷ୍ଟ୍ରେ ପିଲାମାନଙ୍କୁ ଆବାହନୀ ସଂଗୀତ ଗାଇବାପାଇଁ ପ୍ରାୟ ଏକ ସପ୍ତାହ ମଧ୍ୟରେ ପ୍ରସ୍ତୁତ କରିଦେଲେ । ମାନ୍ୟବର ବିଧାୟକଙ୍କ କରକମଳରେ ଫଳକରୁ ପର୍ଦ୍ଦା ଉଠିଲା । କରତାଳିରେ ଉଚ୍ଛୁଳି ପଡ଼ିଲା ସଭାସ୍ଥଳ । ଫଳକରେ ସର୍ବାଗ୍ରେ ବିଧାୟକ, ତା ତଳକୁ ସଭାପତି, ତାଙ୍କ ତଳକୁ ସର୍ବଶିକ୍ଷା ସଂଯୋଜକ, ତାଙ୍କ ତଳକୁ ପଞ୍ଚାୟତ ସମିତି ଅଧ୍ୟକ୍ଷ, ତାଙ୍କ ତଳକୁ ମାନ୍ୟବର ସରପଞ୍ଚ ଏବଂ ସର୍ବଶେଷରେ ପ୍ରଧାନ ଶିକ୍ଷକଙ୍କ ନାମ ଅତି ସୁନ୍ଦର ସୁସ୍ପଷ୍ଟ ଭାବେ ଖୋଦିତ ହୋଇଥିଲା । ଧଳାମାର୍ବଲକୁ କଳା ଅକ୍ଷର, ଅତି ସୁନ୍ଦର ।

ଏକ କ୍ଷୁଦ୍ର ପରିବେଶରେ ଅନୁଷ୍ଠିତ ସଭାଟିର ଉଦ୍ଦେଶ୍ୟ ଯେ ଏତେ ବ୍ୟାପକ, ଏକଥା ଉପସ୍ଥିତ ଭଦ୍ରମଣ୍ଡଳୀ ସମେତ ସ୍ୱୟଂ ପ୍ରଧାନଶିକ୍ଷକ ମଧ୍ୟ ଅଜ୍ଞ ଥିଲେ । ଚଳନ୍ତି ବିଧାୟକ ଗତ ବର୍ଷ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟ, ତା ପୂର୍ବବର୍ଷ ଟରଣ୍ଟୋ ଏବଂ ହାଲି ଶାନ୍ତି ନିକେତନ ଭଳି ସମ୍ଭ୍ରାନ୍ତ ବିଶ୍ୱବିଦ୍ୟାଳୟ ପରିଦର୍ଶନରେ ଯାଇଥିବା 'ରାଜ୍ୟ ଶିକ୍ଷା ବିକାଶ ଅନୁସନ୍ଧାନ' ଦଳର ଯେ ଜଣେ ସଦସ୍ୟ ଥିଲେ, ଏକଥା ଉପସ୍ଥିତ କେତେଜଣ ଦର୍ଶକ ଶ୍ରୋତା ଜାଣିଥିଲେ? ଏପରିକି ଶିକ୍ଷା କ୍ଷେତ୍ରରେ ଉଲ୍ଲେଖନୀୟ

ଅବଦାନପାଇଁ ଅଷ୍ଟ୍ରେଲିଆର ଏକ ବିଶ୍ୱବିଦ୍ୟାଳୟ ତାଙ୍କୁ ଡି.ଲିଟ୍. ଉପାଧି ପ୍ରଦାନ କରିବାପାଇଁ ବିନମ୍ର ଅନୁରୋଧ କରୁଛି ଦୀର୍ଘ ଦୁଇ ବର୍ଷ ହେଲା, ଏଭଳି ଗର୍ବ ଏବଂ ଗୌରବର କଥାକୁ ସ୍ୱୟଂ ବିଧାୟକ ଯେ ଏ ପର୍ଯ୍ୟନ୍ତ ନିଜ ଭିତରେ ଲୁଚାଇ ରଖିଥିଲେ, ଏକଥା କିଏ ଜାଣିଥିଲା!

ମାନ୍ୟବର ବିଧାୟକ ତାଙ୍କ ଭାଷଣରେ ପିଲାମାନଙ୍କୁ ଉତ୍ସାହିତ କରିବାପାଇଁ ଦେଢ଼ଘଣ୍ଟାଧିକ ଭାଷଣର ଶେଷରେ ଯେଉଁ ତଥ୍ୟଟି ଉପସ୍ଥାପନ କଲେ, ତାହା ଉପସ୍ଥିତ ଜନତାଙ୍କର ଆଖିକୁ ବିସ୍ଫୋରିତ କଲା ଯେତିକି, ସେମାନଙ୍କର ଅଜ୍ଞତାପାଇଁ ଲଜ୍ଜିତ କଲା ତାଠୁଁ ଅଧିକ । ବିଧାୟକ କହିଲେ – 'ଏଇ ମାଟିର ସୁଯୋଗ୍ୟ ସନ୍ତାନ, ଯୁବ ନେତା, ଭବିଷ୍ୟତର କର୍ଣ୍ଣଧାର, ମୋର ସାନଭାଇ ଶ୍ରୀମାନ ସୁବ୍ରତ ଆପଣଙ୍କର ପ୍ରିୟ ମେଢ଼ିଆ ଭାଇ ଇଂରାଜୀ ଭାଷା ସାହିତ୍ୟରେ ଆନ୍ଧ୍ର ବିଶ୍ୱବିଦ୍ୟାଳୟରୁ ସର୍ବୋଚ୍ଚ ଡିଗ୍ରୀ ହାସଲ କରି, ସରକାରୀ ଚାକିରୀକୁ ପଦାଘାତ କରି ଦେଶସେବାକୁ ନିଜ ଜୀବନର ବ୍ରତ ବୋଲି ଗ୍ରହଣ କରିଛନ୍ତି, ସେଥିପାଇଁ ମୁଁ ବ୍ୟକ୍ତିଗତ ଭାବେ ଗର୍ବିତ ।'

ସଭାରେ, ପ୍ରଧାନ ଶିକ୍ଷକଙ୍କର ଏକମାତ୍ର କାର୍ଯ୍ୟଥିଲା, ଧନ୍ୟବାଦ ଅର୍ପଣ ଏବଂ ସେହି କାର୍ଯ୍ୟ ସେ ସମାପନ କଲାବେଳକୁ ମଞ୍ଚରେ ତାଙ୍କ ଛଡ଼ା ମାତ୍ର ଆଉ ଜଣେ ଉପସ୍ଥିତ ଥିଲେ, ସଂଯୋଜକ ମହାଶୟ । ଦର୍ଶକ ମଣ୍ଡଳୀ ମଧ କେବଳ ସ୍କୁଲ ପିଲା, ଟେଣ୍ଟବାଲା, ରୋଷେଇ ବାଲାଙ୍କୁ ଛାଡ଼ିଦେଲେ, ଖାଲି । ବିଶେଷ କାର୍ଯ୍ୟଥିବାରୁ ସଭାଶେଷ ପର୍ଯ୍ୟନ୍ତ ବିଧାୟକ ଉପସ୍ଥିତ ରହିପାରିଲେ ନାହିଁ । ସମସ୍ତଙ୍କୁ ଯୋଡ଼ହସ୍ତ କ୍ଷମାପ୍ରାର୍ଥନା କରି ସେ ଯେମିତି ଉଠିଲେ, ତାଙ୍କ ପଛକୁ ସଭାପତିଙ୍କ ସମେତ ଉପସ୍ଥିତ ଦର୍ଶକ ମଧ ବାହୁଡ଼ିଗଲେ । କିନ୍ତୁ ଯିବାବେଳେ ବିଧାୟକ ରଘୁମାଷ୍ଟ୍ରଙ୍କ କାନରେ ମନ୍ତ୍ରଟିଏ ଫୁଙ୍କି ଦେଇଗଲେ, 'ଏହି ସ୍କୁଲ ଘର କାମଟି ମେଢ଼ିଆ ଆଉ ତା'ର ପିଲାମାନେ କରିବେ ।'

ସାପ ଖୋଜିବା କାମରେ ବ୍ୟସ୍ତଥିବା ମାଳି–ଚପରାସି–ବ୍ୟକ୍ତିଗତ ସହାୟକ ହଠାତ ଚିତ୍କାର କରିଉଠିଲେ – ହେଇ ଗଲା ଗଲା, ସେ ଫୁଲକୁଣ୍ଡ ଭିତରକୁ ପଶିଗଲା । ଉପସ୍ଥିତ ସଜ୍ଜନମାନେ ଫୁଲକୁଣ୍ଡ ଠାରୁ ନିରାପଦ ଦୂରତ୍ୱରେ ରହି ନିଜ ନିଜ ସୁରକ୍ଷା ପ୍ରତି ସଚେତନ ହେଲେ ଏବଂ ପରସ୍ପର ମଧରେ ସର୍ପକେନ୍ଦ୍ରିକ ଆଲୋଚନାରେ ବ୍ୟସ୍ତ ରହିଲେ ।

'ଏଇଟା ନିଶ୍ଚୟ ଢ଼ମଣା ସାପ ।' ଜଣେ ବ୍ୟକ୍ତି ମନ୍ତବ୍ୟ ଦେଲେ । 'ନହେଲେ ଏତେ କ୍ଷିପ୍ର ଗତିରେ କେଉଁ ସାପ ଗତିକରିପାରେ?'

'ଢ଼ମଣା ତ ବିଷହୀନ କିଛି ଲୋକ ତାକୁ ତର୍କାରି କରି ଖାଆନ୍ତି' ଅନ୍ୟ ଜଣେ ଉତ୍ତର ଦେଲେ । ତେବେ ସାପ ତ ସାପ, ତାକୁ ବିଶ୍ୱାସ କ'ଣ? ତା'ଛଡ଼ା ଏମାନେ କ'ଣ ସାପ ଚିହ୍ନିଛନ୍ତି? ଏମାନେ ତ ନିଜ ନିର୍ବାଚନ ମଣ୍ଡଳୀ ଲୋକଙ୍କୁ ଚିହ୍ନୁ ନାହାନ୍ତି, ସାପ ଚିହ୍ନିବେ କ'ଣ? ଏମାନେ ସାପ ଧରାଳି ଶ୍ରୀକାନ୍ତ ମଲ୍ଲିକକୁ ଡାକୁନାହାନ୍ତି କାହିଁକି?' ନହେଲେ ପଟିଆଗୁ କେଳାଙ୍କୁ ଡାକିଲେ ସେମାନେ ଏମିତି ମନ୍ତ୍ର ପଢ଼ିବେ ଯେ, ଢ଼ମଣା ତ ଛାଡ଼, ଅଜଗର, ଅହିରାଜ ମଧ୍ୟ ଲାଞ୍ଜ ହଲେଇ ତାଙ୍କ ପାଖରେ ପହଂଚିଯିବେ । ଥରେ ଆମ ଗାଁରେ ...।'

ବକ୍ତା ତାଙ୍କର ଅଭିଜ୍ଞତାରୁ କିଛି ବାଣ୍ଟିବାକୁ ଚାହୁଁଥିଲେ, କିନ୍ତୁ ଶ୍ରୋତା ମୋବାଇଲ ଧରି ଅତି ଗୋପନୀୟ କଥା ହେବା ପାଇଁ ଖଣ୍ଡେ ଦୂରକୁ ଚାଲିଗଲେ । ରଘୁମାଷ୍ଟ୍ରେ – ଦରଖାସ୍ତର ଦ୍ୱିତୀୟ ପୃଷ୍ଠା ଓଲଟାଇଲେ ।

ଯେଉଁ ଦିନ କାମ ଆରମ୍ଭ ହେବା କଥା, ହୋଇପାରିଲା ନାହିଁ । ମାଷ୍ଟ୍ରେ ଆସି ଦେଖନ୍ତି ତ ଗତକାଲି ପଡ଼ିଥିବା ଦୁଇ ହଜାର ଇଟାରୁ ଅଧେ ନାହିଁ । ବାଲି ଗଦାରୁ ଅଧେ ରାସ୍ତାରେ କେହି ଜଣେ ବିଛେଇ ଦେଇଛି, ଯେମିତିକି ରାସ୍ତା କାମପାଇଁ ଏ ବାଲି ଆସିଥିଲା । ସିମେଣ୍ଟ ଆଜି ସକାଳୁ ଆସିଥାନ୍ତା । ସେ ଦାୟିତ୍ୱ ମିସ୍ତ୍ରୀର । ମୂଲିଆମାନେ ସକାଳୁ ସକାଳୁ ଅଗ୍ରୀମ ଟଙ୍କା ଫେରେଇଦେଲେ, କହିଲେ ଆମର ଅଲଗା କାମ ଅଛି । ମିସ୍ତ୍ରୀର ଦେଖାନାହିଁ, କି ଖବର ନାହିଁ ।

ମାଷ୍ଟ୍ରଙ୍କ ମୁଣ୍ଡରେ ବିଛା କାମୁଡ଼ିଲା । ଏମିତି ଘଟଣା ଘଟିବ ବୋଲି ସେ ସ୍ୱପ୍ନରେ ମଧ୍ୟ ଭାବିନଥିଲେ । ଶୁଭ ମୁହୂର୍ତ୍ତ ଦେଖି, ଶିଳାନ୍ୟାସ ତ ହୋଇଛି, ସେ ନିଜେ ପାଞ୍ଜି ଦେଖି ଶୁଭମୁହୂର୍ତ୍ତ କାଢ଼ିଥିଲେ! ତଥାପି ବିଘ୍ନ! ମୁଣ୍ଡରେ ହାତ ଦେଇ ବସିଥିଲେ ମାଷ୍ଟ୍ରେ । ଗମ୍ଭୀର ମୁଦ୍ରାରେ ପହଂଚିଲେ ସଭାପତି । 'କାମ କାହିଁକି ଆରମ୍ଭ ହେଲାନି?' ସିଧା ପ୍ରଶ୍ନ ।

ମାଷ୍ଟ୍ରେ କିଛି ନକହି ବିକ୍ଷିପ୍ତ ହୋଇଥିବା ବାଲିଗଦା ଏବଂ ଚୋରି ହୋଇଥିବା ଇଟା ସ୍ଥାନକୁ ଚାହିଁଲେ । ଆଖି ଜକେଇ ଆସିଲା ତାଙ୍କର । ଅତି ସହଜ ଭାବୁଥିବା ଗଣିତ ଯେ ଏତେ କଷ୍ଟ ହୋଇପାରେ, ନିଶ୍ଚିତ ମନେଥିବା ନାଁଟି ଠିକ୍ ପରୀକ୍ଷା ବେଳେ ମନେପଡ଼େନା, ପ୍ରଥମ ଶ୍ରେଣୀରେ ପାଶ୍ କରିବାକୁ ଇଚ୍ଛା କରିଥିବା ପିଲାଟି ମଧ୍ୟ ଫେଲ୍ ହୋଇଯାଏ । ଏମିତି ବେଳେବେଳେ ଘଟେ । ଫେଲ ପିଲାଟି ଭଳି ସାଙ୍କୁଡ଼ି ଗଲେ ରଘୁ ମାଷ୍ଟ୍ରେ । ତାଙ୍କ ପାଟିରୁ କଥା ବାହାରିଲା ନାହିଁ ।

ସଭାପତି ବୁଝିପାରିଲେ ଅବସ୍ଥା । ଅଭୟ ଦେଲେ । ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ଏ କାମ ଯିଏ କରିଛି, ତାକୁ ମୁଁ ଦେଖିନେବି । କିନ୍ତୁ ଆପଣ ଗୋଟାଏ ଭୁଲ

କରିଦେଲେ! ମତେ ନ ପଚାରି ଏସବୁ କାମ ଆରମ୍ଭ କରିଦେଲେ! ପାଣ୍ଡୁ ଭାଇ ଆପଣଙ୍କୁ କିଛି କହିନଥିଲେ କି?

ରଘୁମାଷ୍ଟ୍ରେ କି ଉତ୍ତର ଦେବେ ବୁଝିପାରୁ ନଥିଲେ । ବିଧାୟକଙ୍କ କଥାର ମର୍ମ ବୁଝିବାକୁ ସେ ବ୍ୟର୍ଥ ହେଲେ, ନା ନିଜର ଗାଁ ଲୋକ, ପୁତୁରା – ଭଣଜା – ନାତିମାନଙ୍କୁ ବୁଝିବାରେ ତାଙ୍କର ଭୁଲ ରହିଲା, ସେ ବୁଝିପାରୁ ନଥିଲେ ।

'ଏବେ କ'ଣ କରିବା ସୁବ୍ରତ?' । ଅତି ବିନୟ ତଥା ସମର୍ପଣ ଭାବରେ ପ୍ରଶ୍ନ କଲେ ମାଷ୍ଟ୍ରେ । 'କାମ ହେବ । ନିଶ୍ଚୟ ହବ । କୋଉ ମର୍ଦ୍ଦ ଅଛି ସ୍କୁଲ କାମ ବନ୍ଦ କରିଦେବ?' ଗର୍ଜି ଉଠିଲେ ସଭାପତି । 'ଆସନ୍ତା କାଲି ହିଁ କାମ ଆରମ୍ଭ ହବ । ଆମ ପିଲା ଦିନରାତି ଏଠି ଜଗି ରହିବେ, କାମ ହବ ।' ତା ପରେ ସଭାପତି କିଛି ସମୟ ଚୁପ୍ ରହିଲେ । ସେ ଦେଖେଇ ଦେବାକୁ ଚାହୁଁଥିଲେ, ଆଗକାଳର ଆଉ ଏ କାଳର କାମ କରିବାର ଶୈଳୀରେ କେମିତି ପରିବର୍ତ୍ତନ ଆସିଛି । ତାପରେ ଅତି ସନ୍ତର୍ପଣରେ ସେ କହିଲେ – 'ମତେ ପଚାଶ ହଜାର ଦେଇଥାନ୍ତୁ, ମୁଁ ଇଟା, ବାଲି, ରଡ଼ ଆଡ୍‌ଭାନ୍ସ ଦେଇଦେବି ।'

ଏବଂ, ତା'ପର ଦିନ କାମ ଆରମ୍ଭ ହେଲା ଧୁମଧାମ୍‌ରେ । ଯେଉଁ ମୁଲିଆ–ମିସ୍ତ୍ରୀ ନିରୁଦ୍ଦିଷ୍ଟ ଥିଲେ, ଯେଉଁ ଇଟା ମାନେ ଅଦୃଶ୍ୟ ଥିଲେ, ସମସ୍ତେ ବଢ଼େଇଲେ ସହଯୋଗର ହାତ । ତିନି ଦିନ ଭିତରେ ତିନିଫୁଟ ଉଠିଗଲା ।

'ଦାଦା ଆଉ ପଚାଶ ହଜାର ଦେଇଥା, ସିମେଣ୍ଟ ବାଲାକୁ ଆଡଭାନ୍ସ ଦେଲେ, ଆଜିକାଲି ଯେମିତି ଦର ବଢୁଛି, ସେ ପୁରୁଣା ରେଟ୍‌ରେ ଆମକୁ ଦବ ।' ଦାଦା ବଢ଼େଇଲେ ଆଉ ପଚାଶ । ଯଦିଓ ସେ ଜାଣିଥିଲେ, କାମ ଦଶ ହଜାର ଟଙ୍କାର ମଧ ହୋଇନାହିଁ ।

ଏହାପରେ ଆସିଲା ବଡ଼ବିପତ୍ତି । ବୋଧହୁଏ ଶନିଙ୍କ ଦୃଷ୍ଟି ପଡ଼ିଲା ଘର ଉପରେ । କ'ଣ ଅସୁବିଧା ହେଲା, କାହାର କୁଦୃଷ୍ଟି ପଡ଼ିଲା ଯେ, ଘର ଉଚ୍ଚତା ଆଉ ବଢ଼ିଲା ନାହିଁ, ସେଇ ତିନିଫୁଟରେ ସ୍ଥିର ହୋଇ ରହିଗଲା ।' ମାଷ୍ଟ୍ରଙ୍କ ମନରେ ଛନକା ପସିଲା । ଏମିତି ଗଳିରେ ପଶିଗଲେ ଯେ, ନା ଆଗକୁ ନା ପଛକୁ, କୁଆଡ଼େ ଯିବାକୁ ବାଟ ନାହିଁ । ଯଦି ନିଜେ କାମ ଆରମ୍ଭ କରିବେ, ତେବେ ଇଟା ବାଲିମାନେ ନିରୁଦ୍ଦିଷ୍ଟ ହେବେ ନିଶ୍ଚୟ । ଯଦି ନକରିବେ, ଉପରୁ ବିଭାଗୀୟ କାର୍ଯ୍ୟାନୁଷ୍ଠାନ – ଟଙ୍କା ନେଲ, କାହିଁକି କାମ କଲ ନାହିଁ ?

କିଛି ବନ୍ଧୁ ପରାମର୍ଶ ଦେଲେ ଏ ବିଷୟରେ ଉପରିସ୍ଥ ଅଧିକାରୀଙ୍କୁ ଜଣାଅ । ସତ କଥା କୁହ । 'ସତ୍ୟାନନ୍ଦ ବାବୁଙ୍କୁ କହୁନାହାନ୍ତି ।' ଜଣେ ଶିକ୍ଷକ ବନ୍ଧୁ ପରାମର୍ଶ ଦେଲେ ।

ସତ୍ୟାନନ୍ଦ ବାବୁ ହେଲେ ସ୍କୁଲ ଏସ୍.ଆଇ । ନିକଟତମ ଅଧିକାରୀ । ବହୁଲୋକଙ୍କୁ ସାହାଯ୍ୟ କରନ୍ତି ବୋଲି ତାଙ୍କର ସୁନାମ ଅଛି । ବିଶେଷ କରି ଶିକ୍ଷକମାନଙ୍କର ଇନ୍‌କ୍ରିମେଣ୍ଟ, ନୂଆ ଦରମା, ଜି.ପି.ଏଫ୍. ଉଠାଣ, ଛୁଟି ବିକ୍ରି ଏସବୁ କାର୍ଯ୍ୟ ଶିକ୍ଷକମାନେ ସତ୍ୟାନନ୍ଦ ବାବୁଙ୍କ ମାଧ୍ୟମରେ ଡି.ଆଇ. ଅଫିସ୍‌ରୁ କରାନ୍ତି । ସତ୍ୟାନନ୍ଦବାବୁ ନୀତିବାନ । କଥାକାମରେ ଫରକ୍ ନାହିଁ । କିନ୍ତୁ ତାଙ୍କ ସହ ଯିଏ ବେଇମାନୀ କଲା, ସେ ଚାରିପାଞ୍ଚିରୁ ଗଲା । ଭିନ୍ନ ଭିନ୍ନ କାର୍ଯ୍ୟପାଇଁ, ଅଫିସ୍ ଚା'ଖିଆ ଖର୍ଚ୍ଚ ସେ ଫିକ୍ସ କରିଛନ୍ତି । ଛୁଟି ମଂଜୁରୀ ଶହେ, ଇନ୍‌କ୍ରିମେଣ୍ଟ ତିନିଶ, ଜି.ପି.ଏଫ୍. ଉଠାଇଲେ ଟୁ ପରସେଣ୍ଟ୍, ବଦଳି କରିବାପାଇଁ ପାଞ୍ଚ ହଜାର, ବାତିଲପାଇଁ ତିନି ହଜାର ।

ରଘୁମାଷ୍ଟ୍ରେଙ୍କୁ ଏସବୁ ନୀତିନିୟମ ପସନ୍ଦ ହେଲା ନାହିଁ । ସେ ନିଜେ ତ ଦେଲେ ନାହିଁ, ଅନ୍ୟମାନଙ୍କୁ ନ ଦେବାପାଇଁ ପ୍ରବର୍ତ୍ତାଇଥଲେ ମଧ୍ୟ । ଅଫିସ୍ କାମ ଅଫିସ୍ କରିବ, ଏକାମ କରିବାପାଇଁ ପରା ସେମାନେ ଅଛନ୍ତି, ସେଥିପାଇଁ ପୁଣି ଲାଞ୍ଚ କ'ଣ?

ଅନ୍ୟ ବନ୍ଧୁମାନେ ଶୁଣନ୍ତି, ଠିକ୍ କଥା, ଠିକ୍ କଥା ବୋଲି ତାଙ୍କ ସହ ସ୍ୱର ମିଳାନ୍ତି, କିନ୍ତୁ ପଛପଟେ ସତ୍ୟାନନ୍ଦ ଫରମୁଲାରେ କାମ କରେଇନିଅନ୍ତି । ଏକ ଘରକିଆ ହୋଇଯାନ୍ତି ରଘୁମାଷ୍ଟ୍ରେ । ସେଇଥିପାଇଁ ତାଙ୍କ ଫାଇଲ୍‌ରୁ ଅନେକ ସମୟରେ କାଗଜ ହଜେ । ମାସକ କାମ ବର୍ଷକରେ ହୁଏ ।

ଏସ୍.ଆଇ. ସତ୍ୟାନନ୍ଦ ବାବୁ ହଠାତ୍ ଦିନେ ଲଖନପୁର ସ୍କୁଲରେ ଦିନ ସାଢ଼େ ଏଗାରଟା ବେଳେ ପହଂଚିଲେ ଏବଂ ଉଦ୍ଦେଶ୍ୟ ପ୍ରକାଶକଲେ – ମଧ୍ୟାହ୍ନ ଭୋଜନ କାର୍ଯ୍ୟକ୍ରମରେ ଆପଣଙ୍କ ସ୍କୁଲରେ ବହୁତ ହେର୍‌ଫେର୍ ହୋଇଛି ବୋଲି ଅଭିଯୋଗ ହୋଇଛି । ଏହାର ତଦନ୍ତ ହେବ ।

ରଘୁମାଷ୍ଟ୍ରେ ଡ଼ରିବାର ଲୋକ ନୁହନ୍ତି, ମୁହେଁ ମୁହେଁ ଜବାବ୍ – ତଦନ୍ତ କରନ୍ତୁ ।

ଚାଉଳ–ଡ଼ାଲି–ଅଣ୍ଡା ହିସାବ ତଦାରଖ ଆରମ୍ଭ ହେଲା । ନିକିତି ଧରି ଗୋଟି ଗୋଟି ଓଜନ କଲେ ସ୍ୱୟଂ ଏସ୍.ଆଇ । ସବୁ ଠିକ୍ । ମୁହଁ ସୁଖିଗଲା ତାଙ୍କର । ତା'ପରେ ଆରମ୍ଭ ହେଲା କାଗଜପତ୍ର ଘଣ୍ଟା ଚକଟା ।

ସତ୍ୟାନନ୍ଦ ବାବୁଙ୍କ ଶୁଖିଲା ମୁହଁରେ ହଠାତ୍ ହସର ଝଲକ ଦିଶିଲା । ପାଇଗଲେ ବୋଧହୁଏ କିଛି ଖିଅ । ଉପସ୍ଥାନ ଖାତା ଉପରେ ହାତ ବାଡ଼େଇ ମୁଣ୍ଡ ହଲେଇଲେ ଏବଂ ପଚାରିଲେ – ଅଠାଅଶୀ ପିଲାଙ୍କର ହାଜିରା ପଡ଼ିଛି, କିନ୍ତୁ କ୍ଲାସ୍‌ରେ ପିଲାଅଛନ୍ତି ପଞ୍ଚସ୍ତରୀ । ତେର ଜଣ ପିଲା ଅନୁପସ୍ଥିତ, କିନ୍ତୁ ହାଜିରା ପଡ଼ିଲା କେମିତି । ଯା'ର ଅର୍ଥ ତେର ଜଣ ପିଲାଙ୍କର ମଧ୍ୟାହ୍ନ ଭୋଜନ ବାବଦକୁ ଡାଲି–ଚାଉଳ ଆପଣ ଆତ୍ମସାତ୍ କରିବାକୁ ଚେଷ୍ଟା କରୁଛନ୍ତି । ଏକଥା କ'ଣ ମିଛ?

ମାଷ୍ଟ୍ରେ ପଡ଼ିଗଲେ ଅଡୁଆରେ ।

ତେରଜଣ ଅନୁପସ୍ଥିତ ପିଲାଙ୍କର ଉପସ୍ଥାନ ଜାଣିଶୁଣି ରଘୁମାଷ୍ଟ୍ରେ ପକେଇଛନ୍ତି । କେବଳ ଆଜି ନୁହେଁ ଗତକାଲି, ତା ପୂର୍ବଦିନ ଏମିତି ଏମିତି ଦେଖିଲେ, ଉପସ୍ଥିତ ଛାତ୍ରଛାତ୍ରୀଙ୍କ ତୁଳନାରେ ଅଧିକ ଉପସ୍ଥାନ ସେ ଦିଅନ୍ତି । ଏବଂ, ଏକଥା ମଧ୍ୟ ସତ ମଧ୍ୟାହ୍ନ ଭୋଜନରେ ଉପସ୍ଥିତ ପିଲାଙ୍କ ଠାରୁ ଅଧିକ ଖାଦ୍ୟ ରନ୍ଧା ହେଲା ବୋଲି ସେ ଦେଖାନ୍ତି ।

ଏପରି ଅନିୟମିତତା କରିବା ପଛରେ ତାଙ୍କର ଦୁଇଟି ଉଦ୍ଦେଶ୍ୟ । ପ୍ରଥମତଃ, ଆଜି ଯେଉଁ ସ୍କୁଲ ବଗିଚାଟି ଫୁଲଫଳରେ ହସୁଛି, ଏଥିପାଇଁ ମାଷ୍ଟ୍ରେ କିଛି ମୂଲିଆଙ୍କୁ ଲଗେଇ ବଗିଚା କାମ କରେଇଥାନ୍ତି । ଖରାଦିନରେ ଭାରରେ ପାଣି ବୋହି ଗଛକୁ ବଂଚାଇବା, ଗୋରୁ ଗାଈଙ୍କ କବଳରୁ ରକ୍ଷାପାଇଁ ବାଡ଼ବନ୍ଦି ଏସବୁ କାମ ମୂଲିଆଙ୍କଦ୍ୱାରା ହୁଏ । ରଘୁମାଷ୍ଟ୍ରେ ମଧ୍ୟାହ୍ନ ଭୋଜନରୁ ସଂଚୟ କରି ରଖିଥିବା ଡାଲି-ଚାଉଳରେ ହିଁ ଏସବୁ ସମ୍ଭବ ହୁଏ । ଦ୍ୱିତୀୟ କଥା, ମଧ୍ୟାହ୍ନ ଭୋଜନପାଇଁ ଯେଉଁ ଜାଳେଣି ଖର୍ଚ୍ଚ, ତାହା ମଧ୍ୟ କିଣିବାକୁ ପଡ଼େ । ସରକାରୀ ଦରରେ ଜାଳେଣି କେଉଁଠି ମିଳେ ନାହିଁ । ଚଢ଼ା ଦରରେ କିଣିବାକୁ ପଡ଼େ । ତେବେ ସେ ଖର୍ଚ୍ଚ କେମିତି ହବ ?

ଆଉ ଗୋଟିଏ କଥା, ନ କହିଲେ ନଚଳେ । ସ୍କୁଲକୁ ପରିଦର୍ଶନ ପାଇଁ ଡି.ଆଇ., ସି.ଆଇ. ସମେତ ଅନେକ ଅଧିକାରୀ ଆସନ୍ତି । ଏହା ଏକ ଆଦର୍ଶ ବିଦ୍ୟାଳୟ ହୋଇଥିବାରୁ ଆଖପାଖ ସ୍କୁଲର ଶିକ୍ଷକମାନେ ମଧ୍ୟ ଆସନ୍ତି । ତେବେ, ସେମାନଙ୍କୁ ତ ପାଣି ଗ୍ଲାସ, ଚା' କପେ ନଦେଇ ରଘୁମାଷ୍ଟ୍ରେ କେବେ ଛାଡ଼ିନାହାନ୍ତି । ପାଖ ଛକରେ ସବୁ ମିଳିଲାଣି । ଏଇ ତ, ଏବେ ଏବେ ସ୍ୱୟଂ ସତ୍ୟାନନ୍ଦ ବାବୁ ପିଇ ସାରିଲେଣି ଦୁଇଟା ଫାଣ୍ଟା । ତା ଛଡ଼ା, ବ୍ଲକ କି ଡି.ଆଇ. ଅଫିସ୍ ଗଲେ, ସେଠିକାର କିରାଣି-ପିଅନ୍ ତ ବଙ୍ଗାଳି ତୀର୍ଥ-ଯାତ୍ରୀଙ୍କୁ ଦେଖି ପୁରୀପଣ୍ଡା କୁରୁଳି ଉଠିଲା ଭଳି ସେମାନେ ଖୁସି ହୋଇଯାନ୍ତି । ଚା'ପାଣି ଦେଇ ତାଙ୍କୁ ସନ୍ତୁଷ୍ଟ ନକଲେ, ଦିଅଁ ପାଖକୁ ଯିବେ ବା କେମିତି ?

ଏସବୁ କଥା କ'ଣ କହି ହୁଏ ?

ରଘୁମାଷ୍ଟ୍ରେ ଦୋଷୀ ଭଳି ଠିଆ ହେଲେ । ସତ୍ୟାନନ୍ଦ ବାବୁ ଜାଣିଥିଲେ, ପରାଜୟ ବରଣ କରିଥିବା କିମ୍ବା ସରଣ ପଶିଥିବା ଶତ୍ରୁକୁ ମାରିବା ଶାସ୍ତ୍ର ବିରୋଧୀ । ତେଣୁ ସେ ଉଦାର ହୃଦୟରେ କ୍ଷମା କରିଦେଲେ ରଘୁ ମାଷ୍ଟ୍ରଙ୍କ ଅପରାଧ ।

ପାଖରେ ବସାଇ ଭଲ ମନ୍ଦ ପଚାରିଲେ ଏବଂ ସେ ଥିବା ପର୍ଯ୍ୟନ୍ତ କିଛି କାର୍ଯ୍ୟାନୁଷ୍ଠାନ ହେବ ନାହିଁ ବୋଲି ଦୃଢ଼ ପ୍ରତିଶ୍ରୁତି ଦେଲେ । ରଘୁମାଷ୍ଟ୍ରେ ଅଭିଜ୍ଞ

ଶିକ୍ଷକ, ତାଙ୍କୁ କଥାଟି ଏତେ ସହଜରେ ହଜମ ହେଲା ନାହିଁ । ସେ କେବଳ ଅପେକ୍ଷା କଲେ ସତ୍ୟାନନ୍ଦ ବାବୁଙ୍କ ପରବର୍ତ୍ତୀ ଆଦେଶକୁ ।

'ଗୋଟାଏ ଅନୁରୋଧ କରିବି ଆପଣଙ୍କୁ ।' ସତ୍ୟାନନ୍ଦ ବାବୁ ହାତ ଯୋଡ଼ିଲେ ।

ରଘୁମାଷ୍ଟ୍ରେ ଏଥର ବରଡ଼ାପତ୍ର ଭଳି ଥରିଲେ । ଯାହାକୁ ସମସ୍ତେ ଯୋଡ଼ହସ୍ତ ସେ ହାତ ଯୋଡୁଛନ୍ତି ତାଙ୍କ ସାମ୍ନାରେ ଅର୍ଥ, ଅଘଟଣ ସୂଚନା । 'ଆପଣ ଜି.ପି.ଏଫ୍.ରୁ ଲକ୍ଷେ ଟଙ୍କା ଉଠାଇବାକୁ ଆବେଦନ କରିଛନ୍ତି ପରା?' ଅତି ଆତ୍ମୀୟତାର ସ୍ୱରରେ ପଚାରିଲେ ସତ୍ୟାନନ୍ଦ ବାବୁ ।

ରଘୁ ମାଷ୍ଟ୍ରେ ନୀରବରେ ମୁଣ୍ଡ ଟୁଙ୍ଗାରିଲେ ଏବଂ ସେତା ପଡ଼ିଯାଇଥିବା ହାଡୁଆ ମୁହଁରେ ହସ ଦିଶିଲା । 'ଝିଅ ବାହାଘରପାଇଁ ଲାଗିଛି ।' ସଂକ୍ଷିପ୍ତ ଉତ୍ତର ଦେଲେ ।

'ଆରେ ବାଃ, ଏତେ ବଡ଼କଥା ମତେ ଜଣେଇ ନାହାନ୍ତି ଏ ପର୍ଯ୍ୟନ୍ତ! କେବେ ବାହାଘର? କ୍ୱାଇଁଟି କ'ଣ କରେ?' ସତ୍ୟାନନ୍ଦ ବାବୁ ଗଦଗଦ ହୋଇ ଚାହିଁଲେ ଏବଂ ଯୋଡ଼ିଲେ 'ମୁଁ ପରା ତିନିବର୍ଷ ହେଲା ବଡ଼ ଝିଅ ପାଇଁ ବୁଲୁଛି, କାହିଁ? ଯୋଗ ନାଇଁ । ସବୁ ଉପରବାଲାର ଇଛା ।'

ରଘୁମାଷ୍ଟ୍ରେ ଭ୍ରମରେ ପଡ଼ିଲେ । ବିନା ମତଲବ୍‌ରେ ଯେଉଁ ଲୋକ ହସେ ନାହିଁ, ସେ କେମିତି ଆଜି ଏତେ ଆପଣାର ଭଳି କଥାବାର୍ତ୍ତା କରୁଛି ?

ଅବଶ୍ୟ ତାଙ୍କ ସନ୍ଦେହ ବେଶି ସମୟ ରହିଲା ନାହିଁ । 'ମତେ କୋଡ଼ିଏ ହଜାର ଧାର ଦେଇଥାନ୍ତୁ, ଗାଡ଼ିଟିଏ କିଣିବି, ଏ ସ୍କୁଟର ଆଉ ଟାଣୁନି । ମାସେ ଭିତରେ ମୁଁ ଫେରେଇ ଦେବି, ଆପଣ ଚିନ୍ତା କରିବେନି ।'

କହିବା ବାହୁଲ୍ୟ, ଝିଅ ବାହାଘର ସାରି ରଘୁମାଷ୍ଟ୍ରେ ନାତି ଦେଖିଲେଣି କିନ୍ତୁ ସତ୍ୟାନନ୍ଦ ବାବୁଙ୍କର କଣ୍ଟ ଏବେ ବି ପୂରିଲା ନାହିଁ ।

ରିଟାୟାର୍ଡପାଇଁ ଆଉ ଦଶମାସ ଥାଏ । ରଘୁମାଷ୍ଟ୍ରେ ପେନ୍‌ସନ୍ କାଗଜପତ୍ର ଠିକ୍‌ଠାକ୍ କରିବାପାଇଁ ରାଘବ ବାବୁଙ୍କୁ ଧରିଲେ । ରାଘବ ବାବୁ, ଡି.ଆଇ. ଅଫିସ୍ କିରାଣି । ଦୁଇ ହଜାର ଟଙ୍କା ଫିସ୍ । କାଗଜ ପତ୍ର ଠିକ୍‌ଠାକ୍ କରି ଘରେ ଦେଇଯାନ୍ତି । କେଉଁଠି ଟିପ ଚିହ୍ନ, କେଉଁଠି ସ୍ୱାମୀ-ସ୍ତ୍ରୀ ଫଟୋ, କେଉଁଠି ଦସ୍ତଖତ ସବୁ ଟିପମାରି ସେ କହିଦିଅନ୍ତି । କେବଳ ସ୍କୁଲ ବିଭାଗ ନୁହେଁ, ଅନ୍ୟାନ୍ୟ ବିଭାଗ, ଯଥା ରେଭିନ୍ୟୁ, ପଞ୍ଚାୟତରାଜର ଅବସର ନେଉଥିବା କର୍ମଚାରୀମାନେ ମଧ୍ୟ ରାଘବ ବାବୁଙ୍କ କଳାକୌଶଳ ଜାଣନ୍ତି ଏବଂ ତାଙ୍କର ସାହାଯ୍ୟ ନିଅନ୍ତି । ବର୍ଷକୁ ପ୍ରାୟ କୋଡ଼ିଏରୁ ପଚିଶ ପେନ୍‌ସନ୍‌ଧାରୀଙ୍କୁ ରାଘବ ବାବୁ ସାହାଯ୍ୟ କରି ଆସୁଛନ୍ତି ଦୀର୍ଘ ପନ୍ଦର/ କୋଡ଼ିଏ ବର୍ଷ ହେଲା । ସେହି ରାଘବ ବାବୁ ବତେଇଲେ - ଶୀଘ୍ର ସ୍କୁଲ ଘରକାମ

ଶେଷକରି, ନୋ ଅବ୍‌ଜେକ୍‌ସନ୍ ସାର୍ଟିଫିକେଟ୍ ଆଣ, ନହେଲେ ବ୍ରହ୍ମା ଆସିଲେ ବି ତୁମର ଫୁଲ୍ ପେନ୍‌ସନ୍ ହୋଇପାରିବ ନାହିଁ ।

ରଘୁମାଷ୍ଟ୍ରେ ଗୋଟାଏ ଉପାୟ ପାଞ୍ଚିଲେ । ସକାଳ ହେଲା ତ ଯାଇ ମେଢ଼ିଆ ଦୁଆରେ ବସିଲେ । ତାକୁ ନେହୁରା ହେଲେ – ବାବୁରେ ତୁ ଆଉ ଡ଼େରି କରନା, ଶୀଘ୍ର କାମ ସାରିଦେ ।

ସେତେବେଳେକୁ ମେଢ଼ିଆର ନାଁ ଫିଟିଗଲାଣି । ସେ ବିଧାୟକଙ୍କର ଡାହାଣ ହାତ । ଏକଥା ପ୍ରଘଟ ହୋଇଯିବା ପରେ, ସକାଳୁ ସକାଳୁ ତା ଦୁଆରେ ବି ମେଳଣ । ବିଧବା, ଭୂମି-ଘର-ଅର୍ଥହୀନମାନେ ଜାଣିଗଲେଣି, ବିଧାୟକଙ୍କ ପାଖରେ ଯେଉଁ କାମ ଅଛି, ତାହା ସୁବ୍ରତ ବାବୁଙ୍କ ବିନା ସୁପାରିଶରେ ହେବ ନାହିଁ । ତେଣୁ ଦୁଃଖୀରଙ୍କୀଠାରୁ ଆରମ୍ଭ କରି ପେଟି କଣ୍ଟ୍ରାକ୍ଟର୍ ପର୍ଯ୍ୟନ୍ତ ଭିଡ଼ ତା ଦୁଆରେ । ଏବଂ ଭିଡ଼ ଭିତରେ ଥାନ୍ତି ରଘୁ ମାଷ୍ଟ୍ରେ ।

ସୁବ୍ରତ, କେବେ କାହାରିକୁ କଟୁ କଥା କୁହେଁ ନାହିଁ, କିମ୍ବା ନିରାଶ କରେ ନାହିଁ । ଏପରିକି ରଘୁ ମାଷ୍ଟ୍ରେଙ୍କୁ ମଧ୍ୟ । 'ଆପଣ ବ୍ୟସ୍ତ ହୁଅନ୍ତି ନାହିଁ । ଏଇ ଆର ସପ୍ତାହକୁ କାମ ଆରମ୍ଭ ହବ / ସେ ମିସ୍ତ୍ରୀର ଭାଣିଜୀ ବାହାଘର / ଏଇ, ଆଉ ଆଠ ଦିନ, ଦଶରାଟା ସରୁ / ଗଜଲକ୍ଷ୍ମୀ ପୂଜାରେ ମିଳୁନାହାନ୍ତି ମୁଲିଆ / ସିମେଣ୍ଟ ବିଲକୁଲ୍ ବଜାରରେ ମିଳୁନାହିଁ । ଆଉ, ଦଶ ଦିନ/ପଞ୍ଚାୟତ ଇଲେକ୍‌ସନ୍ ଘୋଷଣା ହୋଇଗଲା, ତିନିମାସ ପରା ଏବେ କାମ ବନ୍ଦ ।... ଦଶ ମାସ ଗଡ଼ିଗଲା । ଅଧିକ ଇଟା ଖଣ୍ଡେ ବି ଯୋଡ଼ା ହୋଇପାରିଲାନି ।

ସାପ ଖୋଜୁଥିବା ଲୋକମାନେ ହଠାତ ଆଶ୍ଚର୍ଯ୍ୟ ହେଲେ । ବଉଳ ଗଛ ଚଉତରା ଲାଗି ନିଧଡ଼କ ବିଶ୍ରାମ ନେଉଛି ଛ'ଫୁଟ ଲମ୍ବ ନାଗ । ହଇଚଇ, ଘୋଘା ଶବ୍ଦ କିଛି ମଧ୍ୟ ପ୍ରଭାବ ପକେଇ ପାରୁନି ତା ଉପରେ । ତ୍ରସ୍ତ ଦର୍ଶକ ସାପ ଦେଖି ଭୟଭୀତ ହେଉଥିଲେ ଯେତିକି, ଆଶ୍ଚର୍ଯ୍ୟ ହେଉଥିଲେ ସେତିକି – ଚଉତରା ଉପରେ ସାପଠାରୁ ମାତ୍ର ତିନି-ଚାରି ଫୁଟ ଦୂରରେ ଧ୍ୟାନସ୍ଥ ମୁଦ୍ରାରେ ବସିଛନ୍ତି ଧୋତି ପଞ୍ଜାବି ପରିହିତ, କଳା ମଚ ମଚ ରଙ୍ଗର ବୟସ୍କ ବ୍ୟକ୍ତିଜଣେ । ସାପ କିମ୍ବା କୋଳାହଳ ପ୍ରତି ତାଙ୍କର ନିଘା ନାହିଁ । ଦରଖାସ୍ତ ପଢ଼ାରେ ସେ ବ୍ୟସ୍ତ । ଦର୍ଶକ ଭିତରୁ କେହି ଜଣେ ଡାକ ମାରିଲା – ହୋ ମଉସା! ମଉସା ନିରୁତ୍ତର । ମଗ୍ନ, ଦରଖାସ୍ତର ଶେଷ ପୃଷ୍ଠାରେ ।

ଅବସର ଗ୍ରହଣ ପରେ ରଘୁ ମାଷ୍ଟ୍ରେ, ଆଉ ରଘୁ ମାଷ୍ଟ୍ରେ ହୋଇ ରହିପାରିଲେ ନାହିଁ । ଘରେ ବେମାରିଆ ସ୍ତ୍ରୀ, ପାଞ୍ଚ ମାଇଲ ଦୂର ଗାଁରେ ବାହା ହୋଇଥିବା ଝିଅର ପିଲାପିଲି ହବ, ସାଦଭାର ଯିବ । ସ୍ତ୍ରୀର ଔଷଧ ଦରକାର । ପୁଅପାତି ଥିଲେ ଅବା,

କାନ୍ଧକୁ କାନ୍ଧ ଲଗେଇ ଦେଇଥାନ୍ତେ । ଈଶ୍ୱର ତା'ହା ମଧ୍ୟ ଦେଇନାହାନ୍ତି । ଉପାର୍ଜନର ଆଉ କିଛି ପନ୍ଥା ତାଙ୍କୁ ମାଲୁମ ନାହିଁ । ଜୀବନ ତମାମ ତ ସେ କେବଳ ଦେଇ ଚାଲିଲେ – କାହାକୁ ଜ୍ଞାନ, କାହାକୁ ଉପଦେଶ, କାହାକୁ ଧର୍ମ ତ କାହାକୁ ଗାଳି । ସଂଚୟ କରିବା, ବାହାର ଜିନିଷ ଘରକୁ ଆଣିବା କାମଟି ତାଙ୍କଦ୍ୱାରା ହୋଇନାହିଁ । ମୋଟ ଉପରେ ଘରୁଆ ମଣିଷଟିଏ ସେ ହୋଇପାରିଲେ ନାହିଁ ।

ଅବସର ପରେ ସବୁକିଛି ପରିବର୍ତ୍ତନ ହୋଇଗଲା । ପୂର୍ବରୁ, ଛକ ପାଖରେ ଯାହାକୁ ଦେଖିଲେ, ଡାକି ଚା' ପକୁଡ଼ି ଖୁଆଉ ଥିଲେ । ଏବେ ନିଜେ ଛକକୁ ଯିବାକୁ ଡରିଲେ । ବାକି ଖାତାରେ ମାସକୁ ଦୁଇ ମାସ ହୁଏ ନାହିଁ, ସୁଝି ଦିଅନ୍ତି । କିନ୍ତୁ ଏବେ ଦୋକାନୀ ଭଦ୍ରାମିରେ କହୁଥିଲା – ମାଷ୍ଟ୍ରେ ପାଞ୍ଚ ମାସ ହୋଇଗଲା, କ'ଣ ପେନ୍‌ସନ୍ ମିଳିନି କି?

ମେଢ଼ିଆ, ମରିଚିକା ଭଳି ଦୌଡ଼େଇଲା ମାଷ୍ଟ୍ରଙ୍କୁ । 'ଦାଦା, ମୁଁ ଥାଉ ଥାଉ ତୁମ ପେନ୍‌ସନ୍ କୋଉ ଶଳା ବନ୍ଦ କରିବ ଦେଖିବା । ଖାଲି ଏଇ ଇଲେକ୍‌ସନ୍‌ଟା ସରିଯାଉ । ପାଣୁ ଭାଇ ଏଥର ଜିତିଗଲେ, ମନ୍ତ୍ରୀ ହେବାଟା ପକ୍‌କା । ଆପଣ ଟିକେ ଆମକୁ ସାହାଯ୍ୟ କରୁନାହାନ୍ତି । ଆମ ଦୁଇଟା ୱାର୍ଡ଼ର ଦାୟିତ୍ୱ ଆପଣ ନିଅନ୍ତୁ । ଇଲେକ୍‌ସନ୍‌ର ମାସକ ଭିତରେ ଯଦି ମୁଁ ଆପଣଙ୍କ କାମ ନକରି ଦେଇଛି, ମୋତେ କହିବେ ।'

ରଘୁ ମାଷ୍ଟ୍ରେ, ଧାଇଁଲେ । ମାତିଲେ ନିର୍ବାଚନରେ । ଦୁଇଟା ୱାର୍ଡ଼ର ନିଶଗଜୁରି ନଥିବା ଭୋଟରଙ୍କ ଠାରୁ ଆରମ୍ଭ କରି ଆରପାରିକୁ ଗୋଡ଼ଟେକି ବସିଥିବା ପାକଲା ମୁଣ୍ଡିଆ ପର୍ଯ୍ୟନ୍ତ, ସମସ୍ତଙ୍କୁ ପ୍ରାଣନାଥ ବାବୁଙ୍କର ଗାରିମା ବଖାଣିଲେ, ବୁଥ ଖର୍ଚ୍ଚ, ଚା'ପାଣି, ନିଶାପାଣି ଏମିତି ଏମିତି ଟଙ୍କା ଦଶ ହଜାର ହାତରୁ ବି ଦେଲେ । ଯା ହଉ ଇଜ୍ଜତ ରହିଲା, ଦୁଇଟା ୱାର୍ଡ଼ରୁ ପ୍ରାଣବାବୁ ତିନିଶ ଭୋଟ୍ ଅଧିକ ପାଇଲେ ଏବଂ ମାଷ୍ଟ୍ରେଙ୍କୁ ପ୍ରଣାମ କରି ଆଶୀର୍ବାଦ ମଧ୍ୟ ଲାଭକଲେ । ବିଜୟ ଉଲ୍ଲାସ ଚାଲିଲା ଛ ମାସ । ପ୍ରତି ଗାଁରେ ସମ୍ବର୍ଦ୍ଧନା । ପ୍ରାଣନାଥ ବାବୁ, ତାଙ୍କ ସାଥିରେ ସୁବ୍ରତ ବାବୁ । ଦୁହିଁଙ୍କୁ ଦେଖିବାକୁ ମିଳିଲା ସବୁ ମଞ୍ଚରେ ।

ମାଷ୍ଟ୍ରେ ସାଇକେଲ ମାରି ସବୁ ସଭାରେ ସବୁ ଗାଁରେ ହାଜର । ସୁବିଧା ମିଳିଲେ ତାଙ୍କ ଗୁହାରି ମନ୍ତ୍ରୀଙ୍କ କାନରେ ପକାନ୍ତେ – ଏହା ମଧ୍ୟରେ ପ୍ରାଣନାଥ ବାବୁ ଜଣେ ରାଷ୍ଟ୍ରପାହ୍ୟା ମନ୍ତ୍ରୀ ।

ଅନେକ ଥର ଆଖିର ମିଳନ ଘଟିଛି । ମଞ୍ଚ ଉପରୁ, ପ୍ରାଣନାଥ ବାବୁ ମାଷ୍ଟ୍ରଙ୍କ ଉଦ୍ଦେଶ୍ୟରେ ହାତଯୋଡ଼ି ଆଶୀର୍ବାଦ ଭିକ୍ଷା ମଧ୍ୟ କରିଛନ୍ତି, ଅଥଚ ମୁହାଁମୁହିଁ

କଥାବାର୍ତ୍ତାପାଇଁ ସୁଯୋଗ ନାହିଁ । ସୁବ୍ରତ ମଧ ଏବେ ଗାଁକୁ ବେଶି ସମୟ ଆସୁନାହିଁ । ମନ୍ତ୍ରୀଙ୍କ ପାଖେ ପାଖେ ଭୁବନେଶ୍ୱରରେ ସେ ।

ଥରେ ସମ୍ବର୍ଦ୍ଧନା ସଭା ସରିବା ପରେ ମନ୍ତ୍ରୀ ମହୋଦୟ ହାତଠାରି ଡାକିଲେ । ମାଷ୍ଟ୍ରେ ତ ଅନେଇଥାନ୍ତି ସେହି ମୁହୂର୍ତ୍ତକୁ । ପ୍ରଥମ ମୁହାଁମୁହିଁରେ ହିଁ ମାଷ୍ଟ୍ରେ ଗୋଟିଏ ଧାଡ଼ିରେ ଅଭିଳାଷ ବ୍ୟକ୍ତ କଲେ – 'ଆଜ୍ଞା, ସୁବ୍ରତକୁ ଟିକେ କୁହନ୍ତୁ ସ୍କୁଲ କାମଟି ସାରିଦଉ, ମୁଁ ପେନ୍‌ସନ୍ ପାଉନି ଦୁଇ ବର୍ଷ ହେଲାଣି । ମୋ ପ୍ରତି ଦୟା କରନ୍ତୁ ।'

ଆଶ୍ଚର୍ଯ୍ୟ ହୋଇ ଚାହିଁଲେ ମନ୍ତ୍ରୀ । 'ଆପଣ ଦୁଇ ବର୍ଷ ହେଲା ପେନ୍‌ସନ୍ ପାଇନାହାନ୍ତି ।' ଓଲଟି ପ୍ରଶ୍ନ କଲେ । 'ମୁଁ ପରା ଏବେ ପେନ୍‌ସନ୍ ମନ୍ତ୍ରୀ, ମୋ ନିର୍ବାଚନ ମଣ୍ଡଳୀରେ ଏମିତି ଅବ୍ୟବସ୍ଥା! ଏ ବ୍ୟବସ୍ଥାଟିକୁ ବିଗାଡ଼ି ଦେଇଛନ୍ତି ପୂର୍ବ ସରକାର । ଆଚ୍ଛା ହଉ!' ମନ୍ତ୍ରୀ କିଛି ସମୟ ଚୁପ୍ ରହି ସ୍ମିତହାସ୍ୟରେ କହିଲେ – 'ଭୁବନେଶ୍ୱରକୁ କେବେ ଆସନ୍ତୁ, ମୋ ଘରେ ପାଦପକ୍ଷୁ ଆପଣଙ୍କର, ମୁଁ ଧନ୍ୟ ହୋଇଯିବି ।'

ମନ୍ତ୍ରୀ ଆଉ କିଛି କହିବାପାଇଁ ଚାହୁଁଥିଲେ କି କ'ଣ । ସୁବ୍ରତ ବାବୁ ଅନ୍ୟ ଦୁଇଜଣ ଭଦ୍ର ବ୍ୟକ୍ତିଙ୍କୁ ଆଣି ପରିଚୟ କରାଇଦେଲେ ମନ୍ତ୍ରୀଙ୍କୁ । ଏପଟେ ଠିଆ ହୋଇଥାନ୍ତି ମାଷ୍ଟ୍ରେ, ଆଡ଼ ଆଖିରେ ବି ଚାହିଁଲା ନାହିଁ ପୁତୁରା ।

ସାପ ଫଣା ଟେକିଲା । ଘୁଞ୍ଚିଗଲେ ଦର୍ଶକ । କିଛି ଲୋକ ଛୋଟ–ବଡ଼ ବାଡ଼ି ଖଣ୍ଡେ ଖଣ୍ଡେ ଧରି ସ୍ୱ ସ୍ୱ ସୁରକ୍ଷା ନିମିତ୍ତ ଆତ୍ମରକ୍ଷା ମୁଦ୍ରାରେ । କେହି ଜଣେ ସାହସୀ ଯୁବକ ଭିଡ଼ ମଧ୍ୟରୁ ବାହାରି ଶକ୍ତ ପାହାର ଦେଲା ସାପ ଉପରେ । ସାପଟି ସଚେତନ ହୋଇ ସାରିଥିଲା ସେତେବେଳକୁ, ଘୁଞ୍ଚିଗଲା କିଛିବାଟ । ପାହାରଟି ବାଜିଲା ତା'ଲାଞ୍ଜ ଉପରେ ।

ଏବଂ ଏହାପରେ ଯାହା ଘଟିଲା, ତାହା କୌଣସି ବ୍ୟକ୍ତି ଚିନ୍ତା ହିଁ କରି ନଥିଲେ । କ୍ରୋଧିତ ସର୍ପ ଲାଞ୍ଜ ଉପରେ ଠିଆ ହୋଇଗଲା ସେଇଠି । ପାଞ୍ଚ ଫୁଟ ପାଖାପାଖି ଉଚ୍ଚତା, ଫଣା ଟେକି ଆକ୍ରମଣ କରିବାକୁ ଉଦ୍ୟତ । ଚାହୁଁ ଚାହୁଁ ଛତ୍ରଭଙ୍ଗ ଦେଲେ ଜନତା । ଆସ୍ତେ ଆସ୍ତେ ଅଗ୍ରସର ହେଲା ସର୍ପ । ରଘୁମାଷ୍ଟ୍ରେ ଦରଖାସ୍ତକୁ ଠିକ୍ ଭାବେ ଭାଙ୍ଗି ଭୁଙ୍ଗି ଛାତି ପକେଟରେ ରଖିଲେ । ମନ୍ତ୍ରୀ ଆସିବାକୁ ଆହୁରି ଅନେକ ଡ଼େରି । ତାଙ୍କୁ ଅପେକ୍ଷା କରିବାକୁ ପଡ଼ିବ ।

ସାପ ଗତି ବଢ଼େଇଲା । ଧାଇଁଲେ ସମସ୍ତେ । କିଛିବାଟ ଦୌଡ଼ିବା ପରେ ସାପ ଫଣା ଟେକି ଲମ୍ଫ ପ୍ରଦାନ କଲା ଏବଂ ଦୌଡ଼ ପ୍ରତିଯୋଗିତାରେ ହାରି ଯାଉଥିବା ଶେଷ ଲୋକଟିର ହାତରେ ଗୁଡ଼େଇ ହୋଇଗଲା । ରଘୁ ମାଷ୍ଟ୍ରେ ବାଁ ହାତ ଛାଟିଲେ,

ସାପ ଗୁଡ଼େଇ ହୋଇଗଲା ଅଧିକରୁ ଅଧିକ ଏବଂ ବାମ ହାତର ବୃଦ୍ଧାଙ୍ଗୁଳିକୁ ଚାପି ଧରିଲା ଦାନ୍ତରେ ।

ରଘୁ ମାଷ୍ଟ୍ରେ ଜାଣିଲେ ସାପ ଛାଡ଼ିବନି । ତେଣୁ ସାପର ଫଣା ତଳକୁ ଡାହାଣ ହାତରେ ଜୋର୍‌ରେ ଚାପି ଧରିଲେ ତା'ବେକ ପାଖରେ ।

ଛତ୍ରଭଙ୍ଗ ଦେଇଥିବା ଦର୍ଶକ ଘେରିଗଲେ ଏହି ଅଭାବିତ ଦୃଶ୍ୟ ଦେଖିବାକୁ । ସାପ-ମଣିଷର ସଂଘର୍ଷକୁ ନିଜ ମୋବାଇଲ କ୍ୟାମେରାରେ ତତ୍‌କାଳ କିଛି ଉତ୍ସାହୀ ବନ୍ଧୁ ସାଇତି ରଖିବାପାଇଁ ଫଟୋ ଉଠେଇବା ଆରମ୍ଭକଲେ ।

ରଘୁ ମାଷ୍ଟ୍ରେ ସାପର ବେକକୁ ଧରିଥାନ୍ତି, ସାପ ଧରିଥାଏ ମାଷ୍ଟ୍ରଙ୍କ ବୁଢ଼ାଆଙ୍ଗୁଠି । ଠିଆ ହୋଇଥାନ୍ତି ମାଷ୍ଟ୍ରେ, ତାଙ୍କ ହାତ ପାପୁଲି ପାଖରୁ ତଳକୁ ଲମ୍ବିଥାଏ ସାପ । 'ମଉସା ଟିକେ ସାମ୍ନାକୁ ଚାହଁ, ଟିକେ ସାପକୁ ଭଲଭାବେ ଲମ୍ବ କରି ଧର', ମଉସା ଟିକେ ସ୍ମାଇଲ୍ ଦିଅ ।' ଖୁବ୍ ଭଲ ଫଟୋଟିଏ କାଲି ଖବରକାଗଜରେ ବାହାରିବ ନିଶ୍ଚୟ, ଉତ୍ସାହରେ କହିଲେ ଫଟୋ ଉଠାଳି ।

କାଳେ ଛାଡ଼ିଦେଲେ ସାପଟି ଆଉ କାହାରିକୁ କାମୁଡ଼ିଦବ, ସେଥିପାଇଁ ରଘୁମାଷ୍ଟ୍ରେ ସାପକୁ ଅଣନିଃଶ୍ୱାସୀ କରିବାକୁ ଚେଷ୍ଟାକରୁଥାନ୍ତି ଏବଂ ଏହା ଭିତରେ ସାପଧରାଳି ତାଙ୍କ ଗାଡ଼ି ସହ ଆସି ପହଞ୍ଚି ଯାଇଥିଲେ । ଏବଂ, ସଙ୍ଗେ ସଙ୍ଗେ ଉଭୟ ସାପ-ମଣିଷଙ୍କୁ ଧରି ଚାଲିଲେ ଡାକ୍ତରଖାନା । କିନ୍ତୁ ଅବଶୋଷ, ଅଣତିରିଶଟି ସାପ ବିଷ ନିରୋଧକ ଇଂଜେକ୍‌ସନ୍ ଦେବା ପରେ ମଧ୍ୟ ରଘୁମାଷ୍ଟ୍ରେଙ୍କୁ ବଂଚାଇପାରିଲେ ନାହିଁ ଡାକ୍ତର । ଜୀବନ୍ତ ଏବଂ ମୃତ ଅବସ୍ଥାରେ ସାପ ଓ ମଣିଷ ଶୀର୍ଷକ ଫଟୋଟି ତା ପରଦିନ ଖବର କାଗଜରେ ପ୍ରକାଶିତ ହୋଇ ବେଶ ଆଦୃତ ହେଲା, ପୁରସ୍କୃତ ବି ହେଲା ପରବର୍ତ୍ତୀ କାଳରେ ।

ଶେଷ ଖବର : ଲଖନପୁର ବିଦ୍ୟାଳୟରେ ଅନୁଷ୍ଠିତ ସ୍ମୃତିଚାରଣ ସଭାରେ ବାଷ୍ପରୁଦ୍ଧ କଣ୍ଠରେ ମନ୍ତ୍ରୀ ଘୋଷଣା କଲେ - 'ରଘୁମାଷ୍ଟ୍ରେଙ୍କର ଏକ ଆବକ୍ଷ ମୂର୍ତ୍ତି ସ୍ଥାପିତ ହେବ ସ୍କୁଲ ପରିସରରେ ।'

'ମୂର୍ତ୍ତି ସ୍ଥାପନପାଇଁ ସମସ୍ତ ଖର୍ଚ୍ଚ ମୁଁ ବହନ କରିବି' ନମ୍ରଭାବେ ଦୃଢ଼ ପ୍ରତିଶ୍ରୁତି ଦେଲେ ସଭାପତି, ସୁବ୍ରତ ।

❑

(ଶୈଳଜା : ପୂଜା ସଂଖ୍ୟା ୨୦୦୯)

# ବବ୍‌ଲୁ ପାଇଁ ତିନୋଟି ସ୍କେଚ୍

**ଚର୍ଚ୍ଚାରେ ବବ୍‌ଲୁ:**

ବବ୍‌ଲୁ ଘରକୁ ଫେରିନି । ଛୁଟି ଘଣ୍ଟା ବାଜିବାର ଅଧଘଣ୍ଟା ଭିତରେ ସେ ଘରେ ପହଞ୍ଚେ । ଆଜି, ସ୍କୁଲ ଛୁଟି ହେବାର ଆଠଘଣ୍ଟା ବିତିଗଲାଣି । ସାଙ୍ଗସାଥୀଙ୍କ ଘର, ବନ୍ଧୁବାନ୍ଧବ, ପାର୍କ, ଗୁପ୍‌ଚୁପ୍ ଠେଲା, ସବୁଠାରେ ଖୋଜା ସରିଲାଣି । ଶିକ୍ଷକମାନେ କହୁଛନ୍ତି – ଆଜି ଶ୍ରେଣୀରେ ସେ ଅନୁପସ୍ଥିତ । ତେବେ ସେ ଗଲା କୁଆଡ଼େ?

ତେର ବର୍ଷର ଡଉଲଡାଉଲ, ବୁଦ୍ଧିମାନ, ଷ୍ଟାଣ୍ଡାର୍ଡ ସେଭେନ୍‌ର ଛାତ୍ର ବବ୍‌ଲୁ । ଅନ୍ତର୍ଦ୍ଧାନ ଖବର ସହରରେ ବ୍ୟାପିଯିବା ପରେ ବାପା–ମା ମାନେ ସେମାନଙ୍କର ସ୍କୁଲ ଯାଉଥିବା ପିଲାମାନଙ୍କୁ ଯଥେଷ୍ଟ ସତର୍କ ରହିବାପାଇଁ ବାରମ୍ବାର କେତୋଟି କଥାରେ ତାଗିଦା କରୁଥିଲେ ଯେମିତି – ଅଜଣା ବ୍ୟକ୍ତି ସହିତ କଥାବାର୍ତ୍ତା ନ କରିବା, ଟିଫିନ୍ ବାକ୍ସରେ ଦିଆଯାଉଥିବା ଛଡ଼ା ଅନ୍ୟ କେଉଁଠାରୁ ଏବଂ କାହାଠାରୁ ଖାଦ୍ୟ ନଖାଇବା, ଆସ୍ତେ ଆସ୍ତେ ରାସ୍ତାର ବାମ ପଟେ ସାଇକେଲ ଚଳେଇଯିବା ଏବଂ ସତର୍କତା ସହ ରାସ୍ତା ପାରିହେବା ଇତ୍ୟାଦି ।

ବବ୍‌ଲୁ ମଧ୍ୟ ଏସବୁ କଥା ଜାଣେ । ବ୍ୟାଙ୍କ ଅଫିସର୍ ମଳୟ ମହାନ୍ତି ଏବଂ ଶିକ୍ଷୟିତ୍ରୀ ପ୍ରଭାବତୀ ଦେବୀଙ୍କର ଏକମାତ୍ର ସନ୍ତାନ ବବ୍‌ଲୁ ଯେ ନିଜର ସୁରକ୍ଷା–ସଚେତନତାରେ ଅଜ୍ଞ ଥିଲା, ତାହା ମଧ୍ୟ ଭାବିବା ଭୁଲ ।

ତେବେ ସେ ଗଲା କୁଆଡ଼େ ? ଗମ୍ଭୀର ଭାବେ ଜଣେ ଅଭିଭାବକ ପ୍ରଶ୍ନ କଲେ । ସମବେତ ଦଶ–ବାର ଜଣ ଚିନ୍ତାଗ୍ରସ୍ତ ଅଭିଭାବକ ଚା'ଦୋକାନ ସାମ୍ନାରେ ସମ୍ଭାବ୍ୟ କାରଣ ଏବଂ ପରିଣତିର ଆକଳନ କରୁଥିଲେ । 'ଆଜିକାଲି ପରିସ୍ଥିତି ଯାହା' ଅନ୍ୟତମ ଅଭିଭାବକ ଉତ୍ତର ଦେଲେ 'ଏହା ଗୋଟିଏ ଅପହରଣ ମାମଲା ବି ହୋଇପାରେ । କିଡ୍‌ନାପିଂ ।' ଭଦ୍ରଲୋକ ଚଷମାର ଉପରାର୍ଦ୍ଧରୁ ପାର୍ଶ୍ୱ ପ୍ରଶ୍ନକର୍ତ୍ତାଙ୍କୁ ପ୍ରଶ୍ନିଳ ଦୃଷ୍ଟି ନିକ୍ଷେପ କଲେ ।

'ନା, ନା' ପ୍ରଥମ ବ୍ୟକ୍ତି ସନ୍ତୁଷ୍ଟ ହେଲେ ନାହିଁ । ମୁଣ୍ଡ ହଲେଇ, ଥଣ୍ଡା ଚା'ଗ୍ଲାସ୍‌କୁ ଓଠରେ ଲଗେଇ ନିଜର ନାସ୍ତିବାକ୍ୟକୁ ଯୁକ୍ତିଦ୍ୱାରା ମଜବୁତ୍ କଲେ – ଏମିତି ଘଟଣା ପୂର୍ବରୁ କେବେ ଏ ସହରରେ ଘଟିଛି ? କିଡ୍‌ନାପିଂ କରିବା ଭଳି ଦମ୍ ଏଠିକାର ଦାଦାମାନଙ୍କର ଅଛି ବୋଲି ଆପଣ ଭାବୁଛନ୍ତି ?

ଦ୍ୱିତୀୟ ବ୍ୟକ୍ତି ନଛୋଡ଼ ବନ୍ଧା । 'ଘଟିନାହିଁ ବୋଲି ଯେ ଘଟିବ ନାହିଁ ଏମିତି କିଛି ଗ୍ୟାରେଣ୍ଟି ଅଛି !' ସେ ଏଥର ଅନ୍ୟମାନଙ୍କର ସମର୍ଥନ ଆଶାକଲେ । 'ବାଇକ୍ ଚୋରି କ'ଣ ଆଗରୁ ଏଠି ଥିଲା? କୁହନ୍ତୁ? ରାସ୍ତାରେ ମହିଳାଙ୍କ ଠାରୁ ହାରଲୁଟି? ଥିଲା କି? ଆଚ୍ଛା ଟେଣ୍ଡର୍ ଫିକ୍ସିଂ କଥା, ୱାର୍କ୍ସ ଡିପାର୍ଟମେଣ୍ଟରେ ଯାହା ଏବେ ଏବେ ଘଟିଲା ଆପଣମାନେ ଜାଣନ୍ତି, ଏସବୁ କ'ଣ ଆଗରୁ ଥିଲା?' ଭଦ୍ରବ୍ୟକ୍ତିଙ୍କର ଅକାଟ୍ୟଯୁକ୍ତି ଉପସ୍ଥିତ ବୁଦ୍ଧିଜୀବୀଙ୍କୁ ଅଧିକ ଚିନ୍ତାଗ୍ରସ୍ତ କଲା ଏବଂ ଚା'ଦୋକାନୀ ଡାକ ମାରିଲା – ଆଜ୍ଞା, ଆଉ କପେ କପେ ହଉ ।

ବ୍ୟସ୍ତ, ବିବ୍ରତ ପ୍ରଭାଦେବୀ ଘରୁ ଦାଣ୍ଡ ଦୁଆର, ଗେଟ୍‌ରୁ ରାସ୍ତା, ରାସ୍ତାରୁ ଘର ଏମିତି ବାୟାଣୀଙ୍କ ଭଳି ହେଉଛନ୍ତି । ମଳୟ ବାବୁଙ୍କ ମୁଣ୍ଡରେ କିଛି ଉପାୟ ଢୁକୁନାହିଁ । ସେ ପ୍ରାୟ ମୂକ । ପୃଥିବୀରେ ଗୋଟିଏ ପୁଅର ବାପ ବୋଧହୁଏ ସବୁଠୁ ଦୁଃଖି । ସବୁଥାଇ ମଧ୍ୟ ସେ ଅରକ୍ଷିତ । ମାତ୍ର ଆଠଘଣ୍ଟା ସମୟ ଭିତରେ ଏହି ଗୂଢ଼ତତ୍ତ୍ୱ ମଳୟ ବାବୁ ବେଶ ବୁଝିଗଲେ । 'ବ୍ୟସ୍ତ ହୁଅନ୍ତୁ ନାହିଁ, ସବୁ ଠିକ୍ ହୋଇଯିବ, ବବ୍‌ଲୁ ନିଶ୍ଚୟ ଫେରିବ' ଏଭଳି ଆଶ୍ୱାସନା ବାଣୀ ତାଙ୍କ ମୁଣ୍ଡ ଉପରେ ଯାଉଛି ସିନା, କାନ ଭିତରକୁ ଯାଉନାହିଁ । ଏବେ ପଡ଼ୋଶୀମାନେ ତାଙ୍କ କ୍ୱାର୍ଟର୍ସରେ ଏକାଠି ହୋଇ ଯୋଜନା, ଆଲୋଚନା ଏବଂ ବାଟ ଖୋଜିବାରେ ବ୍ୟସ୍ତ । ନିଜ ନିଜର ଦୂର ସମ୍ପର୍କୀୟମାନଙ୍କୁ ଏହି ଘଟଣା ସମ୍ପର୍କରେ ସମ୍ୟକ୍ ସୂଚନା ଦେଇ, ସେମାନଙ୍କ ପିଲାମାନଙ୍କ ଉପରେ କଡ଼ାନଜର ରଖିବାକୁ ଉପଦେଶ ଦେଉଛନ୍ତି । ପ୍ରାୟତଃ, ସମସ୍ତଙ୍କର ମୋବାଇଲ ଏବେ ବ୍ୟସ୍ତ ।

'ଏବେ ପେପର୍‌ରେ ବାହାରିଥିଲା' ଜଣେ ପଡ଼ୋଶୀ ଫୋନ୍ ଶେଷ କରି କଥା ଆରମ୍ଭ କଲେ – 'ଠିକ୍ ଭାବେ କେଉଁ ପେପର୍ ମନେପଡୁନି, କିନ୍ତୁ ଖବରଟି ଥିଲା, ଉତ୍ତରପ୍ରଦେଶ – ବିହାରରେ ଗୋଟେ ବଡ଼ ଛୁଆ-ଚୋରି ର୍‍ୟାକେଟ୍ ଏବେ ଧରାପଡ଼ିଛି । ବହୁତ ବଡ଼ ବଡ଼ ଲୋକ ଏଥିରେ ସାମିଲ ଥିବାର ସନ୍ଦେହ ହେଉଛି ।' ତା'ପରେ ହଠାତ୍ ମନେପକାଇ କହିଲେ, ଗତମାସ ପଚିଶ/ଛବିଶର 'ସମାଜ' ଅଛି କି?

ଭଦ୍ରଲୋକଙ୍କର ରିପୋର୍ଟୀୟ ତଥ୍ୟକୁ କେହି ଗୁରୁତ୍ୱ ଦେଲେ ନାହିଁ । କେବଳ ମଳୟ ବାବୁଙ୍କ ମଳିନ ପଡ଼ିଯାଇଥିବା ମୁହଁକୁ ଦୁଇ ତିନିଜଣ ଚାହିଁଲେ ।

'ଆପଣ ସ୍ଲମଡଗ୍ ଫିଲ୍ମ ଦେଖିଛନ୍ତି?' ଆଉ ଜଣେ ଉପସ୍ଥିତ ଶୁଭେଚ୍ଛୁ ପ୍ରଶ୍ନକଲେ, ପୂର୍ବ ପ୍ରଶ୍ନକର୍ତ୍ତାଙ୍କୁ । 'ଛୋଟ ପିଲାଙ୍କର କେମିତି ଆଖି ତାଡୁଥିଲା ସେ ନରାଧମ ! ଭଗବାନ କେମିତି ସହିଛନ୍ତି ସେମାନଙ୍କୁ, ଓଃ, କି କରୁଣ, ହୃଦୟ ବିଦାରକ ଦୃଶ୍ୟ! ଅବଶ୍ୟ ଗୁଡ଼ିଏ ପୁରସ୍କାର ପାଇଲା ସେ ଚଳଚ୍ଚିତ୍ର ।'

'ଆପଣ ଚଳଚ୍ଚିତ୍ର କଥା କ'ଣ କହୁଛନ୍ତି ମ!' ପ୍ରଥମ ବକ୍ତା ହସ୍ତକ୍ଷେପ କଲେ । ଆପଣ କ'ଣ ଭୁଲିଗଲେ ନିଠାରିର ସେ ନରଖାଦକ କଥା, ଏଇତ ଗତବର୍ଷର କଥା । ପ୍ରାୟ ତିରିଶରୁ ଊର୍ଦ୍ଧ୍ୱ ପିଲା ସେ ଅଞ୍ଚଳରୁ ପରା ନିଖୋଜ ଥିଲେ ।'

'କି ବାଜେ କଥାସବୁ ତୁମେ କହୁଛ ଏଠି?' ବକ୍ତାଙ୍କର ପତ୍ନୀ ପ୍ରତିକ୍ରିୟା ପ୍ରକାଶକଲେ । ଏବେ ଛୁଆଟା କୋଉଠି ଥିବ, କ'ଣ କରୁଥିବ ସେ କଥା ହେଲେ ଚିନ୍ତାକର । କୁଆଡ଼େ ହେଲେ ଗାଡ଼ି କରି ଯାଉନାହାନ୍ତି ଖୋଜାଖୋଜି କରିବାକୁ ।'

ଭଦ୍ର ମହିଳାଙ୍କର ବକ୍ତବ୍ୟ ହଠାତ ନୀରବତା ସଂଚାର କଲା । 'ପୋଲିସ୍‌କୁ ଖବର ଦେଇଛନ୍ତି ମଳୟ ବାବୁ?' ଅନ୍ୟଜଣେ ଉପସ୍ଥିତ ପଡ଼ୋଶୀ ପ୍ରସ୍ତାବ ଦେଲେ, 'ମୋର ବନ୍ଧୁ ଡି.ଏସ୍.ପି. ଅଛନ୍ତି, ତାଙ୍କୁ କହିବା ?'

ପ୍ରଥମେ ମଳୟ ବାବୁ ଅମଙ୍ଗ ହେଉଥିଲେ । ତାଙ୍କର ଧାରଣା, ପୁଲିସ୍‌ବାଲା ବେଳେବେଳେ ସହଜ କାମଟିକୁ ଜଟିଳ କରିଦିଅନ୍ତି । ଯଦି ଟଙ୍କା ଲୋଭରେ କିଏ କିଡ୍‌ନାପ୍ କରିଥିବ, ସେ ତ ନିଶ୍ଚୟ ଫୋନ୍ କରିବ, ଟଙ୍କା ଆଠ/ଦଶ ଲକ୍ଷ ବରଂ ଦେଇଦେଲେ ପୁଅ ଚୁପ୍‌ଚାପ୍ ଆସି ପହଂଚିଯିବ । ପୁଲିସ ପଶିଲେ, ସବୁ ଅଡୁଆ ହୋଇଯାଇପାରେ ।

ଏକଥା ମନେ ମନେ ଭାବୁଥାନ୍ତି ମଳୟ ବାବୁ, ତେଣୁ ଡି.ଏସ୍.ପି.ଙ୍କ ପାଖକୁ ଫୋନ୍ ଲଗାଇ ସାରିଥିଲେ ପଡ଼ୋଶୀ ।

'ଡି.ଏସ୍.ପି. ପଚାରୁଛନ୍ତି, ପୁଅର ଭଲ ନାଁ ପ୍ରଜ୍ଞାନ କି?' ପଡ଼ୋଶୀ ଫୋନ୍ ଆଳାପକୁ ସ୍ଥଗିତ ରଖି, ମଳୟ ବାବୁଙ୍କ ଠାରୁ ଉତ୍ତର ଆଶାକଲେ ।

'ହଁ, ହଁ, ତା'ର ଭଲ ନାଁ ପ୍ରଜ୍ଞାନ ମହାନ୍ତି, ଆମେ ଡାକୁ ବବ୍‌ଲୁ ।' ଏକରକମ ସୋଫା ଉପରୁ ଡେଇଁପଡ଼ି ପଡ଼ୋଶୀଙ୍କ ପାଖକୁ ଲାଗିଆସିଲେ ମଳୟ ବାବୁ ।

ଅପରପାର୍ଶ୍ୱର କଥା କେବଳ ପଡ଼ୋଶୀ ଶୁଣୁଥାନ୍ତି, କିନ୍ତୁ ଏପଟୁ ସେ ଯେଉଁ ସଂକ୍ଷିପ୍ତ ପ୍ରତିକ୍ରିୟାମିଶ୍ରିତ କଥା କହୁଥାନ୍ତି, ସେକଥାକୁ ଟାକି ଚାହିଁଥାନ୍ତି ଉପସ୍ଥିତ ସମସ୍ତ ଶୁଭେଚ୍ଛୁ । ଏପଟୁ ପଡ଼ୋଶୀ କେବଳ କହୁଥାନ୍ତି, ହଁ ହଁ, ଆଚ୍ଛା, ସତେ!, ଓଃ... ।'

କଥାଶେଷରେ ବିଷଣ୍ଣ ବନ୍ଧୁ ଘୋଷଣା କଲେ ସାରାଂଶ – ଥାନା ପାଖ ପୋଲତଳୁ ପୋଲିସ ପାଇଛି ହଳେ ସ୍କୁଲ ଡ୍ରେସ୍, ବହିଭର୍ତ୍ତି ବ୍ୟାଗ, ପାଣି ବଟଲ, ଏବଂ ସ୍କୁଲ ଡାଏରି– ଯେଉଁଥିରେ ପିଲାର ନାଁ ଲେଖାଅଛି ପ୍ରଜ୍ଞାନ ମହାନ୍ତି ।

**ବବ୍‌ଲୁର ସ୍କୁଲ:**

ବବ୍‌ଲୁ ଯେଉଁ ଇଂରାଜୀ ମାଧ୍ୟମ ସ୍କୁଲରେ ପଢ଼େ, ଏ ସହରର ତାହା ଏକ ସମ୍ଭ୍ରାନ୍ତ ବିଦ୍ୟାଳୟ । ବଡ଼-ସାନ, ସରକାରୀ-ବେସରକାରୀ ଚାକିରିଆ, ବୃହତ-ମଧ୍ୟମ-କ୍ଷୁଦ୍ର ବ୍ୟବସାୟୀ, ଛୋଟ-ବଡ଼ ଠିକାଦାରଙ୍କ ଠାରୁ ଆରମ୍ଭ କରି ରିକ୍‌ସା ବାଲା, ଠେଲାବାଲାଙ୍କର ପ୍ରଥମ ପସନ୍ଦ ଏହି ସ୍କୁଲ ।

କାହିଁକି? ଏପରି ପ୍ରଶ୍ନର ଠିକ୍ ଏବଂ ନିର୍ଦ୍ଦିଷ୍ଟ ଉତ୍ତର କୌଣସି ପିତା-ମାତାଙ୍କ ପାଖରେ ଯଦିଓ ନଥାଏ, ତଥାପି ସମସ୍ତେ ଚାହାଁନ୍ତି, ଉଦ୍ୟମ କରନ୍ତି ନିଜ ପିଲାକୁ ଏହି ସ୍କୁଲରେ ଦାଖଲ କରିବାପାଇଁ । ଅସଫଳ ପିତା-ମାତା ବେଳେବେଳେ ନିଜ ଭାଗ୍ୟକୁ ଦୋଷଦିଅନ୍ତି ।

ବିଦ୍ୟାଳୟର ପରିପାଟୀ, ଚାକଚକ୍ୟ, ଆଦବ କାଇଦା ସବୁଥିରେ ଇଂରେଜୀ ଛାପ । ଦେଢ଼ହଜାରରୁ ଅଧିକ ପିଲା ପଢୁଥିବା ଏହି ବିଦ୍ୟାଳୟଟିର ପରିଚାଳନା ଭାର ଗୋଟିଏ ଧାର୍ମିକ ମିଶନାରୀ ସଂସ୍ଥା ଉପରେ ନ୍ୟସ୍ତ, ଯାହାର ମୁଖ୍ୟ ଦପ୍ତର ଚେନ୍ନାଇରେ । ଏହିପରି ଆହୁରି ଆଠ/ଦଶଟି ସ୍କୁଲ ଭିନ୍ନ ଭିନ୍ନ ନାଁରେ ଏହି ସଂସ୍ଥା ଖୋଲିଛି ଓଡ଼ିଶାରେ, ଅନ୍ୟ ପ୍ରଦେଶର ହିସାବ ଠିକ୍ ଭାବେ କେହି ଦେଇପାରନ୍ତି ନାହିଁ ।

ବବ୍‌ଲୁ ତିନିବର୍ଷରୁ ଏହି ସ୍କୁଲରେ । ନର୍ସରୀ ଶ୍ରେଣୀରୁ ହିଁ ତା ବସ୍ତାନିର ଓଜନ ତା ନିଜ ଓଜନ ଠାରୁ ଅଧାରୁ ସାମାନ୍ୟ ଅଧିକ । ପ୍ରଥମ ପାଞ୍ଚବର୍ଷ ରିକ୍‌ସାରେ ଆସୁଥିଲା । ରିକ୍‌ସା ଗେଟ୍ ପାଖରେ ପିଲାଙ୍କୁ ଓହ୍ଲାଇଦିଏ । ମୋଟିଆମାନେ ଧାନବସ୍ତା ପିଠିରେ ଲଦି ଗୋଦାମ ଭିତରକୁ ଯିବା ଭଳି, ଅନ୍ୟ ପିଲାଙ୍କ ଭଳି ପିଠିରେ ବସ୍ତାନି ଲଦି ଆଗକୁ ଝୁଙ୍କି ଝୁଙ୍କି ବ୍ୟାଗ୍ ବୋହିଚାଲେ ବବ୍‌ଲୁ, ଗେଟ୍ ପାଖରୁ ଶ୍ରେଣୀ କକ୍ଷ ପର୍ଯ୍ୟନ୍ତ । ସାଇକେଲ୍‌ରେ ଆସିବା ପରେ ଭାର ଟିକେ ଲାଘବ ହୋଇଛି । ସାଇକେଲ ଷ୍ଟାଣ୍ଡଟି ଠିକ୍ ଶ୍ରେଣୀକକ୍ଷ ତଳେ ।

ଏହି ସ୍କୁଲରେ ସବୁପିଲା ପରୀକ୍ଷାରେ ଭଲ ନମ୍ବର ରଖନ୍ତି । ଅଶୀ ପ୍ରତିଶତରୁ ପ୍ରାୟ କାହାରି କମେ ନାହିଁ । ଏପରିକି, ବାନାନା, ଆପୁଲ ଠିକ୍ ଲେଖିପାରି ନଥିବା ଷ୍ଟାଣ୍ଡାର୍ଡ ୱାନ୍‌ରେ ବବ୍‌ଲୁର ଦୁଇ ସାଙ୍ଗ ବୟାଅଶୀ ପର୍‌ସେଣ୍ଟ ରଖିବାରୁ, ଅସନ୍ତୁଷ୍ଟ ତା'ର ଡାଡି-ମମି ପୁନଃମୂଲ୍ୟାୟନପାଇଁ ଦରଖାସ୍ତ କଲେ । ସେ ପିଲାର ପଞ୍ଚାଅଶୀ ପର୍‌ସେଣ୍ଟ ନମ୍ବର ରହିଲା ଏବଂ ମେଧା ତାଲିକାରେ ଶ୍ରେଣୀର ପ୍ରଥମ ଦଶ ଜଣଙ୍କ ମଧ୍ୟରେ ସ୍ଥାନ ପାଇବାରୁ ସଚେତନ ପିତା-ମାତା ଟିକେ ଆଶ୍ୱସ୍ତ ହେଲେ । ବବ୍‌ଲୁର କେତେବେଳେ ବି ନବେ ପ୍ରତିଶତରୁ କମ୍ ରହିନାହିଁ ।

କିନ୍ତୁ ଅବଶୋଷ! ବବ୍‌ଲୁ କେବେବି ଶ୍ରେଣୀରେ ପ୍ରଥମ ହୋଇପାରିଲା ନାହିଁ । ଏଥିପାଇଁ ମଳୟ ବାବୁ-ପ୍ରଭାଦେବୀଙ୍କ ମନ ଟିକେ ଉଣାଥାଏ । କାରଣ ପରୀକ୍ଷା ଫଳ ବାହାରିବା ଦିନ ସେମାନଙ୍କର ଇଚ୍ଛାଥାଏ, ରମେଶ ବାବୁ, ପ୍ରଣତୀ ମାଡାମଙ୍କ ଭଳି ସେମାନେ ମଧ୍ୟ ମିଠା ପ୍ୟାକେଟ୍ ଧରି ବବ୍‌ଲୁ ସାଙ୍ଗମାନଙ୍କ ଘରେ ପହଂଚିଯାନ୍ତେ, ତା'ସାଙ୍ଗର ର୍‍ୟାଙ୍କ କେତେ ପଚାରନ୍ତେ ଏବଂ ମିଠାବାଣ୍ଟି କୁହନ୍ତେ, ବବ୍‌ଲୁ ଏଥର କ୍ଲାସ୍‌ରେ ଫାଷ୍ଟହୋଇଛି । କିନ୍ତୁ ସେ ସୁଯୋଗ ତାଙ୍କୁ ଏଯାବତ୍ ମିଳିନାହିଁ ।

ଯେତେଭଲ ଲେଖିଲେ ମଧ୍ୟ, ବବ୍‌ଲୁ ଫାଷ୍ଟ ହୋଇପାରିବ ନାହିଁ, ଏକଥା ନିଜେ ବବ୍‌ଲୁ ଜାଣେ । କାରଣ ହେଉଛି, ରୋଜି । ରୋଜି ଭଲପଢ଼େ, ବବ୍‌ଲୁ ବି ଭଲ ପଢ଼େ । କିନ୍ତୁ ରୋଜି ଉପରେ ଦିଦିମାନଙ୍କର ଅଧିକ ଆଶୀର୍ବାଦ ଥାଏ । ଗୁରୁଦିବସରେ ଦିଦିମାନଙ୍କୁ ରୋଜି ଶହେ ଟଙ୍କିଆ ପାର୍କର୍ କଲମ ଦିଏ । ନୂଆବର୍ଷରେ ନୂଆ ନୂଆ ତାଏରି ଉପହାର ଦିଏ । କିନ୍ତୁ, ବବ୍‌ଲୁ ଶୁଭେଚ୍ଛା କାର୍ଡ଼, ଫୁଲତୋଡ଼ା ଦିଏ । ରୋଜିକୁ ତିନିଜଣ ଦିଦି ତା'ଘରେ ଯାଇ ଟ୍ୟୁସନ୍ ପଢ଼ାନ୍ତି, ବବ୍‌ଲୁ ନିଜେ ତା ମମି ପାଖରେ ପଢ଼େ । ଅନ୍ୟ ସବୁଥିରେ ପ୍ରାୟ ସମାନ ନମ୍ବର ଦୁଇଜଣଙ୍କର ଥାଏ । କିନ୍ତୁ ରିଡ଼ିଙ୍ଗ ଟେଷ୍ଟ, ଡ୍ରଇଂ, ହସ୍ତାକ୍ଷର ଲିଖନରେ ରୋଜି ଦଶ ନମ୍ବରରୁ ପନ୍ଦର ନମ୍ବର ଅଧିକ ନିଶ୍ଚୟ ପାଇବ । ଯାହା ହେଲ ବି ଇଂଜିନିୟର୍ ଆଉ ବ୍ୟାଙ୍କ ଅଫିସ୍‌ର ବାପାଙ୍କ ମଧ୍ୟରେ ଟିକେ ପ୍ରଭେଦ ରହିବ ହିଁ ରହିବ ।

ସ୍କୁଲରେ ଶୃଙ୍ଖଳା ବ୍ୟବସ୍ଥା ଖୁବ୍ କଡ଼ା । ଏମିତିକି ତିନି ଚାରି ବର୍ଷର ଶିଶୁ ମଧ୍ୟ ଶୃଙ୍ଖଳା ନିୟମ ମାନିବାକୁ ବାଧ୍ୟ । ବବ୍‌ଲୁ ଯେତେବେଳେ ନର୍ସରୀରେ ନାଁ ଲେଖେଇଲା । ସେତେବେଳେ ସେ ସମ୍ପୂର୍ଣ୍ଣ ଭାବେ ମା'କ୍ଷୀର ଛାଡ଼ି ନଥିଲା । କିମ୍ବା, ହାତରେ ଖାଇ ଜାଣି ନଥିଲା । ଗୋଟାଏ ଛୁଆ, ତେଣୁ ଅଧିକ ଗେହ୍ଲା ବି । ତ, ନର୍ସରୀ ଶ୍ରେଣୀରେ ପହଂଚି ଦେଖିଲା, ତା ବୟସର ଗୁଡ଼ିଏ ପିଲା ଗୋଟାଏ ଘରେ ବସି କାନ୍ଦୁଛନ୍ତି । ମାଁ ମାଁ, ମତେ ନେଁ ନେଁ । ଭେଁ ଭେଁ ରଡ଼ିଶୁଣି ତାକୁ ମଧ୍ୟ କାନ୍ଦ ମାଡ଼ିଲା । ବାପା-ମାଙ୍କ ହାତ ଛାଡ଼ିବାକୁ ସେ ନାରାଜ । ମିସ୍ ଯେତେବେଳେ ତାକୁ ଟେକି ନେଇ ପିଲାଙ୍କ ଭିତରେ ଛାଡ଼ିଦେଲେ, ସେ ଭେଁ କରି କାନ୍ଦିଉଠିଲା । ଝର୍କା ସେପଟେ ପିତା-ମାତା ମାନେ ଏ କରୁଣ ଦୃଶ୍ୟକୁ ଛାତି ପଥର କରି ଦେଖୁଥିବା ବେଳେ, ପ୍ରିନ୍ସପାଲ ଆସିଲେ । ତାଙ୍କ ନିର୍ଦ୍ଦେଶରେ ସମସ୍ତ ଝର୍କା କବାଟ ବନ୍ଦ କରିଦିଆଗଲା । ଘର ଭିତରେ ପିଲାମାନେ ଅଧିକ ରଡ଼ି ଛାଡ଼ିଲେ । ବିଚଳିତ ପିତା-ମାତାଙ୍କୁ ଅଧ୍ୟକ୍ଷ ବୁଝେଇ ଦେଲେ ଇଂରାଜୀରେ - ଆପଣମାନେ ମୁହଁ ଦେଖେଇଲେ, ପିଲାଟି ଶୃଙ୍ଖଳା ଶିଖିବ କେମିତି? ଆପଣମାନେ ବ୍ୟସ୍ତ ହୁଅନ୍ତୁ ନାହିଁ, ଆମ ଉପରେ

ଭରସା ରଖନ୍ତୁ । ପିଲାଟି ଯେପରି ସମୟ ଅପଚୟ କରି ଚଗଲା ନହୁଏ, ଅନ୍ୟ କେଉଁ ଆଡ଼େ ମନ ନଲଗାଏ, ସେଥିପ୍ରତି ସ୍କୁଲ କର୍ତ୍ତୃପକ୍ଷ ଅଧିକ ସଚେନତ ଥାନ୍ତି । ଶ୍ରେଣୀରେ ଯେତିକି ପାଠପଢ଼ା ହୁଏ ତା'ର ଦଶ ଗୁଣ ପାଠ ଗୃହକର୍ମପାଇଁ ଦିଆଯାଏ । ନ କରିପାରିଲେ ଦଣ୍ଡ ବ୍ୟବସ୍ଥା ଅଛି । ବିଦ୍ୟାଳୟରୁ ଛୁଟି ହେଲେ ମଧ୍ୟ, ଗୃହକର୍ମର ଶୃଙ୍ଖଳା ପିଲାମୁଣ୍ଡରେ ଖଣ୍ଡା ଭଳି ଝୁଲି ରହିଥାଏ । ଗୃହକର୍ମ ଶେଷ କରୁକରୁ ରାତି ବାର । ହଲିବାକୁ ବାଟ ନାହିଁ, ବଦ୍‌ମାସି କରିବ କ'ଣ? ସରକାରୀ ବିଦ୍ୟାଳୟଗୁଡ଼ିକ ଏ ଦୃଷ୍ଟିରୁ ଟିକେ ଅଲଗା । ଛୁଟି ହେଲେ ତ ପିଲାମାନେ ବସ୍ତାନି ଫୋପାଡ଼ି ଡିଆଁମାରନ୍ତି । ଗୁଲିଦଣ୍ଡା, କ୍ରିକେଟ, ଗୋଡ଼ାଗୋଡ଼ି, ଗଛଚଢ଼ାରେ ସେମାନେ ବ୍ୟସ୍ତ ରୁହନ୍ତି । ଛୁଟିଦିନରେ ପାଠ ନ ପଢ଼ିବା ତ ଗୋଟାଏ ବିଧି ସେମାନଙ୍କର । ବବଲୁ ସ୍କୁଲ, ପୂରାପୂରି ଅଲଗା ।

ବେଳେବେଳେ ଅସୁବିଧା ବି ହୁଏ । ବିଜ୍ଞାନ ଶ୍ରେଣୀରେ ହିନ୍ଦି ଶିକ୍ଷକ, କମ୍ପ୍ୟୁଟର୍ ଶ୍ରେଣୀରେ ପି.ଇ.ଟି. ସାର, ଇଂରାଜୀ ଶ୍ରେଣୀରେ ଭୂଗୋଳ ଶିକ୍ଷକ ଶ୍ରେଣୀ ସମ୍ଭାଳିବାକୁ ଯା'ନ୍ତି । ମାସରେ ଆଠ ଦଶଥର ପ୍ରାୟ ଏମିତି ହୁଏ । ଅଭିଭାବକ ଅଭିଯୋଗ କଲେ ପ୍ରିନ୍ସପାଲ ଅତି ମଧୁର ଭାଷାରେ ବୁଝାଇ ଦିଅନ୍ତି – 'ଆଡଜଷ୍ଟମେଣ୍ଟ । ଚାଇଲ୍ଡ ଲର୍ନ୍ସ ଆଡଜଷ୍ଟମେଣ୍ଟ । ହାଓ ଟୁ ଡିଲ୍ ଆଡଭର୍ସ ସିଚୁଏସନ୍ ।'

କିନ୍ତୁ ଅସଲ ଗୁମର୍ ସେ ଫିଟାନ୍ତି ନାହିଁ । ପ୍ରତିବର୍ଷ କିଛି ଶିକ୍ଷକ/ଶିକ୍ଷୟିତ୍ରୀ ସ୍କୁଲ ଛାଡ଼ି ଅନ୍ୟତ୍ର କର୍ମ ଅନ୍ୱେଷଣରେ ଯା'ନ୍ତି । ମାସିକ ଦେଢ଼ ହଜାର ଟଙ୍କା ଦରମା । ଟ୍ୟୁସନ୍ ଉପରେ ନିର୍ଭର କରି ଚଳିବାକୁ ହୁଏ । ସେମାନେ ଯୁକ୍ତି କରନ୍ତି, ପ୍ରତିବର୍ଷ ପିଲାଙ୍କର ଟ୍ୟୁସନ୍ ଫି, ବଢ଼ୁଛି ଦରମା ବଢ଼ୁନି କିଆଁ ?

ଏହି ଅବୁଝାମାନଙ୍କୁ କ'ଣ ଫିଟେଇ କହିବାକୁ ପଡ଼ିବ ଯେ, ଏହା ସର୍କାରୀ ସ୍କୁଲ ନୁହେଁ – ପଢ଼ା ନ ପଢ଼ା, ଦରମା ବଢ଼ିବ । ତା ଛଡ଼ା, ଯଦି ସବୁ ଟଙ୍କା ଦରମାରେ ଖର୍ଚ୍ଚ ହବ, ନୂଆ ଘର ତିଆରି ହବ କେମିତି, ଦାତବ୍ୟ ଡାକ୍ତରଖାନା ଚାଲିବ କେମିତି, ପ୍ରାର୍ଥନା ଗୃହ ନିର୍ମାଣ ହବ କେମିତି, ମାଗଣାରେ ଗରିବମାନଙ୍କୁ ଧର୍ମ ପୁସ୍ତକ ବଣ୍ଟାଯିବ କେମିତି? ଏସବୁ କଥା ଯେଉଁମାନେ ବୁଝିଛନ୍ତି, କୋଡ଼ିଏ/ପଚିଶ ବର୍ଷ ହେଲା ଏହି ସ୍କୁଲରେ ଅଛନ୍ତି ଛ'ହଜାର ଟଙ୍କା ଦରମା ପାଉଛନ୍ତି, ସେମାନେ ଅଭିଯୋଗ କରନ୍ତି ନାହିଁ ଯେ ସରକାରୀ ବିଦ୍ୟାଳୟର ତାଙ୍କ ସାମସମୟିକ ବନ୍ଧୁ କାହିଁକି ଅଠର ହଜାର ପାଏ, ଛୁଟି ପାଏ, ଚାକିରୀ ପରେ ପେନ୍‌ସନ୍ ବି ପାଇବ ।

ଶିକ୍ଷିତ–ଗୋଟି କହି ଯେଉଁମାନେ ଛାଡ଼ିପଳାନ୍ତି, ସେମାନଙ୍କୁ ପ୍ରକାରାନ୍ତରେ ସ୍କୁଲ କର୍ତ୍ତୃପକ୍ଷ ଶୁଣାଇ ଦିଅନ୍ତି – ସରକାରଙ୍କ ଦୟାରୁ ଆଜି କାଲି ବେକାରୀ ବି.ଏ., ଏମ୍.ଏ., ଯାହାକୁ ଯେତେ । ତୁମେ ଗଲେ ଆଉ ପାଞ୍ଚଜଣ ପରା ଆସିବାପାଇଁ ଗୋଡ଼ଟେକି ବସିଛନ୍ତି – ଯାଉଛ ଯଦି ଯା ।

ବବ୍‌ଲୁ ସ୍କୁଲରେ ନାଚ-ଗୀତ-ଡ୍ରଇଂ-ବକ୍ତୃତା ହୁଏ କାହିଁରେ କେତେ । ବିଭିନ୍ନ କମ୍ପାନୀ ସହଯୋଗରେ ଏସବୁ ହୁଏ । ରଙ୍ଗ-ତୁଳୀ କମ୍ପାନୀ ଡ୍ରଇଂ ପ୍ରତିଯୋଗିତା କରେ, ବହି ଛପା କମ୍ପାନୀ ବକ୍ତୃତା ପ୍ରତିଯୋଗିତା, ଖେଳ ସାମଗ୍ରୀ ତିଆରି କରୁଥିବା କମ୍ପାନୀ ଖେଳକୁଦ କରାନ୍ତି । ପିଲାମାନେ କେବଳ ଫି ଦାଖଲ କରି ମନଇଚ୍ଛା ଅଂଶଗ୍ରହଣ କରିବା କଥା । ଗୋଟିଏ ଇଭେଣ୍ଟ ପାଇଁ ଦଶ ଟଙ୍କା । ତୁମେ ଦଶଟିରେ ମଧ୍ୟ ଭାଗ ନେଇପାରିବ, ବାଧା ନାହିଁ । ବବ୍‌ଲୁ ସବୁଥିରେ ଥାଏ । ଅଥଚ କେଉଁଥିରେ ପ୍ରଥମ/ଦ୍ୱିତୀୟ/ତୃତୀୟ ହୋଇପାରେ ନାହିଁ । ଗୋଟାଏ ଅବଶୋଷ କେବଳ ତା'ମନରେ ନୁହେଁ, ତା'ଡାଡି-ମମିଙ୍କ ମନରେ ଜମାଟ ବାନ୍ଧେ । ବାର୍ଷିକ ଉତ୍ସବରେ ଷ୍ଟେଜ୍ ଉପରୁ ପିଲାମାନେ ଯେତେବେଳେ କପ୍, ସାର୍ଟିଫିକେଟ୍ ଆଣନ୍ତି, ବବ୍‌ଲୁ ତା ମମି ସହ ବସିଥାଏ ଦର୍ଶକ ଗ୍ୟାଲେରିର ଗୋଟେ କଣକୁ ଏବଂ ଖୁନ୍ଦା ଖାଉଥାଏ ।

ଥରେ ଶ୍ରେଣୀରେ ବବ୍‌ଲୁ ତା'ର ଜଣେ ସାଙ୍ଗକୁ ପଚାରିଦେଲା- 'ମୋ ପେନ୍‌ସିଲ ନେଇଛୁକି ?' ଏକଥା ଉପସ୍ଥିତ ମିସ୍‌ଙ୍କ କାନରେ ବାଜିଗଲା । ଶୃଙ୍ଖଳା ଭଙ୍ଗ ଅଭିଯୋଗରେ ତାକୁ କୋଡ଼ିଏ ଟଙ୍କା ଜୋରିମାନା ଦେବାକୁ ପଡ଼ିଲା । ତା'ର ଅପରାଧ, ଶ୍ରେଣୀ କକ୍ଷରେ ଚାରିଗୋଟି ଓଡ଼ିଆ ଶବ୍ଦ ସେ ଉଚ୍ଚାରଣ କରିଛି । ସ୍କୁଲ ଶୃଙ୍ଖଳା ହେଉଛି- କ୍ୟାମ୍ପସ୍‌ରେ ଓଡ଼ିଆ ନିଷେଧ । ହତା ଭିତରେ କେଉଁଠି ବି ଯଦି ପାଟିରୁ ଓଡ଼ିଆ ବାହାରିଲା, ଗୋଟାଏ ଶବ୍ଦକୁ ପାଞ୍ଚ ଟଙ୍କା ଫାଇନ୍ । କମ୍‌ସେ କମ୍, ପ୍ରତିମାସରେ ଦୁଇଶ ଶବ୍ଦ ତ ପିଲାଙ୍କ ପାଟିରୁ ଖସିଯାଏ ଏବଂ ସେମାନେ ଦଣ୍ଡପା'ନ୍ତି ।

ଦଣ୍ଡବିଧାନରେ ବିଳମ୍ବ ନାହିଁ । ତତ୍କାଳ ଦଣ୍ଡ । ସାର୍ଟ ଯଦି ସାମାନ୍ୟ ମଇଳା ହେଲା, ଦଣ୍ଡ । ଜୋତାରେ ମୁହଁ ଦିଶୁନାହିଁ, ଦଣ୍ଡ, ଟାଇର ଦୁଇବାହୁ ଆନୁପାତିକ ଭାବେ ଛୋଟବଡ଼ ହେଲା ନାହିଁ, ଦଣ୍ଡ । ଗୋଟିଏ ଶ୍ରେଣୀରେ ଦୁଇଥର ପରିସ୍ରା ଲାଗିଲା, ଦଣ୍ଡ । ଏହା ବାଦ୍, ବିଳମ୍ବରେ ପହଂଚିଲେ, ଅନୁପସ୍ଥିତ ରହିଲେ, କଲମରୁ ଅବେଳରେ କାଳି ସରିଲେ, ଟିଚର୍‌ଙ୍କୁ ଦେଖି ଗୁଡ଼ ମର୍ଣ୍ଣିଂ ନକହି ମୁହଁପୋତି ଚାଲିଗଲେ- ଏସବୁ ଶୃଙ୍ଖଳାଭଙ୍ଗ ପାଇଁ ପୂର୍ବରୁ ଦଣ୍ଡର ପରିମାଣ ସ୍ଥିର ହୋଇ ନୋଟିସ୍ ବୋର୍ଡ଼ରେ ମରାଯାଇଛି । ପିଲାଙ୍କପାଇଁ ଆଶ୍ୱାସନାର ବିଷୟ, ଏହି ଦଣ୍ଡ ଶାରୀରିକ ନ ହୋଇ ଆର୍ଥିକ ହୋଇଥିବାରୁ, ଆର ମାସ ଦରମା ସହ ତାହା ଦାଖଲ କରିବାକୁ ପଡ଼େ । ଆଣ୍ଠୁତଳେ ଗୋଡ଼ି ଦେଇ ହାମୁଡ଼େଇବା, ଏକ ଗୋଡ଼ିକିଏ ଠିଆ ହେବା କିମ୍ବା କାନ ଧରି ଉଠବସ ହେବା ଭଳି ସରକାରୀ ସ୍କୁଲ ଦଣ୍ଡ ଏଠାରେ ନାହିଁ, ଏଣୁ ପିଲା ବି ଖୁସ୍ । ବବ୍‌ଲୁ ବିଶେଷ କରି ମୁହଁପୋତା ଚାଲି ଏବଂ ଓଡ଼ିଆ ଶବ୍ଦ ଉଚ୍ଚାରଣ ପାଇଁ ଦଣ୍ଡିତ ହୁଏ । କାହିଁକି କେଜାଣି, ଯେତେ ଦଣ୍ଡ ପାଇଲେ ବି ତା'ମୁଣ୍ଡ ସିଧା

ହୋଇପାରେନା କିମ୍ବା ଓଡ଼ିଆ ଶବ୍ଦ ସମ୍ପୂର୍ଣ୍ଣ ଭାବେ ବନ୍ଦ ହୋଇପାରେନା ଶିକ୍ଷକଙ୍କ ଭାଷାରେ ସେ ସ୍ମାର୍ଟ ହୋଇପାରେନା ।

**ୱାଲ୍‌ଟିୟର୍ ଷ୍ଟେସନରେ ବବ୍‌ଲୁ:**

ବିଜୟ ବାବୁ ତ ବିଶ୍ୱାସ କରିପାରିଲେ ନାହିଁ । ବବ୍‌ଲୁ ତାଙ୍କୁ ଦେଖି ମୁହଁ ବୁଲେଇ ପଳେଇଲା କେମିତି!

ଘରକୁ ଗଲେ ବବ୍‌ଲୁ ଧାଇଁ ଆସି ପ୍ରଥମେ ଖୋଜିବ 'ଅଙ୍କଲ୍ ମୋବାଇଲ ?' କେଉଁ ମୋବାଇଲ ଭିତରେ କି କି ପ୍ରକାର ଖେଳ ଅଛି, ମୋବାଇଲ ଧରିଥିବା ଲୋକଟି ଜାଣି ନଥିବ, କିନ୍ତୁ ବବ୍‌ଲୁକୁ ମାଲୁମ । ବିଜୟ ବାବୁଙ୍କ ସଉକ, ପ୍ରତି ଛ'ମାସରେ ମୋବାଇଲ ବଦଳେଇବେ । ଏକଥା ବବ୍‌ଲୁ ଜାଣେ । ତେଣୁ ସେ ଯେତେବେଳେ ବବ୍‌ଲୁ ଘରକୁ ଆସନ୍ତି, ସେ କୁରୁଳି ଉଠେ ।

କିନ୍ତୁ, ଷ୍ଟେସନ୍‌ରେ ତାଙ୍କୁ ଦେଖି ଖୁସିହେବା ବଦଳରେ ଯେତେବେଳେ ଚୋରଙ୍କ ଭଳି କନ୍‌କନ୍ ହେଲା, ବିଜୟ ବାବୁଙ୍କର ସନ୍ଦେହ ଜନ୍ମିବା ସ୍ୱାଭାବିକ । ମେଡ଼ିକାଲ ଚେକ୍‌ଅପ ସାରି, ସେ ଫେରନ୍ତା ଗାଡ଼ିକୁ ଅପେକ୍ଷା କରିଥାନ୍ତି । ଗାଡ଼ି ଘଣ୍ଟାଏ ଡ଼େରିଅଛି ତ, ଏତିକିବେଳେ ଆଖିରେ ପଡ଼ିଲା ବବ୍‌ଲୁ ।

– କୁଆଡ଼େ ସବୁ ଯାଉଛ କିରେ ବବ୍‌ଲୁ ? ବାବା-ମାମା କୁଆଡ଼େ ଗଲେ ?

– ବବ୍‌ଲୁ ନୀରବ ।

ବିଜୟ ବାବୁଙ୍କର ସନ୍ଦେହ ଦ୍ୱିଗୁଣିତ ହେଲା । ତାଙ୍କ ପାଖରେ ବବ୍‌ଲୁର ଅସ୍ୱାଭାବିକ ଚୁପଚାପ ବ୍ୟବହାର, ଷ୍ଟେସନ୍‌ରେ ଏକଲା ବୁଲିବା ଦେଖି ସେ ଆଉ କିଛି ବିଚାର ନକରି ପ୍ରଥମେ ତା' ହାତକୁ ଖପ୍‌କରି ଧରିନେଲେ ଏବଂ ପାଖ ଚେୟାର୍ ପର୍ଯ୍ୟନ୍ତ ଏକରକମ୍ ଟାଣିଟାଣି ଆଣିଲେ ।

– ତୁ କ'ଣ ଏକା ଆସିଛୁ ନା ଆଉ କିଏ ଅଛନ୍ତି ତୋ ସହ?

– ମୁହଁ ତଳକୁ କରି ବବ୍‌ଲୁ ନୀରବ ।

– ମୋବାଇଲ୍‌ରେ ଖେଳିବୁ?

– ବବ୍‌ଲୁ ମୁଣ୍ଡ ହଲେଇଲା ।

ବିଜୟ ବାବୁ ଏଥର ଏପଟ ସେପଟ ଚାହିଁଲେ – ଆଶଙ୍କାରେ, ଆଶ୍ଚର୍ଯ୍ୟରେ ।

'ମୁଁ ଏକା ଆସିଛି ।' ବବ୍‌ଲୁ ପାଟି ଖୋଲିଲା । 'ମୁଁ କ'ଣ ଛୋଟ ପିଲା ହୋଇଛି କି? ଏଠୁ ଯିବି ରାୟପୁର, ତା'ପରେ ବମ୍ବେ ମାମୁଁଙ୍କ ପାଖକୁ ।'

ବିଜୟ ବାବୁ ଆବାକ୍ ଚାହିଁଲେ ତା'ର ଯୋଜନା ଶୁଣି । ଆଶ୍ଚର୍ଯ୍ୟ ହେଲେ ତା'ର ଦମ୍ଭ ଏବଂ ମନୋବଳ ଦେଖି । ବାର-ତେର ବର୍ଷର ଛୁଆ, କି ସାହସ! ସାହସ ନୁହେଁ ଏ, ଦୁଃସାହସ ।

'ତୋ ପାଖରେ ଟଙ୍କା ଅଛି? କେତେ ଅଛି ଦେଖେଇଲୁଁ ?' କଥାକୁ ହାଲକା କରିବାପାଇଁ ଚେଷ୍ଟାକଲେ ବିଜୟ ବାବୁ ।

– 'ଟଙ୍କା କ'ଣ ହବ ? ଦଶ ଟଙ୍କା ଥିଲା ଆସିଲା ବେଳେ । କେସିଙ୍ଗା ଷ୍ଟେସନ୍‌ରେ ପାଞ୍ଚ ଟଙ୍କାର ଚେନାଚୁର୍ କିଣିଲି, ଆଉ ପାଞ୍ଚ ଟଙ୍କା ଗୋଟେ ପିଲା ମାଗିଲା, ତାକୁ ଦେଇଦେଲି । ଭିକାରିଟାଏ ବୋଧେ ।'

– ଟଙ୍କା ନାହିଁ ତ ଟିକେଟ କେମିତି କରିବୁ?

– ଟିକେଟ କ'ଣ ହବ?

– ଯିବୁ କେମିତି ରାୟପୁର, ବମ୍ବେ?

– ଯେମିତି ଆସିଲି କେସିଙ୍ଗାରୁ ଏଠିକି?

କଥାପାଖକୁ କଥା ଖଞ୍ଜି ରଖିଥିଲା ବବ୍‌ଲୁ । ବିଜୟ ବାବୁ ଆମୋଦିତ ହେଉଥିଲେ ଶିହରିତ ବି । ବବ୍‌ଲୁ ସ୍ଥାନରେ ଯଦି ଆଜି ତାଙ୍କ ପୁଅ ଲିପୁନ୍ ଥାନ୍ତା! ଏକ ଅଜଣା ଆତଙ୍କରେ ତାଙ୍କ ମୁହଁ ଶୁଖିଲା ଦିଶିଲା । ଦିଶିଗଲା ମଳୟ ବାବୁଙ୍କର କରୁଣ ଚେହେରା ।

'ମୁଁ ବିନା ଟିକେଟ୍‌ରେ ପଳେଇଆସିଲି ।' ଅତି ସହଜ ଭାବେ ବବ୍‌ଲୁ ବଖାଣିଲା ତା'ର ଯାତ୍ରା କାହାଣୀ । ଟି.ଟି. ଯେଉଁ ଡବାରେ ଚଢ଼େ, ମୁଁ ସେ ଡବାରୁ ପଳେଇଯାଏ । ଯଦି ମୋ ପାଖରେ ପହଂଚିଯାଏ, ତେବେ ମୁଁ ଟଏଲେଟ୍‌ରେ ପଶି କବାଟ ବନ୍ଦ କରିଦିଏ, ନଚେତ ଯେଉଁଠି ଛୋଟପିଲା ସାଙ୍ଗରେ ସ୍ୱାମୀ–ସ୍ତ୍ରୀ ବସିଥାନ୍ତି, ତାଙ୍କ ପାଖରେ ମୁଁ ବସିପଡ଼େ । ଟି.ଟି. ଭାବେ ମୁଁ ତାଙ୍କରି ପିଲା । ବାସ୍ ।

'ଭୋକ ଲାଗୁନି ?' ଚାଲ ଖାଇବା । ବିଜୟ ବାବୁ ବବ୍‌ଲୁର ପିଠି ଥାପୁଡ଼େଇଲେ । ମୁଁ ଏଇ ଷ୍ଟେସନ୍ ପାଖ ହୋଟେଲରେ ପେଟେ ଖାଇଦେଇଛି । ଦୋକାନି ଟଙ୍କା ମାଗିବାରୁ ତାକୁ କହିଲି ବାପା ସେ ଟେବୁଲ୍‌ରେ ଖାଉଛନ୍ତି ସେ ଦେବେ । ତା'ପରେ ଖସିଆସିଲି ।

ବିଜୟ ବାବୁଙ୍କ ମୁଣ୍ଡ ବୁଲେଇଲା । ଏଡ଼େ କାଙ୍କୁଆଳ ! ମନେମନେ କହିଲେ, ମେଞ୍ଚଡ଼, ତୋର ଏ ଦୁଃସାହସରେ କୌଣସି ବାପର ଛାତି ଫୁଲି ଉଠିବନି, ବରଂ ଆଖିରେ ଲୁହ ଢକେଇ ଆସିବ ।

– ତୁ ତା'ହେଲେ କାଲି ସ୍କୁଲ ଯାଇ ନଥିଲୁ ?

– ସ୍କୁଲ ! ଏକ ତାଚ୍ଛଲ୍ୟ ମିଶା ପ୍ରତିକ୍ରିୟାରେ ହସିଲା ବବ୍‌ଲୁ । ସେ ସ୍କୁଲକୁ ମୁଁ ଆଉ କେବେବି ଯିବିନି । ଜାଣିଲେ ଅଙ୍କଲ୍ କେମିତି ଆସିଲି? ବବ୍‌ଲୁ ଉତ୍ସାହିତ ହେଲା, ବଖାଣିବାକୁ ତା'ର ବୀରତ୍ୱ ।

'ଏ ପ୍ୟାଣ୍ଟସାର୍ଟ ବ୍ୟାଗରେ ପୂରାଇ ଆଣିଲି । ଥାନା ପାଖ ପୋଲ ତଳେ ତାକୁ ବଦଳେଇ, ସ୍କୁଲ ଡ୍ରେସ୍ ବହି ବ୍ୟାଗ୍ ସେଇଠି ଫିଙ୍ଗି ଦେଲି, ତା'ପରେ ସାଇକେଲ ଧରି ଷ୍ଟେସନ୍ ପଳେଇଆସିଲି ! ଆଉ ଏ ଜୋତା ଦେଖିଲେ, ଏଇଟା କ'ଣ ମୋର ? ଚିହ୍ନିଲେ ?

ଥାଣୁ ହୋଇ ଶୁଣୁଥିଲେ ବିଜୟ ବାବୁ ! ଥାନା ପାଖରୁ ଷ୍ଟେସନ୍ ପଇଁତିରିଶ କି.ମି. ବାଟ । ସାଇକେଲରେ ପଳେଇ ଆସିଲା ଏ ଛୁଆ !

'ମୁଁ କାଲି ଏଇ ଷ୍ଟେସନ୍‌ରେ ଶୋଇ ପଡ଼ିଥିଲି, ଉଠି ଦେଖିଲା ବେଳକୁ ମୋ ଯୋତା ନାହିଁ! ମୁଁ କିଛି ସମୟ ଚାହିଁଲି ଏପଟ ସେପଟ, ତା'ପରେ ଗୋଟାଏ ଲୋକ ଶୋଇଥିଲା ତା ଯୋତା ପିନ୍ଧି ପଳେଇ ଆସିଲି ।'

– ହେଲେ ତୁ ଏକା ସାଇକେଲରେ ଆସିଲୁ କେମିତି ? ତତେ ଥକ୍‌କା ଲାଗିଲାନି ?

ବାଟରେ ଦୁଇଥର ଟ୍ୟୁବ୍‌ୱେଲ୍‌ରୁ ପାଣି ପିଇଛି । ହେଲେ ପାଣି ଭାରି ଖାରିଆ ।

ବିଜୟ ବାବୁ ନିଜ କାନକୁ ବିଶ୍ୱାସ କରିପାରୁ ନଥିଲେ । ଶାନ୍ତ, ଚୁପ୍‌ଚାପ, ଅନ୍ତର୍ମୁଖୀ ପିଲାଟିର ଯେମିତି ଆଗ୍ନେୟ ଉଦ୍‌ଗୀରଣ ଘଟୁଥିଲା । ସେ ଇଶ୍ୱରଙ୍କୁ କୃତଜ୍ଞତା ଜଣେଇଲେ – ଏ ପର୍ଯ୍ୟନ୍ତ କୌଣସି ଅସାମାଜିକ ତତ୍ତ୍ୱଙ୍କ ହାତରେ ପଡ଼ିନି ବବ୍‌ଲୁ । ଦୁନିଆର ଅସଲ ରୂପକୁ ବିଲ୍‌କୁଲ୍ ଦେଖି ନଥିବା ଏ ଅବୋଧ ବାଳକ ଜାଣେନାହିଁ, ଆମେ ଯାହା ସବୁ ଦେଖୁଛୁ, ଯେଉଁକଥା ଶୁଣୁଛୁ, ଯାହାକୁ ଆଦର୍ଶ ବୋଲି ଭାବୁଛୁ, ସେ ସବୁ ଗୋଟିଏ ଗୋଟିଏ ଛଦ୍ମବେଶ । ଯେଉଁଠି ସତ ଅପେକ୍ଷା ମିଛ ଅଧିକା, ସୁନା ଠାରୁ ଖାଦ ଢ଼େର ବେଶୀ । ଯାହାକୁ ଆମେ ଶୃଙ୍ଖଳା କହୁଛୁ, ସବୁ ବିଶୃଙ୍ଖଳାର ସେ ହିଁ କାରଣ । ଏସବୁ କଥା ବୁଝିବାକୁ ତତେ ଆହୁରି ଅନେକ ଦିନ ଲାଗିବ ।

ବିଳମ୍ବ ନକରି ବିଜୟ ବାବୁ ଏଥର ଫୋନ୍ ଲଗାଇଲେ, ହାଲୋ ମଳୟ ।



(ତୀରତରଙ୍ଗ – ପୂଜା ସଂଖ୍ୟା ୨୦୦୯)

# ବାବା ଆସୁଛନ୍ତି

ଅନାମପୁର ଆଜି ଚଳଚଞ୍ଚଳ । ଏକ ବିରଳ ମହୋତ୍ସବ ପାଇଁ ଲାଗିଛି ଧାଁ ଧପଡ଼, ବନ୍ଧୁ-ବାନ୍ଧବ ଯିବା ଆସିବା, ସମସ୍ତଙ୍କ ମୁହଁରେ ହସ, ମନରେ ଆନନ୍ଦ । ଏକ ସପ୍ତାହ ପୂର୍ବରୁ ଏ ଗାଁକୁ ଆମିଷ ପଶିନାହିଁ, ମାଛ ମାଂସ କଥା ଛାଡ଼ନ୍ତୁ ପିଆଜ ରସୁଣ ମଧ୍ୟ ନିଷେଧ । ସ୍ୱତଃପ୍ରବୃତ୍ତ ସାତ୍ତ୍ୱିକ ଭୋଜନ, ସାତ୍ତ୍ୱିକ ଆଚରଣ ।

ଗାଁଟି ଅତି ପରିଷ୍କାର ପରିଚ୍ଛନ୍ନ ଲାଗୁଛି । ସମସ୍ତଙ୍କ ଗୁହାଳେ ଗାଈ, ବଳଦ, ଛେଳି ଅଥଚ ଦାଣ୍ଡରେ ଗୋବର ଲେଣ୍ଡାଏ ନାହିଁ କି କୁଟା ଖଣ୍ଡିଏ ନାହିଁ । ଲିପା ପୋଛା ହୋଇ ଯେମିତି ଝୋଟିଚିତା ପଡ଼ିଛି, ସତେଅବା ମାର୍ଗଶୀର ଗୁରୁବାର ଲକ୍ଷ୍ମୀଓଷା! ପ୍ରତ୍ୟେକଙ୍କ ଦୁଆରେ ପୂର୍ଣ୍ଣକୁମ୍ଭ ଏବଂ କଦଳୀ ଗଛ ।

କେବଳ ଅନାମପୁର ନୁହେଁ ପାଖ ପଞ୍ଚାୟତର ଆଠ ଦଶ ଖଣ୍ଡ ଗାଁ ଲୋକେ ଚାହିଁ ବସିଛନ୍ତି ଆଜିର ଦିନକୁ, ବେଶ୍ କିଛି ଦିନ ହେଲା । ସମସ୍ତଙ୍କର ଆଶା ଅଛି, ବିଶ୍ୱାସ ଅଛି, ଭରସା ବି ଅଛି । ଦୁଃଖ, କଷ୍ଟ, ବ୍ୟାଧି ତାଙ୍କର ତମାମ ଜୀବନକୁ ଆକତା ମାକତା କରିଦେଇଛି, ଅକାଳରେ ଘୋଟି ଆସିଛି ବାର୍ଦ୍ଧକ୍ୟ, ଯନ୍ତ୍ରଣାରେ ଭେଦି ଭେଦି ଓଠରୁ ଲିଭିଗଲାଣି ହସ, ପୋଛି ହୋଇ ଯାଇଛି ମଣିଷଟିଏ ହୋଇ ବଞ୍ଚିବାର ସମସ୍ତ ରାହା । ସେମାନେ ଆଜି ଚାତକ ଭଳି ଅପେକ୍ଷା କରିଛନ୍ତି - ଅଣ୍ଟା ସଳଖି ଠିଆ ହେବାପାଇଁ ସାହସ ଟିକକ ମିଳିବ, ବ୍ୟର୍ଥ ହୋଇଥିବା ଜୀବନ ପୁଣି ସାର୍ଥକ ହେବ ।

ଗାଁର ପରମମିତ୍ର ଏବଂ ଚିର ଶତ୍ରୁ ହେଲା, ଉଦେଇ ନଈ । ତା'ର କ୍ଷୀଣ ଧାର ପାଣି ପିଇ ବଞ୍ଚିଛନ୍ତି ମଣିଷ, ଗୋରୁ ଗାଈ, ଗଛ ବୁଛ, କିନ୍ତୁ ଆଷାଢ଼ ମାସରେ ଉଦେଇର କ୍ଷୀଣ ଧାର ଅଭିମାନରେ ଫୁଲିଉଠେ - ଧୋଇ ଯାଏ ଧାନକ୍ଷେତ, ପାଳଗଦା, ଗାଈ ଗୁହାଳ । ଅଣ୍ଟା ଏମିତି ନଇଁଯାଏ ଯେ ସଳଖିବା ପାଇଁ ଲାଗିଯାଏ ଆହୁରି ପାଞ୍ଚବର୍ଷ ।

ଉଦେଇର ଅଦଉତିରୁ ତ୍ରାହି ପାଇବା ପାଇଁ ଏଠି ଘେରି ବନ୍ଧଟିଏ ଦରକାର । ତିନି ତିନି ଥର ଫଳକ ପୋତା ହୋଇ ଭୂମିପୂଜା ସରିଛି ମନ୍ତ୍ରୀମାନଙ୍କ କରକମଳରେ । ଅଥଚ ଭାଗ୍ୟର ବିଡ଼ମ୍ବନା ଏ ପର୍ଯ୍ୟନ୍ତ କାମ ଆରମ୍ଭ ହୋଇପାରି ନାହିଁ । ଏପରି କି ନଈରେ ପୋଲଟିଏ ପାଇଁ ଗୋଟାଏ ଖମ୍ବ ତିଆରି ଆରମ୍ଭ ହୋଇ ତିନିହାତ ଉଠିଛି, କୋଡ଼ିଏ ବର୍ଷ ତଳୁ । ଦଶଟି ଖମ୍ବ ତିଆରି ହେଲେ ପୋଲରେ ଛାତପଡ଼ିବ । ଆଉ କେତେ ଯୁଗ ଲାଗିବ, ଭଗବାନ ହିଁ ଜାଣନ୍ତି ।

ସମସ୍ତେ ଚାହିଁଛନ୍ତି । ସବୁ କଷ୍ଟ ମିଳେଇ ଯିବ,ସବୁ ଦୁଃଖ ଦୂରେଇ ଯିବ । କେବଳ ଆଗନ୍ତୁକଙ୍କୁ ଅପେକ୍ଷା ।

ବାବା ଆସୁଛନ୍ତି ।

ବାବାଙ୍କ ଆଗମନୀକୁ ଅପେକ୍ଷା କରିଛନ୍ତି ଆବାଳବୃଦ୍ଧବନୀତା ।

ବାବାଙ୍କୁ ପରିଚିତ କରାଇବା ସାମର୍ଥ ଆମର ନାହିଁ । କାରଣ ବାବା ହିଁ ତାଙ୍କର ନିଜର ପରିଚୟ । ଯେମିତିକି ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ ନକ୍ଷତ୍ର ସ୍ୱ ସ୍ୱ ନାମ କର୍ମ ଦ୍ୱାରା ପରିଚିତ ବାବା ଦୀନନାଥ ଓରଫ୍ ଦିବ୍ୟରଂଞ୍ଜନ ଓରଫ୍ ପରମପୂଜ୍ୟ ଶ୍ରୀ ଶ୍ରୀ ଶ୍ରୀ ରଞ୍ଜନ ମହାରାଜଙ୍କ ପରିଚୟ ସେ ନିଜେ ।

ବାବା ତ୍ରିକାଳ ଦର୍ଶୀ, ଯେଉଁ ସ୍ଥାନରେ ତା'ଙ୍କର ପଦରେଣୁ ପଡ଼େ ସେ ସ୍ଥାନ ପାଲଟି ଯାଏ ତୀର୍ଥସ୍ଥଳ । ଯେଉଁ ମାନବ ଉପରେ ବାବା ହସ୍ତ ରଖି ଆଶୀର୍ବାଦ କରିଦିଅନ୍ତି ତିନି ପୁରୁଷ ପାଇଁ ତା'ର ଦୁଃଖ-ଦୈନ୍ୟ ଉଭେଇ ଯାଏ । ଏପରି କି ସ୍ମିତହାସ୍ୟରେ ବାବା ଯେଉଁ ଶ୍ରଦ୍ଧାଳୁଙ୍କ ଆଖି ସହ ଆଖି ମିଳାଇ ଦିଅନ୍ତି ତା'ର ଅପ୍ରାପ୍ତି, ଦୁର୍ଲଭ, ଅପରାଧ ବୋଲି କିଛି ରହେ ନାହିଁ ଜୀବନରେ ।

ବାବାଙ୍କ ବିଶେଷତ୍ୱ, ତାଙ୍କ ପାଖରେ ଛୋଟ ବଡ଼ ଭେଦଭାବ କିଛି ନାହିଁ । ଶ୍ରଦ୍ଧାଳୁମାନଙ୍କ ସୁବିଧା ପାଇଁ ଭାରତର ବିଭିନ୍ନ ପ୍ରାନ୍ତରେ ସେ ଆଶ୍ରମ ପ୍ରତିଷ୍ଠା କରିଛନ୍ତି । ମୁଖ୍ୟାଶ୍ରମଟି ଚିତ୍ରକୁଟରେ । ଅପ୍ରମିତ ଦୁଃଖ, ଯନ୍ତ୍ରଣାରେ ଆଉଟୁ ପାଉଟୁ ହେଉଥିବା ତାଙ୍କର ଭକ୍ତମାନଙ୍କ ପାଇଁ ସେ ଦ୍ୱାର ଉନ୍ମୁକ୍ତ କରିଛନ୍ତି ସବୁସମୟ । ସତସଙ୍ଗରେ ଯେଉଁ ଶ୍ରଦ୍ଧାଳୁ ସର୍ବସମ୍ମୁଖରେ ଦୁଃଖ ଜଣାଇବାକୁ କୁଣ୍ଠାପ୍ରକାଶ କରନ୍ତି ତଥା ବାବାଙ୍କର ଏକାନ୍ତ-ସାନିଧ-ଲିପ୍ସୁମାନଙ୍କ ପାଇଁ ବାବାଙ୍କର ଅଛି ଗୁପ୍ତସଙ୍ଗ କୋଠରୀ । ଏହା କେବଳ ଚିତ୍ରକୁଟରେ ହିଁ ଉପଲବ୍ଧ । ଖାସକରି ଦେଶପାଇଁ, ସମାଜପାଇଁ, ଅହୋରାତ୍ର ଚିନ୍ତାକରୁଥିବା ରାଜନେତା, ମାଟି ଉପରେ ଚାଲିବାପାଇଁ ସମୟ ପାଉନଥିବା ଶିଳ୍ପପତି, ରାଜକୋଷକୁ ସତ୍‌ବାଟରେ ଖର୍ଚ୍ଚ କରି କରି କ୍ଲାନ୍ତ ହୋଇ ପଡ଼ିଥିବା ମନ୍ତ୍ରୀ, ଯନ୍ତ୍ରୀ, ତନ୍ତ୍ରୀ ଏ ସମସ୍ତ ଦୁଃଖିମାନଙ୍କ ପାଇଁ ଏକାନ୍ତ ସଙ୍ଗର ବ୍ୟବସ୍ଥା ବାବାଙ୍କର ପ୍ରତ୍ୟକ୍ଷ

ତତ୍ତ୍ୱାବଧାନରେ ଚିତ୍ରକୂଟରେ ସମାପନ ହୁଏ । ଭକ୍ତମାନେ ଦୁଃଖ ଲାଘବ ଅନ୍ତେ ଆଶ୍ରମ ବିକାଶପାଇଁ କିଞ୍ଚିତ କିଞ୍ଚିତ ଅର୍ଥ ସେହି ଚିତ୍ରକୁଟ ହୁଣ୍ଡିରେ ପ୍ରଦାନ କରନ୍ତି । ଯାହାର ଯେତିକି ସାଧ୍ୟ ସେ ଦାନବରେ – ସେ ଏକଟଙ୍କା ହେଉ ବା ଏକକୋଟି ହେଉ ବାବା ସେ ସବୁକୁ ଭ୍ରୁକ୍ଷେପ କରନ୍ତି ନାହିଁ ।

କିଛି ଶ୍ରଦ୍ଧାଳୁ ବାହାରେ ସ୍ୱୀକାର କରିଛନ୍ତି – ବାବାଙ୍କ ଏକାନ୍ତ ଦର୍ଶନ ପରେ ଅସ୍ଥିର ଶାସନ ଗାଦି ସ୍ଥିର ହୋଇଯାଇଛି, ନିଷ୍କଣ୍ଟକ ହୋଇଯାଇଛି ରାସ୍ତା । ଉଚ୍ଚ ପଦବୀକୁ ଉନ୍ନୀତ ହେବାସହ, ପୂର୍ବରୁ ଲାଗିଥିବା ଭିଜିଲାନ୍ସର କଳଙ୍କ ଧୂଳିଭଳି ଉଡ଼ିଯାଇଛି । ମାନ୍ଦା ତଥା ଦେବାଳିଆ ଆଡ଼କୁ ଗତି କରୁଥିବା ଶିକ୍ଷାନୁଷ୍ଠାନକୁ ଅକସ୍ମାତ ମିଳିଯାଉଛି ସରକାରୀ ସାହାଯ୍ୟ ।

ବାବାଙ୍କ ବାରଣ ସତ୍ତ୍ୱେ ଉପକୃତ ହୋଇଥିବା ଭକ୍ତମାନେ ଚାପିରଖି ପାରନ୍ତି ନାହିଁ ନିଜର ଆନୁଗତ୍ୟ–ପ୍ରକାଶ କରିଦିଅନ୍ତି ବାବାଙ୍କର ଚମତ୍କାରିତା ।

ଅନାମପୁର ଭଳି ଅପାଣ୍ଡବା ଅଞ୍ଚଳରେ ଶିହରଣ ଖେଳିଯିବା ସ୍ୱାଭାବିକ୍ କଥା । ଉଲ୍ଲାସରେ ଉତ୍‌ଫୁଲ୍ଲିତ ହେବା ଅଞ୍ଚଳବାସୀଙ୍କ ପାଇଁ ଥିଲା ଏକ ଭିନ୍ନ ରକମର ଅନୁଭୂତି । ସାପ୍ତାହିକ ହାଟ ବନ୍ଦ । ସ୍କୁଲ ଖୋଲାଥିଲେ ବି ଛାତ୍ର–ଛାତ୍ରୀ ଉପସ୍ଥାନ ଶୂନ ।

ବାବା ଆସୁଛନ୍ତି ।

ବାବାଙ୍କ ଆଗମନ ଯେ ଗୋରୁହାଟ ପଡ଼ିଆରେ ଅନୁଷ୍ଠିତ ହେଉଥିବା ବିଶ୍ୱଶାନ୍ତି ମହାଯଜ୍ଞରେ ପୂର୍ଣ୍ଣାହୁତି ପ୍ରଦାନରେ ସୀମିତ ରହିବ, ଏମିତି ଭାବିବା ଠିକ୍ ନୁହେଁ । ଆଧ୍ୟାତ୍ମିକ, ସାମାଜିକ, ଆର୍ଥିକ, ପାରିବାରିକ, ବ୍ୟକ୍ତିଗତ ସମସ୍ୟା ଦୃଷ୍ଟିରୁ ବାବାଙ୍କ ଆବିର୍ଭାବ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଜଣେ ଅତ୍ୟନ୍ତ ଅନୁଗତ ଶ୍ରଦ୍ଧାଳୁଙ୍କ ଠାରୁ ପ୍ରକାଶ, ବାବା ଏ ଯାବତ ପଞ୍ଚ ତିରିଶଟି ଗ୍ରାମକୁ ପୋଷ୍ୟ ଗ୍ରାମ, ଚଉଦଟି କ୍ଷୁଦ୍ର ସହରକୁ ପୋଷ୍ୟ ସହର ଏବଂ ଦୁଇ ଶହସ୍ର ଅଭାଗା–ଅଭାଗିନୀଙ୍କ ପାଇଁ ଥଇଥାନର ବ୍ୟବସ୍ଥା କରିସାରିଛନ୍ତି । ନଦୀ–ନାଳ ଉପରେ ପୋଲ, ରାସ୍ତା ଘାଟ ନିର୍ମାଣ ଯେ କେତେ ନାହିଁ କେତେ ହୋଇଛି ତା'ର ହିସାବ ରଖିବାକୁ ବାରଣ କରିଛନ୍ତି ବାବା । କାରଣ ଆତ୍ମ ପ୍ରଚାରର ଘୋର ବିରୋଧି ସେ, କିନ୍ତୁ ଏସବୁ ବାରଣ ସତ୍ତ୍ୱେ ବାସ୍ନାଚହଟି ଯାଏ । କିଏ କେଉଁ ମାଧ୍ୟମରେ ଏସବୁ ଜାଣନ୍ତି ତାହା ଏକ ବିସ୍ମୟ ।

ବାବା ଆସିଗଲେ ବୋଧହୁଏ । ଟିକେ ଅଧିକ ଚଞ୍ଚଳତା ପ୍ରକାଶ ପାଇଲାଣି ଜନ ସମୁଦ୍ରରେ । ଏ ପଟୁ ଶୁଭିଲାଣି ସଂକିର୍ତ୍ତନ ମଣ୍ଡଳୀର ଖୋଳ–କଂସାଳ–ମୃଦଙ୍ଗର ଉଚ୍ଚାଙ୍ଗ ସଂଗୀତ । ମାଇକରେ ଜଣେ ଉତ୍ସାହୀ ପାଠ କରୁଛନ୍ତି ବେଦମନ୍ତ୍ର । ସମ୍ଭବତଃ ଅନ୍ୟ ଗ୍ରାମରୁ ସେ ଶ୍ରଦ୍ଧାଳୁଟି ଆକର୍ଷିତ ହୋଇ ଆସିଛନ୍ତି । କାରଣ ଅନାମପୁରରେ

ସଂସ୍କୃତ ଶବ୍ଦଟିଏ ପଢ଼ିବା ଲୋକ କେହି ନାହାନ୍ତି ବେଦ ମନ୍ତ୍ର ପଢ଼ିବ କିଏ? କିଛି ବୁଝୁନଥିବା ଲୋକଟି ମଧ୍ୟ ଉଲ୍ଲସିତ ହୋଇ ହାତଟେକି ଦେଉଛି ଉପରକୁ-ଜୟ ଜଗନ୍ନାଥ, ହେ ପ୍ରଭୁ। ମୁଣ୍ଡରେ ଓଢ଼ଣା ଦେଇ ବିଭିନ୍ନ ସ୍ଥାନରେ ଏକାଠି ହୋଇଥିବା ସ୍ତ୍ରୀ ଲୋକମାନେ ହୁଳହୁଳି ପକାଉଛନ୍ତି ତୁହାକୁ ତୁହା ଏବଂ ମୁଣ୍ଡଟେକି ଖଣ୍ଡେ ଦୂରକୁ ଦୃଷ୍ଟି ନିକ୍ଷେପ କରୁଛନ୍ତି - ବାବା ଆସିଲେ କି?

କିନ୍ତୁ, ଏ କ'ଣ! ବାବା ଯେ ଖାଲିପାଦରେ ଚାଲି ଛାଲି ଆସୁଛନ୍ତି! ତା'ଙ୍କ ପାଇଁ ପ୍ରସ୍ତୁତ ଥିଲା ପାଲିଙ୍କି, କିଛି ବଳିଷ୍ଠ ଯୁବକ ଆପଣାଛାଏଁ ଆଗେଇ ଆସିଥିଲେ ପାଲିଙ୍କି କାନ୍ଧେଇବା ପାଇଁ। ଜଗୁ ତିଆଡ଼ି ଘରୁ ମଖମଲି କନାର ଚାଦର ଆସି ପଡ଼ିଥିଲା ପାଲିଙ୍କିରେ। ଫୁଲରେ ସଜ୍ଜିତ ପାଲିଙ୍କି ଫୁଲ ରଥପରି ଲାଗୁଥିଲା। କେତେ ସୁନ୍ଦର ହୋଇଥାନ୍ତା ସେ ଦୃଶ୍ୟ କିନ୍ତୁ ହାଏ। ଯାହା ବାବାଙ୍କର ଇଚ୍ଛା।

ଆୟୋଜକମାନେ କେଉଁଥିରେ ତ୍ରୁଟି କରିନାହାଁନ୍ତି। ସୁସଜ୍ଜିତ ମଞ୍ଚର ମଧ୍ୟ ଭାଗରେ ସିଂହାସନ-ଯେଉଁଠି ବାବା ଦର୍ଶନ ଦେବେ ସମବେତ ଶ୍ରଦ୍ଧାଳୁମାନଙ୍କୁ। ସିଂହାସନର ଦୁଇପାଖରେ ସୁଗନ୍ଧିତ ଗୋଲାପ ଫୁଲର ପାଖୁଡ଼ା ଭର୍ତ୍ତି ଦୁଇଟି ବୃହତ ଥାଳି। ଏହି ଫୁଲକୁ ବାବା ଶ୍ରଦ୍ଧାରେ ଫିଙ୍ଗିବେ ସମବେତ ଜନତାଙ୍କୁ। ଯାହାର ଭାଗ୍ୟଯୋର ଥିବ ଏଥିରୁ ପାଖୁଡ଼ାଏ ଅବଶ୍ୟ ପାଇବ। ଫୁଲ କେଉଁଠୁ ଆସିଲା ତାହା ବି ଏକ ବିସ୍ମୟ କାରଣ ଏହି ଅଞ୍ଚଳରେ ଫୁଲ କହିଲେ କନିଅର୍, ମନ୍ଦାର, ଗେଣ୍ଡୁ, ଗୋଡ଼ିବାଣ, କାଠଚମ୍ପା। ଟିକେ ନଈପଠା ତଳକୁ ଗଲେ କିଆଫୁଲର ବାସ୍ନାଆସେ, କିନ୍ତୁ ଗୋଲାପ ଗଛ ଆଖ ପାଖରେ କେଉଁଠି ହେଲେ ନାହିଁ। ସବୁ ବାବାଙ୍କ ଇଚ୍ଛା।

ସତ୍‌ସଙ୍ଗରେ ଯେଉଁମାନେ ନିଜର ବେଦନାବ୍ୟକ୍ତ କରିପାରିବେ ନାହିଁ ସେମାନଙ୍କ ପାଇଁ ବ୍ୟବସ୍ଥା ହୋଇଛି - ଏକାନ୍ତ ସଙ୍ଗ। ସବୁକଥା ଏମିତି ହାଟରେ ଘାଟରେ କ'ଣ କହିହେବ କି? ମଣିଷ ଭିତରେ କେତେ ନାହିଁ କେତେ ଦୁଃଖ ଅଛି ତାହା ବୋଲି ଲାଜ, ସ୍ୱାଭିମାନ, ମାନ ସମ୍ମାନ ଭୁଲି ଡ଼ାକବାଦି ଯନ୍ତ୍ର ସାମ୍ନାରେ ସବୁଲୋକ ମନଖୋଲା କଥା କହିପାରିବେ! ଆୟୋଜନମାନେ ସେ କଥା ଜାଣନ୍ତି - ତେଣୁ ଏକାନ୍ତସଙ୍ଗ ବ୍ୟବସ୍ଥା। ସେଥିପାଇଁ ପୂର୍ବରୁ ନାମ ତାଲିକାଭୁକ୍ତ ହୋଇଛି, ଏବଂ ଦୁଇଜଣ ସ୍ୱେଚ୍ଛାସେବୀ ଏକାନ୍ତ କକ୍ଷ ଦ୍ୱାରରେ ତାଲିକା ଧରି ଠିଆ ହୋଇଛନ୍ତି। ନିସୁଳ୍କ ବ୍ୟବସ୍ଥା ଟଙ୍କାଟିଏ ବି କର୍ମକର୍ତ୍ତା ହାତରେ ଧରିବେ ନାହିଁ। ବାବାଙ୍କୁ ଦର୍ଶନ ପରେ ଦର୍ଶନୀ ଥାଳିରେ ଘର ଭିତରେ ଯିଏ ଯାହା ପକେଇଲା ତାହା ସଂମ୍ପୂର୍ଣ୍ଣ ଇଚ୍ଛାଧିନ।

ହଁ, ଏହା ମଧ୍ୟରେ ଖୁସିର ଖବର ଟିଏ କାନରୁ କାନ ହୋଇ ବ୍ୟାପି ଗଲାଣି ତମାମ ପଞ୍ଚାୟତ। ବାବା ଇଚ୍ଛା ପ୍ରକାଶ କରିଛନ୍ତି ଅନାମପୁର ସମେତ ପାଞ୍ଚଖଣ୍ଡ

ଗ୍ରାମକୁ ପୋଷ୍ୟଗ୍ରାମ ଭାବେ ଗ୍ରହଣ କରିବେ । କଥାର ସତ୍ୟତା ଜାଣିବାପାଇଁ ଜଣେ ଅନ୍ୟଜଣକୁ କେବଳ ପ୍ରଶ୍ନଟିଏ ପଚାରୁଛି – ଶୁଣିଲୁଣି? ସ୍ମିତ ହାସ୍ୟରେ ଅପରପକ୍ଷ ମୁଣ୍ଡ ଟୁଙ୍ଗାରୁଛି କେବଳ। ସ୍ୱେଚ୍ଛାସେବୀ ଖୁବ ବଡ଼ ପାଟିରେ ଅନ୍ୟତମ ଏକାନ୍ତସଙ୍ଗ ପ୍ରାର୍ଥୀଙ୍କ ନାଁ ଡ଼ାକିଲେ– ଗୋବର୍ଦ୍ଧନ ଦାସ, ଅନାମପୁର ।

ଦାସେ ପ୍ରସନ୍ନ ଦିଶିଲେ । କୁର୍ତ୍ତା ଧୋତି ଚଦର ଉପରେ ହାତମାରି ପାଲିସ କଲେ ଏବଂ ଖଣ୍ଡିକାଶ ମାରି ଗଳା ସଫାକଲେ, ଗୁରୁଙ୍କୁ ସ୍ମରଣ କରି ଏକାନ୍ତ କକ୍ଷକୁ ପ୍ରବେଶ କଲେ ।

କକ୍ଷ ମଧ୍ୟରେ ମହ ମହ ବାସ୍ନା । ଆ'ହା କି ବାସ୍ନା ସେ! ଫୁଲର କି ଫଳର ଦାସେ ଠଉରେଇ ପାରିଲେନି କିନ୍ତୁ ବିମୋହିତ ହେଲେ । କକ୍ଷରେ କେବଳ ବାବା ଏବଂ ତାଙ୍କର ବ୍ୟକ୍ତିଗତ ସଚିବ । ସଚିବ ବାବାଙ୍କ ବାମପଟେ ଠିଆ ହୋଇଥାନ୍ତି, ଖାତା କଲମ ଧରି । ମୁହଁରେ ମନଲୋଭା ହସ । ବାବା ଚକାସନରେ । ଗମ୍ଭୀର ମୁଦ୍ରା । ଉଜ୍ଜଳ ଚେହେରା, ଜ୍ୟୋତି ବାହାରୁଛି ମୁହଁରୁ । ତାଙ୍କର କଳା ମଚ ମଚ ଦାଢ଼ି ସେ ଉଜ୍ଜଳତାକୁ ଦ୍ୱିଗୁଣିତ କରୁଛି ସିନା ପ୍ରଶମିତ କରିପାରୁନି ।

ସଚିବ ନିର୍ଦ୍ଦେଶ ଦେବା ସ୍ୱରରେ କହିଲେ–କୁହନ୍ତୁ । ବାବା, ଆବଶ୍ୟକ ନ ପଡ଼ିଲେ ତୁଣ୍ଡ ଖୋଲନ୍ତି ନାହିଁ । ଇସାରାରେ କହନ୍ତି ସଚିବଙ୍କୁ । ସଚିବ ଇସାରାର ଭାବାର୍ଥ ପ୍ରକାଶ କରନ୍ତି ।

ସଚିବ ଦ୍ୱିତୀୟଥର ଉତ୍ସାହିତ କଲେ – କୁହନ୍ତୁ, ହୃଦୟ ମଧ୍ୟରେ ଯାହା ଅଛି ପ୍ରକାଶ କରନ୍ତୁ ।

ଦାସେ ଯୋଡ଼ହସ୍ତ ହୋଇ ବସିଥିଲେ । ଆଖି ବୁଜି କିଛି ସମୟ ଭାବିଲେ । ତାଙ୍କୁ ଲାଗିଲା ଭଗବାନଙ୍କର ଆବିର୍ଭାବ ଘଟିଛି ତାଙ୍କ ସଂକଟ ମୋଚନ ପାଇଁ । ସେ ଏତେ ଆନନ୍ଦିତ ହେଲେ ଯେ କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲେ ଏବଂ ସବୁକିଛି ଭୁଲିଗଲେ ।

ବିଚଳିତ ସଚିବ ଦାସଙ୍କର କାନ୍ଧ ଥାପୁଡ଼େଇଲେ । ସଚେତନ ହୋଇ ଦାସେ ଲୁହଭିଜା ଆଖିରେ, ମୁହଁ ଖୋଲିଲେ ''ମୋର ଗୋଟିଏ ମାତ୍ର ଜିଜ୍ଞାସା'' ଏବଂ ଚୁପ୍ ହୋଇଗଲେ ।

ସଚିବ ଏଥର ଟିକେ ଦୃଢ଼ ସ୍ୱରରେ କହିଲେ କୁହନ୍ତୁ, ଯଥା ଶିଘ୍ର ବ୍ୟକ୍ତ କରନ୍ତୁ ।

''ଏ କଳିଯୁଗ କେବେ ଶେଷ ହେବ, ବାବା? ଦୁଷ୍ଟମାନେ କେବେ ନିପାତ ହେବେ?'' ଥରିଲା ଥରିଲା କଣ୍ଠରେ ଦାସେ ପ୍ରଶ୍ନକଲେ ।

ବାବାଙ୍କ ଚେହେରାରେ ଛାଇଗଲା ଗାମ୍ଭୀର୍ଯ୍ୟ । ଅଧାଫୁଟା ଫୁଲପରି ଓଠଟି ତାଙ୍କର ଥରିଲା କିଛି ମୁହୂର୍ତ୍ତ ଏବଂ ବନ୍ଦ ହୋଇଗଲା । ଆଖି ଯୋଡ଼ିବ ଅର୍ଦ୍ଧ ନିମିଳିତ ହୋଇ ସ୍ଥିର ହୋଇ ରହିଲେ ମୁଣ୍ଡ ଉପରେ, ପଙ୍ଖାରେ ।

ବଡ଼ ଜଟିଳ ପ୍ରଶ୍ନ ପଚାରି ଦେଲେ ଦାସେ । ହେଲେ, ବାବାଙ୍କୁ ସୃଷ୍ଟି ତତ୍ତ୍ୱ, ସୃଷ୍ଟି ରହସ୍ୟ, ପ୍ରଳୟ, କେଉଁ ବିଷୟ ବା ଅଜଣା? ସେ ବିଷୟ ବଖାଣିଲେ ପନ୍ଦର ଦିନ ଲାଗିବ, ସରିବ ନାହିଁ । ଏହା ଛଡ଼ା, ଏସବୁ କଥା ଶୁଣିବା ପାଇଁ ଉପଯୁକ୍ତ ଭକ୍ତ ଦରକାର ଭକ୍ତର ଜିଜ୍ଞାଷା ଦୃଢ଼ଥିବା ଦରକାର । ପରିବେଶ ବି ଦରକାର । ହାଟ ଭିତରେ କ'ଣ ବ୍ରହ୍ମଜ୍ଞାନ ଚର୍ଚ୍ଚାକରି ହେବ?

ବାବା ଦାଢ଼ି ସାଉଁଳେଇଲେ ଧିରେ ଧିରେ । ତାଙ୍କ ଆଖି ଖୋଲିଲା ଏବଂ ଉଜ୍ଜ୍ୱଳ ଦିଶିଲା । ଏହାର ଅର୍ଥ ପ୍ରଶ୍ନର ସଠିକ୍ ଉତ୍ତର ମିଳିଗଲା ।

ସଚିବ ପ୍ରସନ୍ନ ଦିଶିଲେ । ବାବାଙ୍କର ହସ୍ତ ଚାଳନା ଏବଂ ଆଖିର ଔଜ୍ଜଲ୍ୟରୁ ସେ ପଢ଼ିନେଲେ ଉତ୍ତର ଏବଂ ତତ୍‌କାଳ ଭାବାନ୍ତର ବୁଝେଇଲେ ଦାସେଙ୍କୁ ''ସେ ସମୟ ଏବେ ଆସିନାହିଁ ।''

ନିରୁତ୍ସାହିତ ଦିଶିଲେ ଦାସେ । ମୁହଁଟି ଫିକା ପଡ଼ିଗଲା ତାଙ୍କର । ଛେପ ଢ଼ୋକି ଟିକେ ଉଚ୍ଚସ୍ୱରରେ ଦାବି କଲାଭଳି ଜିଜ୍ଞାସା କଲେ ପ୍ରଶ୍ନର ଦ୍ୱିତୀୟ ଭାଗ – ''ତା' ହେଲେ କେମ୍ପା କ'ଣ ମରିବ ନାହିଁ !''

ଏକାନ୍ତ କକ୍ଷରେ କ୍ଷୁଦ୍ର ବିସ୍ଫୋରଣ ଘଟିଲା ସତେଯେମିତି । ଦାସେ ସଞ୍ଚୟ କରିଥିବା ସମସ୍ତ କ୍ଷୋଭକୁ ଫିଟେଇ ଦେଲେ ବାବାଙ୍କ ସାମ୍ନାରେ – ''ଚାରିଗୁଣ୍ଠ ଜମି ଜବରଦସ୍ତ ଚଷୁଛି ଦଶବର୍ଷ ହେଲା । ଯେତେଥର ବାଡ଼ ଦେଲେ କ'ଣ ହେବ ତାକୁ ଓପାଡ଼ି ଦେଇ ଛେଳି ପୁରେଇ ଦଉଛି ବାରି ଭିତରକୁ, ଛେଳି ପାଟି ବାଜି ଖଡ଼ାଗଛ ଟାଏ ବି ଉଧଉନି । ମାଙ୍କଡ଼ ଆସିଲେ ହୁଡ଼େଇ ଦଉଛି ମୋ'ରି ବାରିକୁ ତାଙ୍କ ଉତ୍ପାତରେ ଭଣ୍ଡାଗଛ ଟିଏ କି ଜହ୍ନିଗଛ ମନ୍ଦାଏ ରହୁ ନାହିଁ ।

ସଚିବ ହାତଟେକି ବାରଣ କଲେ । ଇସାରା କଲେ ସଂକ୍ଷିପ୍ତ କରିବାକୁ । ଦାସେ ବନ୍ଦ ହେବା ବଦଳରେ ଗଳା ସଫାକରି ଉଚ୍ଚସ୍ୱରରେ ବାବାଙ୍କୁ ନିବେଦନ କଲେ – ''ମୋତେ କିଲିବିଲି କଲାଣି ସେ ଶଳା । କେଉଁ ଗୋସବାପ ଅମଳର ବାଉଁଶବୁଦା । ଏବେ କହୁଛି ସେଇଟା ବି ତା'ର । କିହୋ, କୋଉ ପୂରୁବ ପୁରୁଷ ଅମଳରୁ ହାଡୁଦାସ ବାଉଁଶବୁଦା ମୋ ବାପ–ଅଜା ତା'କୁ ଭୋଗଦଖଲ କରୁଥିଲେ । ସାଇ ପଡ଼ିଶା ମୌଜାର ସବୁଲୋକ ଦେଖିଛନ୍ତି । ଏବେ ଖଣ୍ଡେ କାଗଜ ଦେଖେଇ ମତେ କହୁଛି ବାଉଁଶବୁଦା ତା ବାପା ନାଁରେ । ମୋ ପାଖରେ କିଛି କାଗଜ ନାହିଁ, ସତ । ତା'ବୋଲି

ପୁରୁଷ ପୁରୁଷ ଧରି ଭୋଗଦଖଲକୁ ଚାରିଆଙ୍ଗୁଳି ପାଉତି ଖଣ୍ଡେ ଦେଖେଇ ମତେ ଉଚ୍ଛେଦ କରିଦବ! ଗତ ମାସରେ ବାଉଁଶ କାଟୁଥିଲା, ମୁଁ ପ୍ରତିବାଦ କଲାରୁ ମାଡ଼ ମାରି ମତେ ଜଖମ କରିଛି, ଏଇ ଅଣ୍ଟାପାଖରେ ଦାଗଟା ଏବେ ପରା ଅଛି ।'' ଦାସେ କୁର୍ତ୍ତା ଟେକିଲେ ତଳଆଡୁ ଅଣ୍ଟାର ଦାଗ ଦେଖେଇବାକୁ ।

ସଚିବ, ଦାସଙ୍କର ବ୍ୟଗ୍ରତା ଏବଂ ଅସହାୟତାକୁ ସ୍ପଷ୍ଟଭାବରେ ପଢ଼ିପାରୁଥିଲେ ରାଗରେ ଲାଲ ପଡ଼ି ଯାଇଥିବା ତାଙ୍କ ମୁହଁରୁ । କୁର୍ତ୍ତାକାଢ଼ିବା ପାଇଁ ଦୁଇ ହାତଟେକି ସେ ମନାକଲେ ଏବଂ ବାବାଙ୍କ ନିର୍ଦ୍ଦେଶକୁ ଅପେକ୍ଷା କଲେ ।

ଅଥଚ ଦାସଙ୍କର କଥା ସରିନଥିଲା । ସେ ଖିଅ ଯୋଡ଼ିଲେ – ମୁଁ ହେଲି ଶାନ୍ତିପ୍ରିୟ ଲୋକ । ତା'କୁ ବୁଝେଇଲି । ବାବୁ କେଳୁଚରଣ, ତୋ ଗୋସବାପ ପରା ମୋ ଗୋସବାପକୁ ଏଇଟା ବିକ୍ରିକରି ଦେଇଥିଲେ ସେତେବେଳେ । ତୁ ଜାଣି ନଥିବୁ । ଦାସେ କିଛି ମୁହୂର୍ତ୍ତ ବିଶ୍ରାମ ଦେଲେ ନିଜ ବକ୍ତବ୍ୟକୁ ଏବଂ ଘନ ଘନ ନିଃଶ୍ୱାସ ନେଲେ । ଚୋରଙ୍କର ତ ମୁହଁଟାଣ ଆଜ୍ଞା । ଏବେ ମତେ କହୁଛି କବଲା ଦେଖା, ପଟ୍ଟା ଦେଖା । କିହୋ ସେତେବେଳେ କ'ଣ ଏସବୁ ଥିଲା? ସେମାନେ ଥିଲେ ମୁର୍ଖ ଲୋକ, ମୁହେଁ ମୁହେଁ ଚାଲିଥିଲା । ତା'ର ଗୋଟାଏ ମାମୁଁ ପୁଅ ଓକିଲ ଅଛି କଟକରେ ତା'ରି ବୁଦ୍ଧିରେ ଇଏ ଡ଼େଉଛି । ହଉରେ ପୁଅ ମୁଁ ବି ଦେଖିବି ତୁ କେତେବାଟ ଯିବୁ ।

ଘରିବାଣରୁ ବାରୁଦ ସରିଗଲା ପରି ଦାସେ ଚୁପ୍‌ଚାପ ଗରମ ହୋଇ ବସିଥିଲେ । ତାଙ୍କ ପାଟିରୁ ଆଉ କଥା ବାହାରୁ ନଥିଲା । ହାତ ଯୋଡ଼ି ସମର୍ପଣ ମୁଦ୍ରାରେ ଆଜ୍ଞାଧିନ ଛାତ୍ରଟିଏ ଭଳି ସେ ବସିଥାନ୍ତି ।

ବାବା ଆଖି ବୁଜିଲେ ଏବଂ ଦାଢ଼ି ଉପରେ ଚାରିପରସ୍ତ ହାତ ପହଁରେଇ ଆଣିଲେ । ମଧ୍ୟେ ମଧ୍ୟେ ମୁଣ୍ଡ ଟୁଙ୍ଗାରିଲେ । ମୃଦୁ କ୍ଷୀଣ ହସଟିଏ ଖସିଗଲା ତାଙ୍କ ଓଠରୁ ।

ଦାସେ ଉଲ୍ଲସି ଉଠିଲେ । ଶିର ଶିରେଇ ଗଲେ । ସେହି କ୍ଷୀଣ ହସ ତା'ଙ୍କୁ ସୂଚେଇ ଦେଲା, ବାଟ ଫିଟିଗଲା ନିଶ୍ଚୟ । କେମ୍ପାର ଜୀବନ ପଞ୍ଜିକା, ଜନ୍ମ କୁଣ୍ଡଳୀ ପର୍ଯ୍ୟନ୍ତ ପ୍ରବେଶ କରିଗଲେଣି ବାବା । ଆଉ ନିସ୍ତାର ନାହିଁରେ ପୁଅ । ତୁ ଏଥର ଗଲୁ । ଏକ ଅଜଣା ଖୁସିରେ ଦୋହଲି ଗଲେ ଦାସେ । ଚାହିଁଲେ, ବାବା ଏବଂ ସଚିବଙ୍କର ଇଙ୍ଗିତପୂର୍ଣ୍ଣ କଥୋପ କଥନକୁ । ସଚିବ ନିଜେ ମଧ୍ୟ ଅଙ୍ଗୁଳିରେ ଗଣନା କଲେ । ତା'ପରେ ପାଟି ଖୋଲିଲେ – ଆଉ ଛ'ମାସ ଚାରିଦିନ । ଶନିଗ୍ରହ ଆପଣଙ୍କ ରାଶିରେ ଚଳିଛନ୍ତି ଏକଥା ଆପଣ ଜାଣିପାରି ନାହାଁନ୍ତି । ଦଶବର୍ଷ ହେଲା ଏମିତି ହେଲାଣି । ପ୍ରକୋପ ଆହୁରି ଭୟଙ୍କର ଅଛି । ତଳି ତଳାନ୍ତ କରିଦେବ । ସର୍ବସ୍ୱାନ୍ତ

କରିଦେବ । ତୁରନ୍ତ ଏହାର ବିଧାନ ନ କଲେ ଜୀବନ ଚାଲିଯିବାର ସମ୍ଭାବନା ମଧ୍ୟ ଅଛି ।

କରେଣ୍ଟ ଖାଇବା ଭଳି ଧକ୍କା ଖାଇଲେ ଦାସେ । ମଞ୍ଜ ଥରିଗଲା । ଶନିଗ୍ରହ ଯେ କେମ୍ପା ମାଧ୍ୟମରେ ତାଙ୍କୁ ହଇରାଣ କରୁଛି ଏହା ସେ ଷୋହଳପଣ ବିଶ୍ୱାସ କରିଗଲେ ।

ସେତା ପଡ଼ିଗଲା ଦାସଙ୍କର ମୁହଁ । ବିକଳ ହୋଇ ଚାହିଁଲେ ସଚିବଙ୍କୁ । ସଚିବଙ୍କ ମୁହଁରେ ହସ ଏଥର ଚୌଡ଼ା ଏବଂ ଓସାରିଆ ଦିଶିଲା । ଦାସଙ୍କ ଶିରାଳ କପାଳରେ ଚାରିପ୍ରସ୍ଥ ହୋଇ ପଡ଼ିଥିବା କପାଳ ରେଖାରୁ ସେ ପଢ଼ିନେଲେ ଦାସଙ୍କର ଭିତିରି କଥା । ଆଶ୍ୱାସନା ଦେଇ ବୁଝାଇ ଦେଲେ ଶନି ସନ୍ତୁଷ୍ଟିର ଉପଚାର । ‘‘ସେ ପୂଜା ଏଠି କେଉଁଠି ହୋଇପାରିବ ନାହିଁ । ଚିତ୍ରକୁଟରେ ଏହା ସମ୍ଭବ । ଆପଣ ପତ୍ନୀଙ୍କ ସହ ଆସି ସେହିଠାରେ ପୂଜାର୍ଚ୍ଚନା କରନ୍ତୁ । ଦେଖିବେ ସବୁ ରିଷ୍ଟ ଖଣ୍ଡନ ହୋଇଯିବ । ଶତ୍ରୁମାନେ ଅବସ୍ୟ ନାଶ ଯିବେ ।

ଦାସେ ଅଣ୍ଟାସଳଖକଲେ । ଛାଡ଼ି ଯାଉଥିବା ଜୀବନ, ଅଟକି ଗଲା ଘଟରେ । ଦୁଇ ଚାରିଟା ନିଶ୍ୱାସ ଛାଡ଼ିଲେ ଧିରେ ଧିରେ । କିଛି ବର୍ଷ ହେଲା ଶନି ପାଇଁ ସେ ଭୋଗିଥିବା କେତୋଟି ତିକ୍ତ ଅନୁଭୁତି ମନେ ପଡ଼ିଗଲା ଏବଂ ସେ ଆହୁରି କ୍ଷତାକ୍ତ ହେଲେ । ଏଇତ ଛ’ ମାସ ତଳର କଥା । ହାଟରୁ ବ୍ୟାଗରେ ସଉଦାପତ୍ର ଧରି ଫେରୁଥାନ୍ତି ସେ । ହଠାତ୍ ପଛପଟୁ ଧକ୍କା ଦେଲା ଏକ ସାଇକେଲ । ଦାସେ ପଡୁ ପଡୁ ସମ୍ଭାଳି ନେଲେ ନିଜକୁ । ଧକ୍କା ଦେଇଥିବା ସାଇକେଲ ଏବଂ ଆରୋହୀ ଡ଼ାହାଣ ପଟକୁ ଛିଟକି ପଡ଼ିଲେ । ଯନ୍ତ୍ରଣାରେ ଡ଼ାହାଣ ହାତ ଛଟପଟ ହେଉଥାଏ । ବ୍ୟାଗଟି ଖସିପଡ଼ିଲା ତଳେ । ସେପଟୁ ଆରୋହୀ ଫୁଲପ୍ୟାଣ୍ଟ୍‌ରୁ କାଦୁଅ ଝାଡୁ ଝାଡୁ ଚିତ୍କାର କଲା – ଦିନଟାରେ ଦିଶୁ ନାହିଁ, ଅନ୍ଧ ଭଳିଆ ଚାଲୁଛ! ବୟସକୁ ଚାହିଁ ଛାଡ଼ିଦେଲି, ନହେଲେ ଦେଖିଥାନ୍ତ ।

ଦାସଙ୍କର ଯନ୍ତ୍ରଣା ଦ୍ୱିଗୁଣିତ ହୋଇଗଲା । ‘‘ଅଭଦ୍ର, ଅସଭ୍ୟ । ଚୋରି ଉପରେ ସିନାଯୋରି! ଆରେ କିଏବେ ତୁ । ତୋ ବୋପା ନାଁ କ’ଣ? ଆହତ ବ୍ୟାଘ୍ରଭଳି ଗର୍ଜନ କଲେ ଦାସେ ।

ସେପଟୁ ସୁଭିଲା ପ୍ରତ୍ୟୁତ୍ତର – ବୁଢ଼ା, ବାପ ନା ଧରୁଛୁ ଦେଖିବୁ ଏଇନେ ।

ଇତିମଧ୍ୟରେ ବୋଟୋଇମାନେ ଘେରିଗଲେ ଉଭୟ ପକ୍ଷରକୁ । ଦାସଙ୍କର ପ୍ରଶ୍ନର ଉତ୍ତର ଜଣେ ଚିହ୍ନା ବାଟୋଇ ପ୍ରକାଶକଲେ – ଦାସେ ସେପରା ନଖିଆ ଧୋବା ପୁଅ  ଅରକ୍ଷିତ । ବମ୍ବେରେ ରଙ୍ଗକାମ କରୁଛି । ଏବେ ଘରକୁ ଆସିଛି ।

ଦାସେ ଏଥର ରାଗରେ ଥରିବାକୁ ଲାଗିଲେ । "ଶଳା ଛୋଟ ମୁହଁରେ ବଡ଼କଥା । ବାପ ଆମରି ଲୁଗାକାଚି ଏଗୁଡ଼ାକୁ ମଣିଷ କଲା । ଦେଖହୋ..." ଦାସେ ଫଁ ଫଁ ହେଉଥାନ୍ତି ନାଗସାପପରି । ପାଟିରୁ କଥାବାହାରୁ ନଥାଏ – ଖାଲି ସଁ ସଁ ପବନ । ଜଣେ ଶୁଭେଚ୍ଛୁ ଦାସଙ୍କର ହାତଧରି ସମୀପ ଜଳଖିଆ ଦୋକାନ ବେଞ୍ଚରେ ବସେଇ ଦେଲେ ଏବଂ ବୁଝେଇ ଦେଲେ – କକେଇ ସେ ବେଳ କାଳ ଆଉ ନାହିଁ । ଯୁଗ ବଦଳି ଗଲାଣି । ପିଲାବେଳେ ତୁମକୁ ଯିଏ ଜୁହାର କରୁଥିଲେ ଏବେ ତୁମେ ତାଙ୍କୁ ଜୁହାର କରିବ । ଏସବୁ ମାଳିକାରେ ପରା ଅଛି, ତୁମକୁ କ'ଣ ଅଜଣା? ତୁମେ ପରା ଜ୍ଞାନୀ, ପଣ୍ଡିତ । ନିଜ ମାନ ସନମାନ ଜଗିରଖି ଚଳ ।

ଦାସେ ବୁଝିଗଲେ କିନ୍ତୁ ଏବେ ବୁଝୁଛନ୍ତି ସେଦିନ ପ୍ରକୃତରେ ଅରକ୍ଷିତିଆ ସେ ନଥିଲା । ତା'ର ଏତେ ଦମ୍ଭ କାହୁଁବା ଆସନ୍ତା! ସେ ଥିଲା ଶନି ।

ଦାସେ କେବେ କେବେ, ସୁଧିଆ ଲଗାନ୍ତି । ଅବସ୍ୟ ଏକଥା ଖୁବ୍ କମ୍‌ଲୋକ ଜାଣନ୍ତି । ଖୁବ୍ ଛୋଟକାଟର ବ୍ୟବସାୟ । କେବେ ଯଦି ଫସଲକୁ ପାଳକ ଦେଲା ଦାସେ ଭଲ ଦି' ପଇସା ପା'ନ୍ତି । ଘରେ କାହିଁ ପଡ଼ିରହିବ, ଅନ୍ୟମାନଙ୍କ କାମରେ ଆସୁ ସେ ଧନ । ଖୁସିହୋଇ କିଏ ପିତଳ ଥାଳି ପଟେ ତ ଆଉ କିଏ ରୁପାବଳା ରଖିଦେଇ ଯା'ନ୍ତି କିନ୍ତୁ ରଘୁ ପୁହାଣ ଦେଇଥିଲା ସୁନା ଚୁଡ଼ି ଚାରିପଟ, ତା ପୁଅକୁ କୋଉଠି ପାଠପଢ଼େଇବ ବୋଲି । କାରଣ ଏ ଅଞ୍ଚଳରେ ତ କଲେଜ ଫଲେଜ ନାହିଁ କାହିଁ ଦୂର ଦୂରାନ୍ତରେ ପଠେଇଥିଲା । ଏବେ ଖୋଲି ଦେଖିଲା ବେଳକୁ ତୁଛାପିତଳ ତା ସୁନାରଙ୍ଗ ଝଡ଼ିଗଲାଣି । କାହାକୁ କହିବେ – ଯଗୁର ଦେହାନ୍ତ ହୋଇ ଗଲାଣି ବର୍ଷେ ହେଲା । ଖାଲି ସେତିକି ନୁହେଁ । ଶମ୍ଭୁଡ଼ାକ୍ତର ଔଷଧ! ଏ ପଞ୍ଚାୟତ ସାରା ଶମ୍ଭୁଡ଼ାକ୍ତର ସାଇକେଲ ପଛରେ ଡ଼ାକ୍ତରୀବାକ୍ସ ବାନ୍ଧି ଦିନ ନାହିଁ ରାତି ନାହିଁ ସେବା କରୁଛି । ଖବର ପାଇଲେ ଡ଼ାକ୍ତର ଆସି ରୋଗୀର ଯଥାବିଧି ଚିକିତ୍ସା କରେ । ଭଲ ଲୋକଟାଏ । ତା ବାପଠୁଁ ଶିଖିଛି କେମିତି ଇଂଜେକସନ୍ ଦିଆଯାଏ, କୋଉ ରୋଗକୁ କୋଉ ବଟିକା । ଚେର ମୂଳି ବି ରଖିଥାଏ । ବଟିକା କାଟୁ ନକଲେ ଚେରମୂଳି । ତ, ଶମ୍ଭୁ ଔଷଧ ସଭିଙ୍କୁ କାଟୁ କରୁଥିବା ବେଳେ ଦାସେଙ୍କ ଘରେ କାହିଁ ଅକାମି ହୋଇଯାଉଛି । ଚାନ୍ଦି ମା' ର ଧଇଁ କାହିଁ ଭଲ ହେବାକୁ ନାହିଁ ବରଂ ଅଧିକରୁ ଅଧିକ ହେଉଛି?

ଗଲାସନ ନଈବଢ଼ିରେ ଭଲ ପଟୁ ପଡ଼ିଥିଲା । ବିରି ଗଛ ଯେମିତି ହୃଷ୍ଟ ପୁଷ୍ଟ ହୋଇ ବଢ଼ିଥିଲା ଦାସେ ପାଞ୍ଚ କ୍ୱିଣ୍ଟାଲ ତ ନିଶ୍ଚୟ ପାଇଥାନ୍ତେ କିନ୍ତୁ ହାଏ, କାହୁଁ ଆଇଲେ କାଳିଗୁଣ୍ଡି ପୋକ । ଗୋଟାଏ ରାତିରେ ଚରିଗଲେ ପୂରା ଚଣ୍ଡିଆ ଚକ ।

ଏମିତି ଅନେକ କଥା । ଧନ ହାନି, ମାନ ହାନି, ପ୍ରାଣ ପୀଡ଼ା, ପାରିବାରିକ ଅସାନ୍ତି, ବନ୍ଧୁବାନ୍ଧବେ କଳହ, କୁଟୁମ୍ବେ ଦ୍ୱନ୍ଦ, ଏବଂ ସର୍ବୋପରି ନିଜର ଦୃଷ୍ଟିଶକ୍ତି ଶ୍ରବଣ ଶକ୍ତି ହ୍ରାସ । ଏସବୁ ଯେ ଶଇତାନ୍ ଶନି ପାଇଁ ହେଉଛି ତାହା ଏବେ ସେ ବୁଝିଲେ । ମନ ଭିତରେ ପରସ୍ତ ପରସ୍ତ ହୋଇ ରହିଥିବା କେତେ ବିପତ୍ତି, ଅଘଟଣ, ଦୁର୍ଘଟଣା ସବୁ ଯେମିତି ପଛକୁ ପଛ ସ୍ପଷ୍ଟହୋଇ ଦିଶୁଛି । ଅତି ଅସହାୟ, ଦୟନୀୟ ଭାବଟିଏ ଫୁଟି ଉଠୁଛି ତାଙ୍କ ଚେହେରାରେ । ଏକ ଘୂର୍ଣ୍ଣିବଳୟ ଭିତରେ ସତେଅବା ପଡ଼ିଯାଇ ନିଷ୍କୃତିର ବାଟ ଖୋଜୁଛନ୍ତି ଦାସେ ।

ସଚିବ ଦାସଙ୍କର ଅବସ୍ଥା ଦେଖି ପ୍ରସ୍ତାବଟିଏ ଦେଲେ । ଶନିଦେବଙ୍କର ପୂଜାର୍ଚ୍ଚନା ପାଇଁ ଯଦି ଆମକୁ ଏଇଠାରେ ପୂଜା-ସାମଗ୍ରୀର ଖର୍ଚ୍ଚ ପ୍ରଦାନ କରିଦେବେ, ସ୍ୱୟଂ ବାବା ଆପଣଙ୍କ ପାଇଁ ଚିତ୍ରକୁଟରେ ସ୍ୱତନ୍ତ୍ର ପୂଜା ବିଧାନ କରିବେ । ପୂଜା ପରେ ଆପଣ ପ୍ରସାଦ ସହ ଚିଠି ଟିଏ ମଧ୍ୟ ପ୍ରାପ୍ତ ହେବେ । ପୂରା ଠିକଣା ଆପଣଙ୍କର ଡ଼ାକନ୍ତୁ ମୁଁ ଲେଖିବି । ଦାସଙ୍କ ପାଖକୁ ଲାଗିଆସି କାଗଜ କଲମ ଧରି ପ୍ରସ୍ତୁତ ହେଲେ ସଚିବ ।

ଦାସେ ରାହା ପାଇଗଲେ । ଚିରୁଡ଼ାଏ କୁଣ୍ଠିତ ହସ ଉକୁଟି ଉଠିଲା ତାଙ୍କ ଓଠରେ । ଧିରେ କରି ସଚିବଙ୍କୁ ପଚାରିଲେ - କେତେ ଲାଗିବ?

ସଚିବ ପୂର୍ବରୁ ମୁଦ୍ରିତ ଏକ କାଗଜ ଦେଖିଲେ ଏବଂ ଦାସଙ୍କୁ ଦେଖାଇଲେ । ଶନିଗ୍ରହ ପୂଜା ବିଧାନ ତିନି ହଜାର ଦୁଇଶହ ଏକଷଠୀ । ଏହାସହ ଆପଣଙ୍କୁ ଆଶୀର୍ବାଦ ସ୍ୱରୂପ ମିଳିବ ଏକ କବଚ ଏବଂ ଏକ ଶନିମୂର୍ତ୍ତି । ଏଥିପାଇଁ କୌଣସି ଶୁଳ୍କ ନାହିଁ ।

ଟଙ୍କାର ପରିମାଣ ଶୁଣି ଦାସେ ଆଁ କରି ରହିଲେ । ତାଙ୍କ ପାଟି ବନ୍ଦ ହେଲାନାହିଁ ସଚିବ ତାଙ୍କ କାନରେ ମନ୍ତ୍ରଟିଏ ଫୁଙ୍କିବା ପର୍ଯ୍ୟନ୍ତ - ଏହା ଖାସ୍ ଆପଣଙ୍କ ପାଇଁ । ତଥାପି ହୋସ୍ ଆସୁନଥାଏ । ସେ ଭାବିଥିଲେ ପଚାଶ କି ଶହେ ହବ । ସେଥିପାଇଁ ସେ ପ୍ରସ୍ତୁତ ହୋଇ ଆସିଥିଲେ ମଧ୍ୟ । ସଚିବ ସାନ୍ତ୍ୱନା ଦେଲେ - ଆପଣଙ୍କର ଶନି ଯେତିକି କ୍ଷତି କଲାଣି ତାହା କ'ଣ ଏହି ପରିମାଣ ଠାରୁ କମ୍? ଆପଣଙ୍କର ବାଉଁଶ ବାଡ଼ି କ'ଣ ଆପଣ ଫେରିବାକୁ ଚାହାଁନ୍ତି ନାହିଁ? ପତ୍ନୀଙ୍କର ଶରୀର ସୁସ୍ଥ ରହୁ ଏହା କ'ଣ ଆପଣ ଚାହାଁନ୍ତି ନାହିଁ ? ଫସଲ ଉତ୍ପାଦନ ବୃଦ୍ଧି ହେଉ ଏହା ତ ନିଶ୍ଚୟ ଆପଣ ଚାହିଁବେ, ନା ନାହିଁ ?

ଦାସଙ୍କ ଗଣିତ କାମକଲାନାହି । ସେ ଆଉ କିଛି ହିସାବ କରିପାରୁ ନଥିଲେ । ସଚିବଙ୍କ ବାଣୀରେ କି ଚମତ୍କାରିତା ଥିଲା କେଜାଣି ସେ ସମର୍ପି ଦେଲେ ନିଜକୁ ଏବଂ ଶେଷରେ ପ୍ରଶ୍ନଟିରେ ପଚାରିଲେ - ଆଉ କେମିତି?

ସଚିବ ଉତ୍‌ଫୁଲ୍ଲିତ ହୋଇ ଘୋଷଣା କଲେ – ଏତେ ବଡ଼ ବଡ଼ ବିପତ୍ତି ଯେତେବେଳେ ପତ୍ର ଭଳି ଉଡ଼ିଯିବ, କେମ୍ପା କି'ବା ଛାର । ଆପଣଙ୍କ ରାଶିରୁ ଯାଇ ଶନି ତତ୍କାଳ କେମ୍ପା ରାଶିରେ ଚଳିବେ ତା'ପରେ ଆପଣ ଦେଖିବେ... ।

ଦାସେ ଏକ ଲମ୍ବା ହସ ହସିଲେ । କାନ ପାଖାପାଖି ଲମ୍ବିଆସିଲା ପାଟିର ଦୁଇ କଣ । କିଛି ସମୟ ଏକ ଭିନ୍ନ ପୃଥିବୀରେ ସତେଅବା ବିଚରଣ କରିଆସିଲେ । ଓଃ କି ଶାନ୍ତି । ତା'ପରେ ପ୍ରକୃତିସ୍ଥ ହେଲେ – ଏବେତ ମୋ ପାଖରେ ଏତେ ଟଙ୍କା ନାହିଁ!

ବ୍ୟସ୍ତ ହୁଅନ୍ତୁ ନାହିଁ । ଭଲ ସମୟ ଆସିଲେ ସବୁରାସ୍ତା ଖୋଲିଯିବ । ଆସନ୍ତାକାଲି ସକାଳେ ଆପଣ ଏଇଠାରେ ଆଣି ଦେଇପାରିବେ । ହଁ! ଯଦି କିଛି ଅସୁବିଧା ଥାଏ ଜଗନ୍ନାଥ ତ୍ରିପାଠୀ ମହୋଦୟଙ୍କୁ ଆପଣ ସାକ୍ଷାତ କରିପାରିବେ ।

ପ୍ରଣାମୀ ଏକଶତ ମୁଦ୍ରା ବାବାଙ୍କ ବାମପାର୍ଶ୍ୱସ୍ଥ ଥାଳିରେ ଅର୍ପଣ କରି ଏକ ସାଷ୍ଟଙ୍ଗ ପ୍ରଣାମ ଜଣେଇ ଦାସେ କବାଟ ଖୋଲିଲେ । ବାହାରେ ଥାଟ ପଟାଳି ଭାଙ୍ଗୁଛନ୍ତି ଶ୍ରଦ୍ଧାଳୁ । ଦାସେ ହସି ହସି ପ୍ରସ୍ଥାନ କଲେ । ଦୁଇ ପାର୍ଶ୍ୱରେ ପ୍ଲାଷ୍ଟିକ ଚେୟାରରେ ଅପେକ୍ଷାରତ ଏକାନ୍ତସଙ୍ଗ ଶ୍ରଦ୍ଧାଳୁ । ଆୟୋଜକ ବିଳମ୍ବ ନକରି ଅନ୍ୟଏକ ନାମ ଡ଼ାକିଲେ – ରତ୍ନାକର ନାହାକ, ବେଲସାହି ।

ମୃଦୁ ମୃଦୁ ହସି ଦାସେ କୁଞ୍ଚ ସଜାଡ଼ି ଧାଡ଼ି ଅତିକ୍ରମ କରୁଛନ୍ତି, ତାଙ୍କ ପାଦ ଅଟକି ଗଲା । ଡ଼ାହାଣ ପଟ ଚୌକିରେ ବସିଛି କେମ୍ପା । ଦାସଙ୍କ ଆଖି ତା ଉପରେ ପଡ଼ିବା କ୍ଷଣି ପିତ୍ତ ଚଢ଼ିଗଲା ମୁଣ୍ଡକୁ କିନ୍ତୁ ସମ୍ଭାଳି ନେଲେ ନିଜକୁ । ହାରାମୀ ତୁ ବି ଏଠି? ମନେ ମନେ ପ୍ରଶ୍ନକଲେ ଏବଂ ଉତ୍ତର ମଧ ଦେଲେ ନିଜକୁ – ଯା'ରେ ପୁଅ ଯା' । ଆଉ ଅଛି? କାମ ସାରି ଦେଇ ଆସିଛି । ଯାହା ହେଲେ ମୋ ନାଁ ତାଲିକା ଆଗରେ ଅଛି । ଶନି ପୂଜା ପ୍ରଥମେ ମୋ ନାଁ ରେ ହେବ । ହଉ ତୁ ଯା... ।'' ବାବାଙ୍କୁ ସ୍ମରଣକରି କୃତ୍ୟ କୃତ୍ୟ ହେଲେ ଦାସେ, ପ୍ରଥମେ ତାଙ୍କୁ ଦର୍ଶନ ଦେଇଥିବାରୁ । ଏବେ ବିଳମ୍ବ କରିବା ଉଚିତ ନୁହେଁ । ଦାସେ ବେଗି ବେଗି ପାଦ ପକେଇଲେ । ଅର୍ଥ ଯୋଗାଡ଼ କରିବାକୁ ପଡ଼ିବ । ଜଗୁ ତିଆଡ଼ି ତ ଏକ ମାତ୍ର ସାହା ଏଇ ଗାଁ ର । ବାବା ତା' ନାଁ ତ କହିଛନ୍ତି । ହେଲେ ସେ ତ ସେମିତି ଟଙ୍କା ଦବନାହିଁ । ବନ୍ଧକ ରଖିବ । ଘରକୁ ଗଲେ ଦେଖାଯିବ କ'ଣ ସବୁଅଛି, ଯୋଗାଡ଼ କରି ଯଥାଶିଘ୍ର ତା ଘରକୁ ଯିବାକୁ ପଡ଼ିବ । ବିଳମ୍ବ ହେଲେ ମହାବିପଦ ।

ଦୋଳପୂର୍ଣ୍ଣମୀକୁ ଛାଡ଼ିଦେଲେ ଅନ୍ୟକେଉଁ ଦିନ ହାଟ ପଡ଼ିଆ ଏମିତି ଉତ୍ସବ ମୁଖର ହେବା କେଉଁ ବୟସ୍କମାନଙ୍କର କାହିଁ ମନେ ପଡୁନାହିଁ । ମାଇକ ବାଜୁଛି ।

ମାଇକ୍‌ରେ ବିଷ୍ଣୁ ସହସ୍ର ନାମ । ବାବାଙ୍କ ସ୍ୱରଚିତ ଶନି ମହାତ୍ମ୍ୟ, ଗୁରୁ ମହିମା ଗତକାଲିଠାରୁ ଅବିରତ ବାଜୁଛି । ହାଟ ପଡ଼ିଶା ଅଧାଅଧି କପଡ଼ା ଆବୃତ୍ତ । ବିଭିନ୍ନ ରଙ୍ଗର ପତାକା ପ୍ରତି ଖୁଣ୍ଟରେ । କିଛି ଉଠାଦୋକାନିଙ୍କୁ ଅନୁରୋଧ କରି ଆଣିଛନ୍ତି ଆୟୋଜକ ସଦର ମହକୁମାରୁ । ଜଳଖିଆ, ପାନ, ଚା, ଗୁଟଖା ବି ଅଛି । କିଛି ବେଲୁନବାଲା ପସରା ମେଲିଛନ୍ତି ବିଭିନ୍ନ ସ୍ଥାନରେ । ସେମାନେ ବାରିହୋଇ ପଡୁଛନ୍ତି । ପିଲାମାନଙ୍କୁ ଆକୃଷ୍ଟ କରିବାପାଇଁ ପେଁ ପାଁ କରି ପେଁକାଳି ବଜାଇ ଚାଲିଛନ୍ତି । ଜଳଛତ୍ର ବ୍ୟବସ୍ଥା ଅଛି । କାହିଁ କେତେଦୂରରୁ ବାବାଙ୍କୁ ଦର୍ଶନ ପାଇଁ ଆସିଥିବା ଶ୍ରଦ୍ଧାଳୁଙ୍କ ମୁହଁରେ ପାଣି ମୁନ୍ଦିଏ ଦେବା କ'ଣ କମ୍ ଧର୍ମର କଥା? ସହରର ବିଭିନ୍ନ ପ୍ରତିଷ୍ଠାନର ବ୍ୟାନର ଚାରିପଟେ ଝୁଲୁଛି ଯେଉଁଥିରେ ଅଛି ବାବାଙ୍କ ଆଶୀର୍ବାଦ ମୁଦ୍ରା ଫଟୋ, ତା ତଳକୁ "ସ୍ୱାଗତଂ" ତା ତଳକୁ ବଳରାମ ଶାଢ଼ୀ ହାଉସ, ଉର୍ବସୀ ଇଲେକ୍ଟ୍ରିକାଲ୍ସ, ଭାଇ ଭାଇ ହୋଟେଲ ଏମିତି ଆହୁରି ଏକ ଡ଼ର୍ଜନ । ନିକଟବର୍ତ୍ତୀ ଗ୍ରାମରୁ ଆସିଥିବା ପ୍ରତ୍ୟେକ ଲୋକ ଯେ ବାବାଙ୍କ ଦର୍ଶନ ଆଶାରେ ଆସିଛନ୍ତି ସେମିତି ନୁହେଁ । କିଛି ଯୁବକ ଏବଂ ବାଳକ ଆସିଛନ୍ତି ଉତ୍ସୁକତା ନେଇ । ଧାଁ ଧପଡ଼ ବୁଲାବୁଲି କରିବା ମନୋହରି ଦୋକାନରେ ଭିଡ଼ ଜମେଇଥିବା ଝିଅମାନଙ୍କ ଅଭିଭାବକ ସାଜି ସେଠାରେ ଏପଟ ସେପଟ ହେବା, ଏବଂ 'ମୁଁ ସାହାଯ୍ୟ କରିପାରେ କି?' ଭାବ ମୁହଁରେ ମାଖି ଆପେକ୍ଷା କରିବା । ଯୁବକମାନଙ୍କର ଭିଡ଼ ସେଇଠି ।

ଜନୈକ ବରିଷ୍ଠ ଶ୍ରଦ୍ଧାଳୁ କନିଷ୍ଠକୁ କହିଲେ, ଅନାମପୁର ବାଲା ଗୋଟେ କାମ କରିଦେଖେଇ ଦେଲେ । ଆମ ଗାଁରେ ଖାଲି କୁତୁରୁପିଆ, ଗୋଡ଼ଟଣା କଙ୍କଡ଼ା । କିଛି ଅନୁଷ୍ଠାନ ଆମ ଗାଁରେ ହେଇପାରୁଛି? କ୍ଷୋଭ ପ୍ରକାଶ କଲେ ପ୍ରବୃଦ୍ଧ ।

କଲେଜ ପଢୁଥିବା ଯୁବକ ଜଣକ ହଜମ କରିପାରିଲେନାହିଁ ନିଜ ଗାଁର ନିନ୍ଦା । "ଅଜା, ଅନାମପୁର ବାଲା କ'ଣ କଲେ କି?" ଓଲଟି ପ୍ରଶ୍ନକଲା ଯୁବକ ।

–କ'ଣ କିଛି ଦେଖି ପାରୁନୁ କି? ଏ ଯୋଉ ଆୟୋଜନ!

–ହଁ ଯେ, ଏଥିରେ ଲାଭ କ'ଣ ହେଲା?

–ଆରେ ଲାଭ କ'ଣ ପଚାରୁଛୁ? ଶୁଣି ନାହୁଁ କି! ବାବା ଏ ଗ୍ରାମକୁ ପୋଷ୍ୟ ଗ୍ରାମ୍ୟ କରିବେ । ରାସ୍ତା ଘାଟ ପାଣି ସବୁ ଅବସ୍ଥା ହବ ।

ଗାଁର ରୂପ ବଦଳି ଯିବ ।

ବୃଦ୍ଧଙ୍କ କଥାରେ ଯୁବକ ହସିଲା ଏକ ବେପରୁଆ ହସ । ବୃଦ୍ଧ ରାଗିଗଲେ ଏଥର । ତୁମ ଟୋକା ଟାକଳିଆଙ୍କର ସବୁବେଳେ ଗୋଟା ଥଟ୍ଟା ତାମସା ।

ଆଚ୍ଛା ଅଜା ତୁମ ଜୀବଦ୍ଦଶାରେ ଏମିତି ପୋଷ୍ୟଗ୍ରାମ୍ୟ ଦେଖିଛ? କେବଳ ଶୁଣିଥିବ! ଯୁବକ ନିଜ ଯୁକ୍ତିକୁ ଦୃଢ଼କଲା ।

ତୁମର ବିଶ୍ୱାସ ନାହିଁ । ସେଇଥିପାଇଁ ଗାଁର ଉନ୍ନତି ହୋଇପାରିନି । ଆରେ ବିଶ୍ୱାସେ ମିଳଇ ହରି ତର୍କେ ବହୁଦୂର । ବିରକ୍ତି ପ୍ରକାଶ କରି ବୃଦ୍ଧ ଏକାନ୍ତକକ୍ଷ ଆଡ଼େ ପାଦ ବଢ଼ାଇଲେ ଏବଂ ଯୁବକ ମନୋହରି ଦୋକାନ ଆଡ଼େ ।

ପ୍ରାୟ ଦୁଇଶହ ଶ୍ରଦ୍ଧାଳୁ ଏକାନ୍ତ ସଙ୍ଗ ଲାଭକରି ଦୁଃଖମୋଚନର ମନ୍ତ୍ରପାଇ ସ୍ୱ ସ୍ୱ ରାସ୍ତାରେ ବାହୁଡ଼ିଲେଣି । ସାଧାରଣ ସମସ୍ୟା ଏଇଠାରେ ସମାଧାନ ହେଉଛି । ବାବା ନିଜେ ପିନ୍ଧାଇ ଦେଉଛନ୍ତି ଡ଼େଉଁରିଆ, ସଚିବ ପ୍ରୟୋଗ ବିଧି ମୁଦ୍ରିତ କାଗଜଟି ଧରାଇ ଦେଇ ବତାଇ ଦେଉଛନ୍ତି ଉପଚାର । ଟିକିଏ ଏପଟ ସେପଟ ହେଲେ ଫଳ ଓଲଟା ଫଳିପାରେ ବୋଲି ସତର୍କ କରାଇ ଦେଉଛନ୍ତି ମଧ୍ୟ ।

ଅଧିକାଂଶ ଜଟିଳ ସମସ୍ୟାର ସମାଧାନ ଚିତ୍ରକୁଟରେ ହିଁ ସମ୍ଭବ । ଏପରି ସମସ୍ୟା ଜର୍ଜରିତ ଶ୍ରଦ୍ଧାଳୁଙ୍କ ସଂଖ୍ୟା ଏଠାରେ ଅଧିକ । ଅନୁନ୍ନତ ଅଞ୍ଚଳର ସମସ୍ୟା ଜଟିଳ ହିଁ ହେବ । ଯେଉଁ ଅଞ୍ଚଳରେ ସରକାରୀ କଳ ବିଫଳ ବା ଅସଫଳ ହୋଇଛି ସେଠି ସମସ୍ୟା ଜଟିଳରୁ ଜଟିଳତର ହେବ ହିଁ ହେବ । ଏଣୁ ସମାଧାନ ଚିତ୍ରକୁଟରେ ।

ଚିତ୍ରକୁଟ ଯିବା ସମସ୍ତ ଶ୍ରଦ୍ଧାଳୁଙ୍କ ପକ୍ଷେ ସମ୍ଭବନୁହେଁ । ଶ୍ରଦ୍ଧାଳୁଙ୍କ ତରଫରୁ ମାତ୍ର ତିନିଜଣ ଯିବେ । ଜଗନ୍ନାଥ ତ୍ରିପାଠୀ ଓରଫ ଜଗୁ ତିଆଡ଼ି । ରସାନନ୍ଦ ମହାନ୍ତି ଏବଂ ବିନୁ ମାରୁଆଡ଼ି । ଏହି ତିନି ଶ୍ରଦ୍ଧାଳୁଙ୍କ ଘର ଭିନ୍ନ ଭିନ୍ନ ଗ୍ରାମରେ । ବିନୟ ମାରୁଆଡ଼ି (ବିନୁ)ତ ସଦର ମହକୁମାରେ ରହେ । ତା'ର ବ୍ୟବସାୟ ପ୍ରତିଷ୍ଠାନ ଅଛି । ପ୍ରାୟ ପ୍ରତ୍ୟେକ ଗୁରୁ ଏବଂ ବାବାଙ୍କୁ ସେ ଆତିଥ୍ୟ ପ୍ରଦାନ କରେ । ଧାର୍ମିକ ପୁରୁଷ । ଭାରି ଉପକାରୀ । ଏହି ତ୍ରି ବନ୍ଧୁ ଏତେ ନିର୍ଲୋଭ, ଅମାୟିକ ଯେ କେଉଁଠି ମୁଁ କରିଛି ବୋଲି କହନ୍ତିନାହିଁ କିନ୍ତୁ ସବୁଥିରେ ସେ ଥା'ନ୍ତି । ଅଥଚ ଖଳ ପ୍ରକୃତିର ଲୋକ ଭିନ୍ନ ଭିନ୍ନ କଥା କହନ୍ତି ଏବଂ ଚିତ୍ରକୁଟ ଗସ୍ତର କାରଣ ମଧ୍ୟ ଅଲଗା ବୋଲି କହନ୍ତି । ବିଶ୍ୱାସୀ ଲୋକ ଏ ସବୁଥିରେ କାନ ଦିଅନ୍ତି ନାହିଁ ।

ଶେଷ ଶ୍ରଦ୍ଧାଳୁ ଏକାନ୍ତସଙ୍ଗ ପାଇଁ ରହିଗଲା ପେଚି ମା' । ବୁଢ଼ୀ କାଲିଠାରୁ ଅପେକ୍ଷା କରିଛି କିନ୍ତୁ ସମସ୍ୟାର ଗୁରୁତ୍ୱ ଏବଂ ବ୍ୟକ୍ତିର ଗୁରୁତ୍ୱକୁ ପ୍ରାଧାନ୍ୟ ଦିଆଯାଉ ଥିବାରୁ ବୁଢ଼ୀ ରହିଗଲା ପଛକୁ ''ଆଲୋ ପେଚି ମା' ତୋର ଅଭାବ କ'ଣ ? ସରକାରୀ ଜାଗାରେ ରହିଛୁ, କଣ୍ଟ୍ରୋଲ ଚାଉଳ ଖାଉଚୁ ଆଉ ଅଭାବ କି'ଣ? ବାବାଙ୍କୁ କ'ଣ ପଚାରିବୁ? ଜନୈକ ଯୁବ କର୍ମକର୍ତ୍ତା ବୁଢ଼ୀକୁ ହାତଧରି ଏକାନ୍ତ କକ୍ଷ ଆଡ଼କୁ ଯିବା ବାଟରେ ପଚାରିଲେ ।

ବୁଢ଼ୀକୁ ଠିକ୍‌ଭାବେ ଶୁଭୁନାହିଁ କି ଠିକ୍‌ଭାବେ ଦିଶୁନାହିଁ । ସେ ମୁଣ୍ଡଟୁଙ୍ଗାରି ଟୁଙ୍ଗାରି ନାତି ତୁଲ୍ୟ ଯୁବକମାନଙ୍କୁ ପାଣିଚିଆ ଆଖିରେ ଚାହିଁଲା, ଈଷତ୍ ହସିବାକୁ

ଚେଷ୍ଟାକଲା । ପିଲାଙ୍କ କଥା ସେ ବୁଝିପାରିଲା କି ନାହିଁ ସେ ଏକା ଜାଣେ । ହାତ ଉଠେଇ ଆଶୀର୍ବାଦ କଲା ତୁମର କୋଟି ପରମାୟୁ ହଉ ।

ଥୁରୁ ଥୁରୁ ଦୋହଲୁଥାଏ । ଚମ ଧୁଡୁ ଧୁଡୁ କଙ୍କାଳ ସାର ଶରୀର । ଖୁବ ଯୋରରେ ପବନ ଦେଲେ ଉଡ଼େଇ ନେଇଯିବ ଯେମିତି । କେତେକାଳୁ ପେଡ଼ିରେ ସାଇତା କଣ୍ଡାପିନ୍ଧି ବୁଢ଼ୀ ଦିଶୁଥାଏ ନିଖୁଣ ମୁଗୁନି ପଥର ମୁର୍ତ୍ତିଟିଏ ।

ଅଣ୍ଟାରେ ଖୋସିଥିବା କୋଥଳିଟି ବାବାଙ୍କ ପାଖରେ ଥୋଇଦେଇ ହାତ ଯୋଡ଼ିଲା ବୁଢ଼ୀ । ବାବା ମୋ ପୁଅ? ମୋ ପୁଅ କାଇଁ?? ବୁଢ଼ୀ ପାଟି ଖୋଲିଲା, ଆଖି ଦୁଇଟିରେ ସଞ୍ଚିଥିଲା କେଉଁ କାଳରୁ ଦି ବୁନ୍ଦାଲୁହ, ଢକେଇ ଆସିଲା ଏବଂ ଲଥକରି ବସିପଡ଼ିଲା ଚଟାଣ ଉପରେ । ଜନୈକ ସ୍ୱେଚ୍ଛାସେବୀ ବାବାଙ୍କୁ ବୁଝେଇ ଦେଲେ । ବୁଢ଼ୀ ପାଗଳୀ । ବାରବର୍ଷ ତଳେ ତା ପୁଅ କଲିକତା ଯାଇଥିଲା କାମ କରିବାକୁ, ବେମାର ହେଲା ସେଇଠି ମରିଗଲା । ବୁଢ଼ୀ ସେହି ଦିନୁ ପାଗଳୀ । ଖାଲି ଖୋଜି ବୁଲୁଛି, ଆଉ ଯାହାକୁ ଦେଖୁଛି କହୁଛି, ମୋ ପୁଅ । ତା ମୁଣ୍ଡ ଆଉ କାମ କରୁନି ।

ବୁଢ଼ୀ ସୁଁ ସୁଁ ହେଲା । ଛାତି ଭିତରୁ ବାହାରି ଆସୁଥିବା କୋହକୁ ଲୁଗାକାନିରେ ଚାପି ଧରିଲା ମୁହଁରେ । ଆଖି ଦୁଇଟି ଲୁହ ଭର୍ତ୍ତି, ବାସ୍ । ଆଉ ପ୍ରାୟ ଲୁହ ନାହିଁ । ମୃତ ନଦୀର ଧାର ପରି ଦୁଇ ଆଖିର ଦୁଇ ପଟେ କେବଳ ଚିହ୍ନ ରହିଛି ସେଥିରେ ପ୍ଲାବନ ନାହିଁ ।

ଜନୈକ କର୍ମକର୍ତ୍ତା ଜାଣିଥିଲେ ବୁଢ଼ୀ ଇତିହାସ, ସଂକ୍ଷେପରେ ବଖାଣିଲେ । ବଡ଼ ଝିଅ ପେଟି ଆଠବର୍ଷ ବେଳେ ଡ଼ାଇରିଆରେ ମଲା । ବାପ ଆଗରୁ ଯାଇଛି । ତା'ପାଖରେ ପାଞ୍ଚବର୍ଷର ପୁଅ ଆଉ ଢ଼ିଅ ଖଣ୍ଡେ । ବୁଢ଼ୀ କୁଟୁଣାକୁଟି ପୁଅକୁ ବଡ଼ କଲା । ରାଣ୍ଡିପୁଅ ତ, ଲଗାମଛଡ଼ା ହୋଇଗଲା କୁଳାଙ୍ଗାର । ଭେଣ୍ଡିଆଟାଏ କିଛି କାମଧନ୍ଦା କଲା ନାହିଁ । ଏଠିସେଠି ବୁଲିଲା, ଗଞ୍ଜେଇ ଟାଣିଲା, ଛୋଟ ମୋଟ ଚୋରିକରି ଦିନେ ଧରାପଡ଼ି ନିର୍ଘୁମ ମାଡ଼ ଖାଇ କଲିକତା ପଳେଇଲା । ବିଶିଆ ଦାଦା ତାକୁ ଭେଟିଥିଲା । ସେ ବେମାର ଥିଲା, ବୋଧହୁଏ ମରିଗଲା । ବୁଢ଼ୀ ସେ ଦିନୁ ବାୟାଣୀ ।

ବାବାଙ୍କ ଇଙ୍ଗିତରେ ଏକାନ୍ତ ହେଲା କକ୍ଷ । ଏପରିକି ସଚିବ ମଧ୍ୟ ପ୍ରସ୍ଥାନ କଲେ । ଆସନ ତ୍ୟାଗକରି ବାବା ଉଠିଆସିଲେ । କେଜାଣି କାହିଁକି ବୁଢ଼ୀର ବେଦନା ତାଙ୍କୁ ଅନ୍ୟମନସ୍କ କରି ଦେଇଛି । ଅସ୍ତବ୍ୟସ୍ତ କରି ପକାଉଛି ଏବଂ ଏହାପରେ ଯାହା ଘଟିଲା ତାହା ଆକସ୍ମିକ କିମ୍ବା ପୂର୍ବ ନିର୍ଦ୍ଧାରିତ କହିବା ସମ୍ଭବ ନୁହେଁ । ଏହାଥିଲା

ସ୍ୱୟଂ ବାବା ଏବଂ ପେଚି ମା ଉଭୟଙ୍କ ପାଇଁ, ରହସ୍ୟମୟ ପେଡ଼ିରୁ ବାହାରୁଥିବା ଚମତ୍କାରିତା ।

ବାବା, ପେଚି ମା'ର ପାଦଧରି କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲେ । ପିଲାଙ୍କ ଭଳି । ଜାବୋଡ଼ି ଧରିଲେ ତାକୁ, ପୋଛି ଦେଲେ ତା ଆଖିରୁ ଲୁହ ଏବଂ ତାଙ୍କ ପାଟିରୁ ବାହାରିଲା ପ୍ରଥମ ଶବ୍ଦ – ମା' ମତେ ଚିହ୍ନପାରୁନୁ !

ବୁଢ଼ୀ ମୂକ ପାଲଟି ଗଲା । ତା'ପ୍ରତି ଭାଗ୍ୟ ଉଦୟ ହୋଇଛି ନା କ୍ରୁର ପରିହାସ କରୁଛି ଏ ପରିଣତ ବୟସରେ ସେ ବୁଝିପାରିଲା ନାହିଁ।

ବାବା ପୁଣି ଉଚ୍ଚାରଣ କଲେ – ମା' ମୁଁ ତୋରି ପୁଅ, ଗୋବରା । ହେଇ ଦେଖ ମୋ ଛାତିରେ କଳାଜାଇ ।

ବୁଢ଼ୀ ଏଥର ଭଲକରି ଚାହିଁଲା ବାବାଙ୍କୁ । ତା ଆଖିରୁ ପରଳ ହଟିଗଲା । ପୁଅକୁ ଆଉଁଶି ପକେଇଲା କହେ । ପରେ ପୁଣି କ'ଣ ଭାବିଲା ପଚାରିଲା – ତୁ ଯଦି ମୋ ପୁଅ ମୁଁ ମଲି କି ଗଲି ବୁଝିଲୁନି ଆସି । ତୁ ଏମିତି ଦାଢ଼ି କାହିଁକି ରଖିଛୁ । ତୋ ପିଲାପିଲି କୋଉଠି ଅଛନ୍ତି, ତାଙ୍କୁ ଆଣ ଏଠିକି । ତାଙ୍କୁ ଦେଖିଲେ ମୁଁ ଆଖି ବୁଜିବି ।

ମା'ର ହାତସ୍ପର୍ଶରେ ସତେ ଯେମିତି ଧୋଇଗଲା, ବାବାଙ୍କର ସମସ୍ତ ଆବରଣ । ଈଶ୍ୱର ବଦଳିଗଲେ, ସାଧାରଣ ମଣିଷରେ । ଉଭେଇଗଲା ସମସ୍ତ ଚମତ୍କାରିତା । ଦିବ୍ୟରଂଜନଙ୍କର ଦିବ୍ୟଶକ୍ତି, ମା'ର ଛଳଛଳ ଆଖି ସାମ୍ନାରେ ଅକାମି ହୋଇଗଲା – ସେ ଗୋବରା ପାଲଟିଗଲେ, ପେଚି ମା'ପୁଅ ଗୋବରା । ଅନାମପୁର ରାଣ୍ଡିପୁଅ ଗୋବରା । ମା' ପାଟିରୁ କଥା ବାହାରୁ ନଥାଏ । ପୁଅକୁ ଏମିତି ଜାବୁଡ଼ି ଧରୁଥାଏ ଯେ ସେ ଆଉ ଖସିଯାଇପାରିବ ନାହିଁ । ଥରେ ଖସିଯାଇଛି, ଏଥର ଆଉ ଭୁଲ୍ ହବନି ।

ଗୋବରା ମା'ର ମୁହଁକୁ ନିରିଖେଇ ଦେଖିଲା । ପୃଥିବୀର ସବୁଠୁ ସୁନ୍ଦର ଜିନିଷକୁ ସତେ ଅବା ସେ ଦେଖୁଛି । ପଲକ ପଡୁନାହିଁ । ବରଂ ସ୍ପଷ୍ଟଭାବେ ମନେ ପଡୁଛି ପଛକଥା ।

ଜମି–ବଳଦ–ଗାଈ ହାତରୁ ଯିବାପରେ ଘରଡ଼ିହ ଏବଂ ମା'କୁ ଛାଡ଼ିଦେଲେ ଗୋବରାର ନିଜସ୍ୱ ବୋଲି ଆଉ କିଛି ରହିଲା ନାହିଁ । ଚଳିବ କେମିତି? ଏପଟେ ମା'ର ପେଟ ବେମାରି ବାହାରିଲାଣି । ଗାଁ ଗହଳିରେ କାମଧନ୍ଦା ମିଳୁଛି ବା କୋଉଠି? ଯେଉଁମାନେ ବଡ଼ ଚାଷୀ ସେମାନଙ୍କର ହଳିଆ–ମୂଲିଆ ଆଗରୁ ବନ୍ଧା । ଗୋବରା ବୁଲିଲା ଗାଁର ଏ ମୁଣ୍ଡରୁ ସେମୁଣ୍ଡ, ଏ ଗାଁରୁ ସେ ଗାଁ । ସଳଖ ସୁନ୍ଦର ଭେଣ୍ଡିଆଟାଏ । କଥାବାର୍ତ୍ତା ମଧ୍ୟ ଭଲ । ତେଣୁ କିଛି ଲୋକ ତା ଦ୍ୱାରା ବୋଲହାକ କରାଇଲେ –

ଝିଅ ଘରକୁ ପଣଷ ଦିଟା ଯିବ, ଗୋବରାକୁ ଡ଼ାକ । ପରିଡ଼ା ଘର ପାଳରୁ ହାଟକୁ କଖାରୁ ବୁହାହୋଇଯିବ – ଗୋବରାକୁ ଡ଼ାକ । ନଈ ପାରିବେଳେ ବୁଢ଼ାବୁଢ଼ୀ ମାନଙ୍କୁ ତଳାବାଲିର ପଠାରୁ ଡ଼ଙ୍ଗା ଉପରକୁ ଉଠାଇବା ବେଳେ ଦରକାର ପଡ଼ିଲା ଗୋବରା । କାହାର ଚିନାବାଦାମ କ୍ଷେତରେ ଚୋର ଲାଗିଲେ, ରାତି ଜଗିବା ପାଇଁ ଲୋକ ଦରକାର – ଗୋବରାକୁ ଡ଼ାକ । ଏମିତି ଏମିତି ଛୋଟମୋଟ କାମ ପାଇଁ କିଏ ଖାଇବାକୁ ଜଳଖିଆ ଦେଲା ତ କିଏ ଫାଳେ କଖାରୁ, ଦୁଇକିଲୋ ଚିନାବାଦାମ ।

ଭୁଲିଯାଇଥିବା ଦିନଗୁଡ଼ିକ ମେଘଫାଙ୍କରୁ ସୂର୍ଯ୍ୟାଲୋକ ଭଳି ଝଲସି ଉଠିଲା, ମନରେ । ସଂସାର ତ୍ୟାଗ କରିବା ଏପରିକି ଗାଁ ମାଟି ଛାଡ଼ି କାଳୀମାଟିରେ କୁଲିଖଟିବା ଭଳି ଯୋଜନା ତ ତା'ର ଆଦୌ ନଥିଲା । ସେ ଚାହିଁଥିଲା, ଏଇଠି ସାଧାରଣ ମଣିଷଟିଏ ହୋଇ ବଞ୍ଚିଥାନ୍ତା ।

କିନ୍ତୁ, ତା ଭାଗ୍ୟ ଖରାପ । ବାପ ମରିଯିବା ପରେ ଯେମିତି ଗୋଟିକ ପରେ ଗୋଟିଏ ବିପତ୍ତି ମାଡ଼ିଆସିଲା । ଘରଥିଲା, ଜମିଥିଲା, ଗୁହାଳେ ଗାଈ–ବଳଦ ଥିଲେ । ଅଥଚ ସେ ଜାଣିନଥିଲା ତାଙ୍କ ଜମିକୁ ତା ବାପ ଜଗୁ ତିଆଡ଼ି ପାଖରେ ବନ୍ଧକ ରଖି, ପେଚିର ପେଟବେମାରି ଭଲ କରିବା ପାଇଁ କରଜ ଆଣି କଟକ ବଡ଼ ଡ଼ାକ୍ତରଖାନା ଯାଇଥିଲା । ପେଚି ତ ରହିଲା ନାହିଁ । ଏପଟେ କଳନ୍ତର ସୁଧ ହିସାବରେ କରଜ ଟଙ୍କା ବଢ଼ିଚାଲିଲା । ବାପ ମରିବା ଦିନ ହିଁ ଜଗୁତିଆଡ଼ି ଶୁଣେଇ ଦେଲା ଆଠ ହଜାର ପାଞ୍ଚ ଶହ ଟଙ୍କା ସୁଧମୂଳ ଦବୁ ତ ଜମି ତୋର । ବଳଦ ହଳେ ବିକ୍ରି ହେବାରୁ ଶୁଦ୍ଧିକ୍ରିୟା, ବ୍ରାହ୍ମଣଭୋଜନ, ଦଶାହ ଭୋଜି ହେଲା । ଆଠ ହଜାର ପାଁଶ ସେ କେଉଁଠୁପାଇବ? କେତେ ନେହୁରା ହେଲା ଜଗୁ ତିଆଡ଼ିକୁ କକେଇ ଦି'ଟା ବର୍ଷ ମହଲତ୍ ଦିଅ । ସୁଝିଦେବି । ଜଗୁ ତାଚ୍ଛଲ୍ୟ କଲା – କ'ଣ କିରେ ପୁଲିସ୍ ଚାକିରୀ କରିଛୁ? ଦି'ଟା ବର୍ଷରେ ଆଠ ହଜାର ସୁଝିଦବୁ କହୁଛୁ? ସେ ବର୍ଷ ଗୋବରା ବିଲରେ ଜଗୁ ତିଆଡ଼ିର ହଳ ବୁଲିଲା ।

ପେଚି ମା' ପୁଅକୁ ଆଉଁଷି ଦଉଥାଏ ମୁଣ୍ଡରୁ ପାଦ ପର୍ଯ୍ୟନ୍ତ । କୋଟିନିଧି ପାଇଛି ଯେମିତି । ପାଣିଚିଆ ଆଖିରେ ତା'ର ପଲକ ପଡୁନଥାଏ । ଏପଟେ ମା'ର ସ୍ପର୍ଶ ପାଇ ପୁରୁଣା ଅନୁଭୂତ ସବୁ ଗୋଟିକ ପରେ ଗୋଟିଏ ମନେ ପଡୁଥାଏ ଗୋବରାର । ଗୋବରା କାମକଲା ସତ ତା'ର ପେଟ ପୁରିଲାନି କି ପିଠି ଲୁଚିଲା ନାହିଁ । ତା'କାମ, କାମରେ ଗଣାହେଲା ନାହିଁ କି ସେ ଜଣେ ଉପାର୍ଜନକ୍ଷମ ମୁଲିଆ ଭାବେ ସ୍ୱୀକୃତି ପାଇଲା ନାହିଁ ।

ଯେଉଁଠି ମୁଲିଆଟିଏ ଖଟାଇଲେ ଦଶଟଙ୍କା ମଜୁରି ଦରକାର ଚତୁର ଲୋକମାନେ ସେଠାରେ ମନେ ପକାନ୍ତି ଗୋବରାକୁ । ଗଣ୍ଡାଏ ଖାଇବାକୁ ଦେଇ ମିଠାକଥା ପଦେ କହିଦେଲେ ତ ଗୋବରା ସେ କାମ ଉଠେଇ ଦେଲା । ଅବଶ୍ୟ ଗୋବରା ଗୁଡ଼ିଏ ପ୍ରଶଂସା ପାଏ । 'ଗୋବରା ଭଳି ପିଲା ଆମ ଗାଁରେ କାହାନ୍ତି?' 'ଗୋବରାଟା କେତେ ସୁଧାର ପିଲା, ମାଛିକୁ ମ'କହେନି ।' ଆଉ କିଏ ପାଦେ ଆଗେଇଯାଇ କହନ୍ତି – 'ତୁ ତ ମୋ ପୁଅ ଭଳିଆ, ମୋ ଘର ଲୋକ, ଏ କାମଟା ଟିକେ କରିଦେ ।' ଏସବୁ କଥା ଗୋବରା ମୁହଁରେ ସେମାନେ କହନ୍ତି । କିନ୍ତୁ ତା ପଛରେ ଚର୍ଚ୍ଚା ହୁଏ ଭିନ୍ନକଥା – ହୁଣ୍ଡାଟାଏ, ରାଣ୍ଡିପୁଅ କି ଯାଏ, ବା'କଲେ ବସା ଦୋହଲୁଥାଏ ।

ପଛରେ କହିଲେ ବି, ଗୋବରା କାନରେ ଏକଥା ସବୁ ପଡ଼େ । ସେ କାହାରି ମୁହଁ ଭାଙ୍ଗିପାରେ ନାହିଁ କିମ୍ବା କାହାର ମୁହଁ ଉପରେ କଥା କହେନାହିଁ, ସହିଯାଏ । ହଜମ କରିଦିଏ ସବୁ ଟାହିଟାପରାକୁ ଏବଂ ବାଟ ଖୋଜୁଥାଏ ମନେମନେ ।

ବିଶିଆ କକେଇ ଭଲ ଅଛନ୍ତି ନା ମା ? ମା'ର ହାତ ଧରି ପଚାରିଲା ଗୋବରା ।

ସେ ପରା ଦୁଇବର୍ଷ ହେଲା ଚାଲିଗଲାଣି ।

ଚାଲିଗଲେଣି ? ଆଶ୍ଚର୍ଯ୍ୟ ହୋଇ ଗୋବରା ଫିଟେଇଲା ବାର ବର୍ଷ ତଳର ସେହିକଥା, ଯାହା ବଦଳେଇ ଦେଇଥିଲା ତା'ର ଗତିପଥ ।

''ବିଶିଆ କକେଇ ମତେ କଲିକତାରେ ଖବର ଦେଲେ, ତୋ ମା' ଗତବର୍ଷ ବନ୍ୟାରେ ଭାସିଗଲା । କୁଆଡ଼େ ଗଲା ଯେ ଖୋଜ ଖବର କେହି ପାଇଲେନି । ମତେ ପଚାରିଲେ – ତୁ କ'ଣ ଆଉ ଗାଁ କୁ ଫେରିବୁ? କ'ଣ କରିବୁ ସେଠି? ବରଂ ଏଇଠି ଥା ସଂସାର କରି ରହ । ଆଉ ତୋ ବାପା ନାଁରେ ଥିବା ଢ଼ିଅ ଖଣ୍ଡକ ରଘୁନାଥ ମନ୍ଦିରକୁ ଦାନ କରିଦେ । ମୁଁ ଭାବିଲି ଯାହା ପାଇଁ ବିଦେଶ ମାଟିରେ ଆସି କୁଲି ଖଟିଲି ସେ ଯଦି ନାହିଁ, ଗାଁ କୁ ଯିବି ବା କାହିଁକି । ତା'ଙ୍କୁ ହଁ କହିଦେଲି । ଆଉ ମୁଁ ଋଷିକେଶ ପଳେଇଲି । ସେଠି ଜଣେ ଗୁରୁଙ୍କ ପାଖରେ ରହିଲି ଦୁଇବର୍ଷ । ଏବେ ମୁଁ ଆଉ ତାଙ୍କ ପାଖରେ ନାହିଁ ।''

କିଛିକ୍ଷଣ ଚୁପ୍ ରହି ମା'କୁ ପ୍ରସ୍ତାବ ଦେଲେ ବାବା ତୁ ଚାଲ ମୋ ସାଙ୍ଗରେ । ଚିତ୍ରକୁଟ ଆଶ୍ରମରେ ମୋ ପାଖରେ ରହିବୁ ।

ବୁଢ଼ୀ ଚମକି ପଡ଼ିଲା । ପୁଅର ହାତ ଧରି ବିନତି କଲା, ତୁ କ'ଣ ମୋ ପାଖରେ ରହିବୁ ନି, ଏଇଠି ? ତୋ ବାପର ଢ଼ିଅ ଉପରେ କୁଡ଼ିଆ ଟିଏ କରିଛି । ସରକାର ଚାଉଳ ଦଉଛି । କ'ଣ ଚଳିପାରିବା ନି ଆମେ? ତୁ କ'ଣ ମତେ ଶେଷ ବେଳକୁ ନିର୍ମାଲ୍ୟପାଣି ଟିକେ ଦବୁନି? ମୋ ମୁହଁରେ ନିଆ ଦବୁନି? ମୋର ଆଉ

କେଇଟା ଦିନ ବାପା? ବୁଢ଼ୀର ତଣ୍ଟି ସୁଖିଗଲା । ସେ ଆଉ କିଛି କହିବାକୁ ଚେଷ୍ଟାକରି ବିଫଳ ହେଲା ।

ଏବେ, ବାବା ଶ୍ରୀ ଶ୍ରୀ ଦିବ୍ୟରଂଜନ ଏବଂ ପେଚି ମା' ପୁଅ ଗୋବରା ଭିତରେ ଅର୍ନ୍ତଦ୍ୱନ୍ଦ । ଘୋର ମତଭେଦ । ମା'ର ହାତଛାଡ଼ି ଆଖିବୁଜି ଦାଢ଼ି ସାଉଁଳେଇଲେ ବାବା । ବୁଡ଼ିଗଲେ ଆତ୍ମଚିନ୍ତନରେ ।



(୨୦୧୨)

# ଦଶମ ଗ୍ରହ

ସୁର ସାର୍‌ଙ୍କୁ ଦେଖି ମୁଁ ଖୁସି ହେଉଥିଲି ଯେତିକି, ଆଶ୍ଚର୍ଯ୍ୟ ହେଉଥିଲି ତାଠୁଁ ଅଧିକ।

ଘର ଠାରୁ ପାଞ୍ଚଶ' କି.ମି. ଦୂରରେ ଏହି ଛୋଟ ସହରରେ ମୋର ଚାକିରି ପାଞ୍ଚ ବର୍ଷ ହେଲାଣି। ଅତି ଜରୁରୀ କାମ ନ ପଡ଼ିଲେ ଘର ପାଖରୁ ଏଠାକୁ ପ୍ରାୟ କେହି ଆସନ୍ତି ନାହିଁ। ଏବେ ଟେଲିଫୋନ୍‌ର ବହୁଳ ପ୍ରଚଳନ ଫଳରେ, ପ୍ରାୟତଃ, କେହି ଆସୁନାହାନ୍ତି। ଫମାଇସ୍ କରନ୍ତି ଏବଂ କାର୍ଯ୍ୟସିଦ୍ଧିର ରିପୋର୍ଟ ମଧ୍ୟ ହାସଲ କରିନିଅନ୍ତି ସେହି ଦୂରଭାଷ ଯନ୍ତ୍ରରେ। ବିଶେଷ କରି, ପିଲାଙ୍କର ପରୀକ୍ଷା ଏବଂ ଖାତା ଦେଖାବେଳେ ମୁଁ ଅଧିକ ମନେପଡ଼େ।

ସୁରସାର୍, କେବେ ଟେଲିଫୋନ୍ କରନ୍ତି ନାହିଁ। ଚିଠି ଲେଖନ୍ତି। ପୋଷ୍ଟକାର୍ଡ଼ରେ ଏପଟରୁ ସେପଟ ଅତି ଯତ୍ନରେ ଲେଖା ହୋଇଥାଏ ଆମ ଅଞ୍ଚଳର ଚଳନ୍ତି ଇତିହାସ। ବିଶେଷତଃ, ରାଧାଗୋବିନ୍ଦ ମଠ ଏବଂ ଗୋବିନ୍ଦପୁର ପ୍ରାଥମିକ ବିଦ୍ୟାଳୟ, ଯେଉଁଠାରେ ସେ ଶିକ୍ଷକତା କରି ଅବସର ନେଇଛନ୍ତି, ଏହି ଦୁଇଟି ଅନୁଷ୍ଠାନର ଖବର ପୋଷ୍ଟକାର୍ଡ଼ର ବଡ଼ସ୍ଥାନରେ ଥାଏ। ଅନ୍ୟାନ୍ୟ ଖବର ଠିକଣାର ବାମପାର୍ଶ୍ୱରେ। ପ୍ରତି ମାସରେ ଚିଠି ଆସେ ଏବଂ ପ୍ରତ୍ୟେକ ଚିଠିର ଶେଷ ଦୁଇଟି ଧାଡ଼ି – ସପରିବାର ସର୍ବକୁଶଳେ ଥାଅ। ଡଲି, ମାଉସୀ ଏବଂ ଅନ୍ୟମାନେ ଏଠାରେ ଭଲରେ ଅଛନ୍ତି, ଅବଶ୍ୟ ଲେଖାଥାଏ।

ସବୁବେଳେ ସତ କହୁଥିବା ଏବଂ କେବେ ବି ମିଥ୍ୟାକୁ ପ୍ରଶ୍ରୟ ନ ଦେବାକୁ ଶିକ୍ଷାଦାନ କରିଥିବା ରାଜ୍ୟପାଳ ପୁରସ୍କାରପ୍ରାପ୍ତ ଶିକ୍ଷକ, ମୋର ପରମପୂଜ୍ୟ ସୁରସାର୍, ପ୍ରତ୍ୟେକ ଚିଠିରେ ଏହି ମିଛ ଶେଷଧାଡ଼ିଟି ଯେ କେମିତି ଲେଖନ୍ତି ତାହା ମୁଁ ବୁଝିପାରେନା। ସେ ମୋତେ ଛାତ୍ରବୋଲି କେବେ ଭାବିନାହାନ୍ତି। ତାଙ୍କର ସ୍ନେହ, ଆନ୍ତରିକତା, ଭଲ ପାଇବାରୁ ବୋଧହୁଏ କିଛି ଅଧିକ ଭାଗ ମୋପାଇଁ ସେ ରଖିଥାନ୍ତି ତାଙ୍କ ମନରେ। ତାଙ୍କର ଏକମାତ୍ର ସନ୍ତାନ, ଡଲି, ମୋର ସହପାଠୀ। ବୟସରେ ଦୁଇମାସ ବଡ଼ ତେଣୁ ମୁଁ ତାକୁ ଡଲି ଏବଂ ଡଲିନାନୀ ଉଭୟ ନାଁରେ ସମ୍ବୋଧନ

କରେ । ପ୍ରଥମେ ପ୍ରଥମେ ମୃଦୁ ପ୍ରତିବାଦ, ତତ୍‌ପରେ ବନ୍ଧୁତ୍ୱର ଦ୍ୱାହିରେ ସେହି ଅଷ୍ଟମ ଶ୍ରେଣୀରୁ ଡଲିନାନୀ ଡାକଟି ଗୋଟାଏ ଚମକ ସୃଷ୍ଟିକାରୀ ଶବ୍ଦ ହୋଇଗଲା ମୋପାଇଁ ।

ମୁଁ ଆଶ୍ଚର୍ଯ୍ୟ ହେଉଥିଲି ସାର୍‌ଙ୍କୁ ଦେଖି । ପ୍ରକୃତରେ, ଦୁଇ ବର୍ଷ ହେଲା ସାର୍‌ଙ୍କୁ ଦେଖିନଥିଲି । ମାତ୍ର ଦୁଇବର୍ଷ ବ୍ୟବଧାନରେ ଯେ ବାର୍ଦ୍ଧକ୍ୟ ଏତେ ପ୍ରଚ୍ଛନ୍ନ ଭାବେ ଆକ୍ରାନ୍ତ କରିପାରେ, ଜଣେ ସୁସ୍ଥ-ସବଳ ମଣିଷକୁ ଅଚଳ କରିପାରେ, ତାହା ହିଁ ଥିଲା ମୋର ଆଶ୍ଚର୍ଯ୍ୟର କାରଣ । ସାର୍ ଠିକ୍‌ଭାବେ ଚାଲି ପାରୁନଥିଲେ ଏବଂ ତାଙ୍କର ସେ ପ୍ରଗଳ୍‌ଭତା ଆଉ ନଥିଲା । ଖୁବ୍ କମ୍ ଶବ୍ଦ ବାହାରୁଥିଲା ତାଙ୍କ ପାଟିରୁ । ତାହା ପୁଣି ମାପିଚୁପି, ଦେଖିଚାହିଁ ।

ମୋ ପାଖରେ ସେ କେବେ ବି ସଂକୁଚିତ ହୁଅନ୍ତି ନାହିଁ । ତାଙ୍କ ପାଟି ଚାଲିଥାଏ । ବରଂ ମୁଁ ସୁଯୋଗ ଖୋଜୁଥାଏ, କେତେବେଳେ ସେ ପାନଖଣ୍ଡେ ପାଟିରେ ପୂରେଇବେ, କିମ୍ବା ଚା'କପରେ ଓଠ ଲଗେଇବେ ଏବଂ ଠିକ୍ ସେତିକି ବେଳେ ମୁଁ ମୋ କଥାଟି କହିଦେବି ।

'ବିନୟ ! ତୁମର ପୁଅ କାହିଁକି ଦିଶୁନାହିଁ? ବୋହୂ ନାହାନ୍ତି କି?'

ଏତିକି ପ୍ରଶ୍ନପାଇଁ ପ୍ରାୟ ଦୁଇ ମିନିଟ୍ ଲାଗିଲା ତାଙ୍କୁ । କିଛିକ୍ଷଣ ମୋ ଉପରେ ଦୃଷ୍ଟି ପକେଇ ସେ ତଳକୁ ମୁହଁ କରି ବସିଲେ । ମତେ ଲାଗିଲା, କୌଣସି ଗୋଟିଏ ଦୁରାରୋଗ୍ୟ ବ୍ୟାଧି ତାଙ୍କୁ ଆକ୍ରାନ୍ତ କରିଛି, ନଚେତ୍ ଅସହ୍ୟ ମାନସିକ ଚାପରେ ସେ ଅଛନ୍ତି । ବୟସର ଚାପ ତାଙ୍କୁ ଯେତିକି ଅଚଳ କରିବା କଥା ତାଠୁଁ ଯଥେଷ୍ଟ ଅଧିକ ଭାରାକ୍ରାନ୍ତ, ନିଷ୍କ୍ରିୟ ଲାଗୁଛନ୍ତି । ମୁଁ ଚେଷ୍ଟା କଲି ତାଙ୍କୁ ସହଜ କରିବାପାଇଁ-

'ସାର୍ ସେ ପରା ଏଇ ବର୍ଷ ସ୍କୁଲ ଯାଉଛି । ତିନିବର୍ଷ ପୂରିଲା । ଏଇଠି ଗୋଟିଏ କନ୍‌ଭେଣ୍ଟ ସ୍କୁଲ ଖୋଲିଛି । ରାନୁ, ଘରେ ବସି ବୋର୍ ହେଉଥିଲା । ତାଙ୍କ ପ୍ରିନ୍ସିପାଲ୍ ଆପ୍ରୋଚ୍ କଲେ । ମୁଁ ନାହିଁ କହିପାରିଲି ନାହିଁ । ତେଣୁ ତାକୁ ବି ଏନ୍‌ଗେଜ୍‌ମେଣ୍ଟ ମିଳିଗଲା । ମା'ପୁଅ ଦୁହେଁ ଏବେ ସ୍କୁଲରେ, ସାଢ଼େ ବାରକୁ ଫେରିଆସିବେ ।

କ'ଣ ଇଂଲିସ୍ ମିଡିୟମ୍ ସ୍କୁଲ ? ସାର୍ ଏଥର ସ୍ପଷ୍ଟ ଉଚ୍ଚାରଣ କଲେ ଏବଂ ଆଶ୍ଚର୍ଯ୍ୟ ହୋଇ ମୋତେ ଚାହିଁଲେ । ତାଙ୍କର ସେ ଚାହାଣି ମୁଁ ସ୍ପଷ୍ଟ ପଢ଼ିପାରୁଥିଲି - ତା ଭିତରେ ପରସ୍ତ ପରସ୍ତ ହୋଇ ରହିଥିଲା ଅନେକ ପ୍ରଶ୍ନ ।

ସାର୍‌ଙ୍କର ଆସିବାର ଉଦ୍ଦେଶ୍ୟ ମୁଁ ଜାଣିପାରୁ ନଥାଏ । ସାଧାରଣ ଭାବେ ବୁଲିଆସିବା କିମ୍ବା ଅନ୍ୟ କେଉଁ ସ୍ଥାନକୁ ଯାଉଥିବା ବାଟରେ କିଛି ସମୟପାଇଁ ଅଟକିଯିବା ଭଳି ପରିସ୍ଥିତି ମଧ ନାହିଁ । ଏବେ ତାଙ୍କର ଯେଉଁ ସ୍ୱାସ୍ଥ୍ୟ ଅବସ୍ଥା, ସେ ତ ସମ୍ପୂର୍ଣ୍ଣ ବିଶ୍ରାମ ନେବା କଥା । ଦୀର୍ଘ ଅଠର ଘଣ୍ଟା ବସ୍ ଯାତ୍ରା କରି ଏଠାକୁ ଆସିବା,

ମତେ କାହିଁକି ଅଡୁଆ ଅଡୁଆ ଲାଗିଲା । କିନ୍ତୁ ମୁଁ ସିଧାସଳଖ ପଚାରିପାରୁ ନାହିଁ । ଏମିତି ତ ତାଙ୍କ ସାମ୍ନାରେ ଠିଆହୋଇ କଥାବାର୍ତ୍ତା କରିବାକୁ ମୋତେ କେମିତି ଗୋଟେ ଭୟଲାଗେ, ଏ ବୟସରେ ବି ।

ଡଲି କେମିତି ଅଛି ? ତା ଝିଅର ବୋଧହୁଏ ତୃତୀୟ ଶ୍ରେଣୀ ହୋଇଥିବ?

ମୋ ପ୍ରଶ୍ନରେ ସେ କେମିତି ଅସହାୟ ଅସହାୟ ଦିଶିଲେ । ଅତି କରୁଣ ପ୍ରଶ୍ନ ତାଙ୍କର ଚାହାଣିରେ । ସତେ ଯେମିତି ସେ କହିବାକୁ ଚାହୁଁଛନ୍ତି – ବିନୟ ତୁମେ ସତରେ କ'ଣ କିଛି ଜାଣିନା? ନା ସବୁଜାଣି ନ ଜାଣିବାର ଅଭିନୟ କରୁଛ?

ସ୍ଥିର ହୋଇ ରହିଲା ତାଙ୍କର ଦୃଷ୍ଟି ବେଶ୍ କିଛି ସମୟ ଝର୍କା ସେପଟର କୌଣସି ଏକ ଅନାବନା ଦୃଶ୍ୟ ଉପରେ । ମୋ ପ୍ରଶ୍ନ ତାଙ୍କୁ ଆଘାତ ଦେଲା କିମ୍ୱା ଜାଣି ଶୁଣି ସେ କିଛି ଗୋଟାଏ ଲୁଚାଇବାକୁ ଚାହୁଁଛନ୍ତି, ଏମିତି ଲାଗିଲା ମୋତେ । ମୋତେ ନ ଚାହିଁ, ସେହି ଝର୍କା ଆଡ଼କୁ ସେ ଅତି ସଂକ୍ଷିପ୍ତ ଉତ୍ତର ଫେରେଇଲେ – ହଁ, ଭଲ, ସବୁ ଭଲ । ତା ପରେ ମୋତେ ହଠାତ୍ ସନ୍ଦେହଯୁକ୍ତ ପ୍ରଶ୍ନଟିଏ ବଢ଼େଇଦେଲେ – ବିନୟ, ସତରେ ଡଲି ସହିତ ତୁମର କଥାବାର୍ତ୍ତା ହୋଇନି ଏଇ ବର୍ଷେ ଦୁଇ ବର୍ଷ ଭିତରେ?

ଡଲି ସହ ମୋର ସମ୍ପର୍କ ଥିଲା ଖୁବ୍ ଅନ୍ତରଙ୍ଗ, ନିର୍ଭେଜାଲ । ବୁଦ୍ଧି, ବିଚାରଶକ୍ତିରେ ସେ କୌଣସିଥିରେ କମ୍ ନଥିଲା । ତଥାପି କାହିଁକି କେଜାଣି ତା'ର ପ୍ରାୟ ସବୁ ନିଷ୍ପତ୍ତିରେ ମୋର ମତ ଲୋଡ଼ୁଥିଲା । ବେଳେବେଳେ ସହାୟତା ବି । ମାଟ୍ରିକ୍ ପାସ୍ ପରେ ସାର୍ ଏକରକମ୍ ନିଷ୍ପତ୍ତି ନେଇଥିଲେ, ତାକୁ ଆଉ ଅଧିକ ପଢ଼େଇବେ ନାହିଁ । କାରଣ ଗାଁ ପାଖରେ କଲେଜ ନଥିଲା କିମ୍ୱା ଘର ପାଖରୁ ସହରକୁ ଯିବା ଆସିବା କରିବା ସହଜ ସାଧ୍ୟ ନଥିଲା । ପ୍ରଥମେ ନଈ, ତା ପରେ ଟ୍ରେକର୍, ଶେଷରେ ବସ୍ । ପଚାଶ କି.ମି.କୁ ପ୍ରାୟ ଲାଗିଯାଏ ଅଢ଼େଇରୁ ତିନି ଘଣ୍ଟା । ଡଲି ଏକରକମ୍ କାନ୍ଦକାନ୍ଦ ହୋଇ ସନ୍ଧ୍ୟାବେଳେ ପହଂଚିଲା ଆମ ଘରେ ଏବଂ ମୋତେ ବୁଝେଇଦେଲା କେବଳ ଗୋଟିଏ ବାଟ – ଯଦି ମୁଁ କହିବି, ସାର୍ ରାଜିହେବେ । ଏବଂ, ତାହା ହିଁ ହେଲା । ତା'ପରେ ହଷ୍ଟେଲ୍‌ରେ ରହି ଡଲି ପଢ଼ିଲା ପାଞ୍ଚବର୍ଷ ଏବଂ ମୁଁ ହୋଇଗଲି ତା'ର ଗାର୍ଡ଼ିଅନ୍ । ସାର୍ କେବଳ ପଦେ କଥା କହିଥିଲେ – ଦେଖ ବିନୟ, ତୁମେ କହୁଛ ବୋଲି ମୁଁ ଡଲିକୁ ଛାଡୁଛି ତୁମ ସହିତ । କାରଣ ତୁମ ଉପରେ ମୋର ଭରସା ଅଛି ।

ସାର୍‌ଙ୍କର ସେ ଅଖଣ୍ଡ ଭରସାକୁ ମୁଁ କେବେ ବି ଭାଙ୍ଗି ନାହିଁ । ପାଞ୍ଚବର୍ଷ ସମୟ କିଛି କମ୍ ନଥିଲା । ବି.ଏ. ପାସ୍ ପର୍ଯ୍ୟନ୍ତ ଆମେ ଗୋଟିଏ କ୍ଲାସ୍‌ରେ ପଢ଼ିଛୁ, ଛୁଟିରେ ଏକ ସଙ୍ଗେ ଘରକୁ ଯାଇଛୁ, ଆସିଛୁ । କଲେଜ ପିକ୍‌ନିକ୍ ଏବଂ ସାଂସ୍କୃତିକ

କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରିଛୁ । କଫି ଷ୍ଟଲ୍‌ରେ, କାଠଯୋଡ଼ି ନଦୀ ବନ୍ଧରେ ନୀରବ ମୁହୂର୍ତ୍ତମାନ କାଟିଛୁ । ପ୍ରଥମେ ପ୍ରଥମେ ସମୟ ଗଡ଼ିଯାଉଥିଲା ଏମିତି ଦିଗହରା ପବନ ଭଳି । କିନ୍ତୁ ବି.ଏ. ଶେଷ ବର୍ଷ ବେଳକୁ ଡଲି କାହିଁକି କେଜାଣି ଚୁପ୍‌ଚାପ୍ ହୋଇଗଲା । ପାଠପଢ଼ାର ଚାପ । ତା ସାଙ୍ଗକୁ ଭବିଷ୍ୟତ ଚିନ୍ତାରେ ମୁଁ ମଧ୍ୟ ଅନୁଭବ କଲି, ମୋ ଭିତରେ କିଛି ଗୋଟାଏ ପରିବର୍ତ୍ତନ ଘଟୁଛି । କେମିତି ଏକ ଅସହାୟବୋଧ ମତେ କବ୍‌ଜା କରିନେଉଛି ।

ପ୍ରାୟ ପ୍ରତି ରବିବାର ସାର୍ ଆମକୁ ଦେଖା କରିବାକୁ ଆସନ୍ତି । ସାଙ୍ଗରେ ଆଣିଥାନ୍ତି ଦୁଇଟି ପୁଡ଼ିଆ, ଚୁଡ଼ାଭଜା ହେଉ କିମ୍ବା ଗଣେଶ ପୂଜାରେ ଭୋଗଡ଼ାଲା ସହିତ ପୂଜା ହୋଇଥିବା କଲମ । ସବୁଥିରୁ ଦୁଇଟି । ଥରେ, ଡଲି ଏକରକମ୍ କଳି କଲା ସାର୍‌ଙ୍କ ସହ – ବିନୟପାଇଁ ପ୍ଲାଟୋ କଲମ ଆଉ ମୋପାଇଁ ନାଁ ନଥିବା କଲମ? ଆର୍ଥିକ ଅବସ୍ଥା ଭଲ ନଥିବାରୁ ଆମ ଘରେ ଅନିୟମିତ ଭାବେ ମୋର ମେସ୍ ଖର୍ଚ୍ଚ ପଠାନ୍ତି । ଅଥଚ, ମୁଁ ଦେଖେ, ନିୟମିତ ଭାବେ କେହି ଜଣେ ମେସ୍ ବିଲ୍ ପୈଠ କରୁଛି । କଲେଜ୍ ଫିସ୍ ମଧ୍ୟ ଅଧିକାଂଶ ଦିନ ଦାଖଲ ହେଉଛି, ମୁଁ ଜାଣିବା ପୂର୍ବରୁ । ତେବେ ମୋର ସନ୍ଦେହ ନଥିଲା, ଏ କାର୍ଯ୍ୟଟି କରୁଥିବା ବ୍ୟକ୍ତି ଜଣକ ସୁରସାର୍‌ଙ୍କ ଛଡ଼ା ଅନ୍ୟ କେହି ହୋଇ ନଥିବେ । ଅବଶ୍ୟ ସେ କେବେ ମଧ୍ୟ ଏ ବିଷୟରେ ସୂଚନା ଦେଇନାହାନ୍ତି । ମୁଁ କେବଳ ଦେଖେ । ଯେଉଁଦିନ ସାର୍ ହଷ୍ଟେଲ ଆସିଥିବେ ତା' ପରଦିନ ମୋର ଫିସ୍ ନିଶ୍ଚୟ ଦାଖଲ ହୋଇଥିବ ।

ଡଲିପାଇଁ ସେ ଯେତିକି ବ୍ୟସ୍ତ ନଥିଲେ, ମୋପାଇଁ ତାଠୁଁ ଅଧିକ ଚିନ୍ତା କରୁଥିଲେ । ଏପରିକି ବି.ଏ. ପରେ ମୁଁ ବି.ଏଡ୍. କରିବା ଏବଂ ଶିକ୍ଷକତା କରିବା ପଛରେ ତାଙ୍କରି ଯୋଜନା ଏବଂ ଉଦ୍ୟମ ହିଁ ପ୍ରଚ୍ଛନ୍ନ ଭାବେ ଥିଲା, ଅଥଚ ଡଲିପାଇଁ ସେ ଥିଲେ ବେଫିକର୍ ।

ମଧ୍ୟାହ୍ନ ଭୋଜନ ପରେ ସାର୍ ବିଶ୍ରାମ କଲେ ପ୍ରାୟ ଦେଢ଼ଘଣ୍ଟା । ବସ୍ ଯାତ୍ରାରେ ଦୀର୍ଘ ସମୟର କ୍ଳାନ୍ତି, ଅନ୍ୟୁନ ଚାରି ପାଞ୍ଚ ଘଣ୍ଟା ବିଶ୍ରାମ ନନେଲେ, ଦେହରୁ ଅବସ ଛାଡ଼େ ନାହିଁ । ମୁଁ ଯେତେବେଳେ ଘରକୁ ଯାଏ କିମ୍ବା ଆସେ, ନିହାତି କମ୍‌ରେ ଛ' ଘଣ୍ଟା ବିଶ୍ରାମ ନିଏ । ହାଇ୍‌ଟେକ୍ ବସ୍‌ର ଆରାମ ଦାୟକ ସିଟ୍‌ରେ ଅର୍ଦ୍ଧଶାୟିତ ଅବସ୍ଥାରେ ଖାଲଖମାପୂର୍ଣ୍ଣ ରାସ୍ତାରେ ଯିବା ଆସିବା ଏକ ନରମ–ଯନ୍ତ୍ରଣା । ଅଥଚ ସାର୍ ମାତ୍ର ଦେଢ଼ ଘଣ୍ଟାରେ ଉଠିପଡ଼ିଲେ । ସେତେବେଳକୁ ରାଜୁ ଏବଂ ପୁଅ ସ୍କୁଲରୁ ଫେରିଲେଣି ।

କଥା ପ୍ରସଙ୍ଗରେ ମୁଁ ପଚାରିଲି – ଡଲି ଯେଉଁ ସ୍କୁଲରେ ଥିଲା, ସେ ସ୍କୁଲକୁ ସରକାରୀ ଅନୁଦାନ ମିଳିଲାଣି? ତିନିବର୍ଷ ପୂରିଗଲାଣି ବୋଧହୁଏ?

ମୋ ପ୍ରଶ୍ନଶୁଣି ସାର୍ ଇସତ୍ ହସିଲେ । ସେତେବେଳକୁ ପୁଅ ଆସି ତାଙ୍କ କୋଳରେ ବସିଗଲାଣି ଏବଂ ରାନୁ ଚା'କପ୍ ଧରି ସାର୍‌ଙ୍କର ଖଟପାଖରେ ଠିଆହୋଇଛି ।

ତୁମେ ବି ବୋକାଙ୍କ ଭଳି ପ୍ରଶ୍ନ କରୁଛ ବିନୟ । ସେ ସ୍କୁଲ ଏ ବର୍ଷ ତ ନୁହେଁ, ଏ ଦଶନ୍ଧିରେ ମଧ୍ୟ ଅନୁଦାନ ପାଇବ ନାହିଁ । ପଞ୍ଚାୟତରେ ତୃତୀୟ ସ୍କୁଲ ପରା ! ତୁମେ କହୁନା, ସେ ସ୍କୁଲ ପାଇବ? ଶ୍ରେଣୀ କକ୍ଷରେ ଗଣିତ ବୁଝାଇବା ଭଳି ସାର୍ ବୁଝାଇଦେଲେ ।

ଅଥଚ, ମୁଁ ନିର୍ବୋଧଙ୍କ ଭଳି ଚାହିଁରହିଲି । ସାର୍ ପୁଅ ମୁଣ୍ଡକୁ ଆଉଁସି ଦେଉ ଦେଉ ଆଶୀର୍ବାଦ ନେଉଥାନ୍ତି – ଭଲ ମଣିଷଟିଏ ହବୁରେ ବାବୁ । ହଁ, ଏ ନିଶ୍ଚୟ ହବ, କଣ ହବୁ ନା ନାହିଁ? ତୁମେ ଦେଖିବ ବିନୟ, ମା'ର ଚେହେରା ଆଣିଥିବା ପିଲାମାନେ ଜୀବନରେ ସୁଖୀ ହୁଅନ୍ତି, ତୁମ ପୁଅ ବି ହବ ।

ସାର୍, ଆପଣ ପରା ତିରିଶ୍ ହଜାର ଟଙ୍କା ଡଲିକୁ ଦେଇଥିଲେ ଖାସ୍ ଏଇଥିପାଇଁ, ଡୋନେସନ୍ ଦେବାକୁ ! ଆପଣ କ'ଣ ଜାଣି ନଥିଲେ ସେତେବେଳେ ! ଏତେ ଗୁଡ଼ାଏ ଟଙ୍କା... ।

ମୋର ଆଗ୍ରହ ଏବଂ ଉତ୍ସୁକତା ବଢ଼ିଯାଉଥାଏ । କାରଣ ଏହା ପୂର୍ବରୁ ବାହାଘରର ଠିକ୍ ପରେ ପରେ ଅନ୍ୟ ଏକ ସ୍କୁଲରେ ଡଲି ରହିବାପାଇଁ ସାର୍ ଗଣି ଦେଇଥିଲେ ପଚିଶ ହଜାର – ମୁଁ ନିଜେ ଦେଖିଛି ।

ମୋର ଅତିଶୟ ଆଗ୍ରହ ପ୍ରତି ସାର୍‌ଙ୍କର ଏତେ ଗୁରୁତ୍ୱ ନଥିଲା । ସତେ ଯେମିତି ଇଏଟା ଏକ ଅତି ମାମୁଲି ଘଟଣା ।

ଏସବୁ ସତ୍ୟବାଦୀର ଚାଲ୍ । ଯଦି ଡଲି ଚାକିରି କରିବା କଥା, ତେବେ ପ୍ରଥମ ସ୍କୁଲଟି କ'ଣ ଖରାପ ଥିଲା ! ସେ ସ୍କୁଲ୍‌ର ଶିକ୍ଷକମାନେ ଏବେ ଦରମା ପାଇଲେ । ତେବେ ଡଲି ଛାଡ଼ିଲା କାହିଁକି ? ଓଲଟି ମୋତେ ପ୍ରଶ୍ନ କଲେ ସାର୍ ।

ହଁ ହଁ ସତକଥା ! ମୁଁ ଉତ୍ତର ଦେଲି । ସତ୍ୟବାଦୀ ଭାଇନା ତ ଏସବୁ ଜାଣିଥିବେ । ବୁଝାବୁଝି କରିଥିବେ । ମୋତେ କହୁଥିଲେ – ଘର ଠାରୁ ଦୂର ହେଲା ସ୍କୁଲ, ସେଥିପାଇଁ ଡଲି ଛାଡ଼ିଦେଲା !

ହା ହା ହା । ଏକ ବିଦ୍ରୂପାତ୍ମକ ହସରେ ସାର୍ ହଲିଗଲେ କିଛି ସମୟ । ତା ପରେ କହିଲେ – ବିନୟ, ବାହାରକୁ ଯାହା ଦିଶେ, ତାହା ସତ ନୁହେଁ । ଆଉ ଯାହା ସତ, ତାହା ଖୁବ୍ କମ୍ ଲୋକ ଜାଣନ୍ତି । ତୁମେ କେବେ, ସତ୍ୟବାଦୀ ଗୁରୁନାମ କୀର୍ତ୍ତନ କରିବାର ଦୃଶ୍ୟ ଦେଖିଛ? କେମିତି ତଲ୍ଲୀନ, ବିହ୍ୱଳ ହୋଇଯାଏ ?

ମୁଁ ଠିକ୍ ଭାବେ ଜାଣିପାରୁ ନଥାଏ ସାର୍ କ'ଣ କହିବାକୁ ଚାହୁଁଛନ୍ତି । ସତ୍ୟବାଦୀ ଭାଇ ଭଳି ଶାନ୍ତ, ଶିଷ୍ଟ, ଶିକ୍ଷିତ, ଧର୍ମ ପରାୟଣ ପିଲାକୁ ସନ୍ଦେହ କରୁଛନ୍ତି ସାର୍!

ସତ୍ୟବାଦୀ ଭାଇ ମୋର ତିନିଟା କ୍ଲାସ୍ ଉପରେ ପଢୁଥିଲେ, ଆମରି ସ୍କୁଲରେ । ନମ୍ର, ଭଦ୍ର, ଶାନ୍ତ ସ୍ୱାଭାବର ଚୁପ୍‌ଚାପ୍ ପିଲା । ପାଠରେ ଏକ ନମ୍ବର । ମୁଁ ଯେତେବେଳେ ବି.ଏ. ପଢୁଥିଲି ସେ ଏମ୍.ଏ. ପାସ୍ କରି ଡାକ ବିଭାଗରେ ଚାକିରି ପାଇଗଲେ । ତାଙ୍କ ସହ ଡଲିପାଇଁ ଯେତେବେଳେ ପ୍ରସ୍ତାବ ପଡ଼ିଲା; କେବଳ ମୁଁ ନୁହେଁ, ଡଲିର ବାପା-ମା, ବନ୍ଧୁବାନ୍ଧବ କାହାରି ମଧ୍ୟ ଆପତ୍ତି ନରହିବା ସ୍ୱାଭାବିକ । ସୁନାମୁଣ୍ଡା ପରି ପିଲାଟାଏ, କୋଉଥିରେ ବାରିବାର ନାହିଁ । କେବଳ, ଡଲି କାହିଁକି କେଜାଣି ଅମଙ୍ଗ ହେଉଥିଲା ପ୍ରଥମେ । ଥରେ ଆମ ଘରକୁ ଆସି ଅତି ଉଦାସ ଭାବରେ ମୋତେ ପଚାରିଲା – ବିନୟ, ତୁ କ'ଣ ଏ ପ୍ରସ୍ତାବରେ ରାଜି? ତୋ'ର କିଛି କହିବାର ନାହିଁ?

ମୁଁ ବି.ଏଡ୍. କରୁଥାଏ ସେତେବେଳେ । ଡଲିର ପ୍ରଶ୍ନ ଅତି ସହଜ ମନେହେଉଥିଲେ ବି, ମୋତେ ଲାଗିଲା, ତା'ର ଉତ୍ତର ଏତେ ସହଜ ନୁହେଁ । ମୁହଁ ପୋତି ଖଟର ଗୋଟିଏ ପଟେ ଡଲି ଏବଂ ଆର ପଟେ ଉପାୟ ଶୂନ୍ୟ ମୁଁ ।

ସତ୍ୟବାଦୀ ଭାଇଙ୍କ ଭଳି ରୂପ-ଗୁଣ ଓ ଚାକିରି ଥିବା ପିଲା ଆମ ଅଞ୍ଚଳରେ କାହାନ୍ତି? ମୁଁ ଉତ୍ତର ଦେଲି ।

ନିର୍ବାକ୍ ହୋଇ ସେ ଚାହିଁଲା ମୋ ମୁହଁକୁ । ମୋ ଉତ୍ତର ବୋଧହୁଏ ସନ୍ତୁଷ୍ଟ କରିପାରିଲା ନାହିଁ ତାକୁ । ବେଶ୍ କିଛି ସମୟ ଠିକ୍ ସେହି ମୁଦ୍ରାରେ ସେ ଚାହିଁଲା । ଆଶା କରୁଥିଲା କିଛି ଆକସ୍ମିକ, ଅଣପାରମ୍ପରିକ ଉତ୍ତର ।

କିନ୍ତୁ, ମୁଁ ଚୁପ୍ ବସିବାର ଦେଖି ପଚାରିଲା – ତୁ ଦେଖିଛୁ? ଜାଣିଛୁ ତାଙ୍କ ବିଷୟରେ? ନିଶାପାଣି ଅଭ୍ୟାସ ଅଛି ନା ତୋ ଭଳି ବାବାଜୀ ?

ନିଶା-ପାଣି ? ମୁଁ ଚମକି ପଡ଼ିଲି । ବୁଝିଲୁ, ତାଙ୍କ ଘରେ ପିଆଜ-ରସୁଣ ପଶେ ନାହିଁ । ସମସ୍ତେ ଶ୍ରୀଗୁରୁଙ୍କ ଆଶ୍ରିତ । ମୁଁ ନିଜେ ଦେଖିଛି, ଏ ଅଞ୍ଚଳରେ ଯେଉଁଠି ସତ୍‌ସଙ୍ଗ ହୁଏ, ସତ୍ୟବାଦୀ ଭାଇ ଥାନ୍ତି ସବା ଆଗଧାଡ଼ିରେ । ଏମିତି ସୁନ୍ଦର ଗୁରୁବନ୍ଦନା ସେ ଗା'ନ୍ତି, ତୁ ନିଜେ ନ ଶୁଣିଲେ, ନ ଦେଖିଲେ ବିଶ୍ୱାସ କରିପାରିବୁ ନାହିଁ ।

ବାହାଘରରେ ମୋତେ କନ୍ୟାର ଭାଇ ଭୂମିକା ତୁଲେଇବାକୁ ପଡ଼ିଲା । ସାର୍‌ଙ୍କର ଡଲି ଛଡ଼ା ଆଉ ସନ୍ତାନ ନଥିଲେ । ତେଣୁ ତା ବାହାଘରରେ, ଜୀବନର ସଂଚିତ ସମସ୍ତ ଅର୍ଥ, ସମ୍ପଦ, ଝିଅ-ଜ୍ୱାଇଁଙ୍କୁ ଉପହାର ସ୍ୱରୂପ ସାର୍ ବିନା ଦ୍ୱିଧାରେ ପ୍ରଦାନ କଲେ । ଖୁନ୍ଦା ଖୁନ୍ଦି ହୋଇ ଗୋଟାଏ ବଡ଼ ଟ୍ରକ୍‌ରେ, ଚତୁର୍ଥୀ ଭାର ଧରି

ମୋତେ ଯିବାକୁ ପଡ଼ିଥିଲା । ଘର ପୂରିଗଲା ସତ, ସବୁ ଜିନିଷ ରଖିବାପାଇଁ ଆଉ ଜାଗା ନଥିଲା । ପୁରୁଣାକାଳିଆ ମାଟିଘର – ଖଞ୍ଜା । ଲଂଘାରେ ଗଦାହୋଇ ରହିଲା ପ୍ରାୟ ଅଧାଅଧି ଜିନିଷ – ଆଲମିରା ଠାରୁ ଆରମ୍ଭ କରି ଶିଳ, ଚକି ଓ ମିଠେଇ ହାଣ୍ଡି ।

ବଡ଼ ଭୁଲଟିଏ ହୋଇଗଲା ବିନୟ । ସାର୍ ଦୀର୍ଘଶ୍ୱାସ ନେଲେ । ତା'ପରେ ଉପରକୁ ଚାହିଁ କହିଲେ – ଈଶ୍ୱରଙ୍କର ଯାହା ବରାଦ । ମୁଁ ବରଂ ନିଃସ୍ୱ ହୋଇଯାଏ, ବରବାଦ ହୋଇଯାଏ, ଡଲି ଖୁସିରେ ଥାଉ । ଆଖି କଣରୁ ଉଙ୍କି ମାରୁଥିବା ଲୁହକୁ ଅତି ସତର୍କତାରେ ପୋଛି ଦେଇ କଣ ଗୋଟାଏ କହିବେ କହିବେ ହୋଇ ମୋତେ ଚାହିଁଲେ ।

ବାହାଘର ପରେ ସବୁକଥା ଜଣାପଡ଼ିଲା । ସତ୍ୟବାଦୀ ଭାଇନାଙ୍କର ଅନେକ ଭଲ ଗୁଣ ହେଲେ ବି ଗୋଟିଏ ବଡ଼ ଦୁର୍ଗୁଣ ଥିଲା । ତାହା ହେଲା ଧନ ପ୍ରତି ଆସକ୍ତି । ନିଜର ଚାକିରି, ଘରେ ଚାଷଜମି ଏସବୁ ଥିଲେ ବି ଶ୍ୱଶୁର ଘର ଧନରେ ଅମାପ ଲୋଭ । ଏଥିପାଇଁ ସେ ସିଧାସଳଖ କିଛି କହନ୍ତି ନାହିଁ । ଏମିତି ପରିସ୍ଥିତି ସୃଷ୍ଟି କରିଦେବେ ଯେ, ମାତ୍ର ଗୋଟିଏ ବାଟ ଦିଶିବ ସମସ୍ୟାର ସମାଧାନପାଇଁ ତାହା ପୁଣି ତାଙ୍କ ଶ୍ୱଶୁରଙ୍କଦ୍ୱାରା ।

ବାହାଘର ପରେ ପରେ, ଭାଇନା ପ୍ରସ୍ତାବ ଦେଲେ ଡଲିକୁ – କଟକରୁ ସବୁଦିନ ଘରକୁ ଯିବାଆସିବା ବାଧୁଛି । ତେଣୁ ଭାବିଛି କଟକରେ ଭଡ଼ାଘର ଦେଖି ରହିଯିବା । ଭଲ ଘରଟିଏ ବି ଦେଖିଛି । ବଡ଼ ଘର, ଲାଟ୍ରିନ୍ ବାଥ ଆଟାଚଡ୍ । କିନ୍ତୁ ଗୋଟିଏ ଅସୁବିଧା ଅଛି । ସେ ଘରମାଲିକ ବାପା (ଶ୍ୱଶୁର)ଙ୍କର ସାଙ୍ଗ । ଯଦି ବାପା ଥରେ କହିଦିଅନ୍ତେ, ସେ ଲୋକ ରାଜି ହୋଇଯାନ୍ତା ।

ଏଥିରେ ପୁଣି ଅସୁବିଧା କ'ଣ? ସେ ଲୋକ ଅରାଜି ହେବାର କାରଣ? ଏ ପ୍ରଶ୍ନ ମୋ ମନକୁ ଆସିଥିଲା । କିନ୍ତୁ ଡଲି ପରେ ମୋତେ ମନ ଦୁଃଖରେ ବୁଝେଇଥିଲା – ଘର ଭଡ଼ା କିଏ ଦବ? ଯେହେତୁ ଘରମାଲିକ ବାପାଙ୍କ ଚିହ୍ନା, ବାପା ଦେଲେ । 'ବିନୟ! ତୁମ ପାଖରେ ମୋର କିଛି ଲୁଚାଇବାର ନାହିଁ ।' ସାର୍ ଚେୟାର୍‌ରେ ଆଉଜି ବସିଲେ ଏବଂ ପାଣି ଗ୍ଲାସ୍‌ପାଇଁ ରାଜୁକୁ ବରାଦକଲେ । 'ଖାସ୍ ତୁମକୁ କହିବାପାଇଁ ମୁଁ ଏତେବାଟ ଆସିଛି । ମୁଁ ଜାଣିଛି ମୋର ଆଉ ବେଶି ଦିନ ନାହିଁ । ଖାସ୍ ଡଲି ପାଇଁ... । ତାଙ୍କ କଣ୍ଠ ରୁଦ୍ଧ ହୋଇଗଲା । ସେ ଆଉ କିଛି କହିପାରିଲେ ନାହିଁ ।

ସାର୍, ସବୁ ଠିକ୍ ହୋଇଯିବ । ଆପଣ ଏତେ ବ୍ୟସ୍ତ କାହିଁକି ହେଉଛନ୍ତି ! ମୁଁ ସାନ୍ତ୍ୱନାଦେଲି ।

ସାର୍ ହସିଲେ । ଅଭିଜ୍ଞତା ଓ ଅନୁଭବରେ ପାକଳ ହୋଇଥିବା ତାଙ୍କର ଚନ୍ଦାମୁଣ୍ଡଟିକୁ ସେ ହସିହସି ତଳ ଉପର କଲେ ବେଶ୍ କିଛି ସମୟ । ହସରୁ ଜଣାପଡୁଥିଲା, ମୋର ସାନ୍ତ୍ୱନା, ପ୍ରବୋଧନା ସତେ ଯେମିତି ନଈ ସୁଅରେ ବାଲିବସ୍ତା ।

ତୁମେ ଜାଣିଛ ବିନୟ, ଗାଁରେ ସତ୍ୟବାଦୀ ଅଠରଶହ ବର୍ଗଫୁଟ୍‌ର ଘରଟିଏ କରିଛନ୍ତି । ଘର ନୁହେଁ ତ ପ୍ରାସାଦଟିଏ । ଅତି ସୁନ୍ଦର । ଦେଖିଲା ଭଳି । ତା'ପରେ ସାର୍ ଚୁପ୍ ରହିଲେ ।

ଖୁବ୍ ଭଲ ହେଲା । ଘରଟିଏ କରିବା ଯେ କି କଷ୍ଟ ମୁଁ ଅନୁଭବ କରୁଛି । ଗାଁରେ ମୁଁ ଆରମ୍ଭ କରିଥିଲି ଆଠ ଶ'ବର୍ଗଫୁଟ୍‌ର ଘର । ଝର୍କା ପତ୍ତନ ପର୍ଯ୍ୟନ୍ତ ଯାଇଛି, ମୋର ସମସ୍ତ ସଂଚୟ ସରିଗଲା । ଭାବୁଛି ଆରବର୍ଷକୁ ଜି.ପି.ଏଫ୍.ରୁ ଉଠେଇ ଛାତ ପର୍ଯ୍ୟନ୍ତ ନେଇଯିବି ।

ତୁମ ଯୋଜନା ଆଉ ତାଙ୍କ ଯୋଜନା ଭିତରେ ଅନେକ ପ୍ରଭେଦ । ତୁମେ ସତ୍ୟବାଦୀ ପରି ଏତେ ସୂକ୍ଷ୍ମବୁଦ୍ଧି ସଂପନ୍ନ ନୁହଁ । ତା ଛଡ଼ା, ତୁମେ ତାଙ୍କ ସ୍ତରକୁ ଖସିଯାଇପାରିବ ନାହିଁ, ସେ ବିଶ୍ୱାସ ମୋର ଅଛି । ଡଲି ସ୍କୁଲରେ ରହିବ ବୋଲି ଦୁଇ ଦଫାରେ ଯେଉଁ ପଚାଶ ହଜାର ଟଙ୍କା ନେଲା, ସେ କୁଆଡ଼େ ଗଲା? ମୋ ଆଡ଼କୁ ପ୍ରଶ୍ନଟି ଆଡ଼େଇ ଦେଇ ବାଥ୍‌ରୁମ୍‌କୁ ଚାଲିଗଲେ ସାର୍ ।

ଅନେକ ପ୍ରଶ୍ନର ପ୍ରହେଳି ମୋ ମନରେ ସୃଷ୍ଟି କରିଦେଲେ ସାର୍ । ମୁଁ କିଛି କିଛି ଜାଣିଥିଲି । ଡଲି କେବଳ ସୂଚନା ଦେଇଥିଲା । ପ୍ରତି ଚାରିମାସରେ ବାପଘରକୁ ଆସିବା ଯେ ପିତା-ପୁତ୍ରୀଙ୍କର ସ୍ନେହ ସମ୍ପର୍କର କାରଣ ନଥିଲା, ତାହା ସେ ପରୋକ୍ଷରେ ଇଙ୍ଗିତ କରିଥିଲା ।

ସାର୍, ଡଲିକୁ ନିଜ ଜୀବନ ଠାରୁ ବି ଅଧିକ ଭଲ ପାଉଥିଲେ । ଡଲି ମନରେ ଦୁଃଖ ଏବଂ ଆଖିରେ ଲୁହ ସେ କଦାପି ସହ୍ୟ କରିପାରିବେ ନାହିଁ । ଏକଥା କିଏ ଜାଣୁ ନ ଜାଣୁ, ସତ୍ୟବାଦୀ ଭାଇନା ଠିକ୍ ଭାବେ ଅନୁଭବ କରିଥିଲେ । ତେଣୁ, କିଛି ମୋଟା ଅଙ୍କ ଆବଶ୍ୟକ ପଡ଼ିଲେ ସତ୍ୟବାଦୀ ଭାଇନା ଯୋର କରି ଡଲିକୁ ବାପ ଘରକୁ ପଠାଇ ଦିଅନ୍ତି - ଅନେକ ଦିନ ହେଲାଣି କେମିତି ଅଛନ୍ତି ବାପା-ବୋଉ ଯାଅ ଦେଖିଆସ । ସ୍କୁଟର୍ ବଦଳାଯାଇ ବାଇକ୍ କିଣାଯିବ - ଡଲି ଆସିଲା ବାପାଙ୍କ ଭଲମନ୍ଦ ବୁଝିବାକୁ । ନଣନ୍ଦର ବାହାଘର ଯୌତୁକପାଇଁ ଅଳ୍ପ କିଛି ହଜାର ସର୍ଟ୍ ପଡୁଛି - ଡଲି ଚାଲିଲା ବାଗଲପୁର୍, ବାପାଙ୍କ ହାନିଲାଭ ବୁଝିବାକୁ । ଅବଶ୍ୟ, ସତ୍ୟବାଦୀ ଭାଇନା ଶ୍ୱଶୁରଙ୍କୁ ଖୁବ୍ ମାନନ୍ତି, ତାଙ୍କର ସାମ୍ନାରେ କଥା ହୁଅନ୍ତି ନାହିଁ, ଡଲିକୁ ସ୍କୁଟର୍‌ରେ ଆଣି ବାଗଲପୁରରେ ଛାଡ଼ି ଦେଇଯା'ନ୍ତି । କ୍ୱାଇଁ ଖାତିର ସେ ରଖନ୍ତି । ମାତ୍ର ଘଣ୍ଟାଏ ରହି ନିଜ କାର୍ଯ୍ୟରେ ବାହୁଡ଼ିଯାନ୍ତି ।

'ସ୍କୁଲ କଥା ସମ୍ପୂର୍ଣ୍ଣ ମିଛ।' ବାଥ୍‌ରୁମ୍‌ରୁ ଫେରି ଯାଇ ଅସମ୍ପୂର୍ଣ୍ଣ ବାକ୍ୟକୁ ଶେଷକଲେ। 'ମୁଁ ରିଟାୟାର୍ଡ୍ କଲାବେଳେ ଯେଉଁ ଗ୍ରାଚୁଇଟି, ଇନ୍‌ସୁରାନ୍ସ ଟଙ୍କା ପାଇଥିଲି, ସେ ସବୁପରା ସତ୍ୟବାଦୀ, ତଳି ମାଧ୍ୟମରେ ମାତ୍ର ବର୍ଷେପାଇଁ ଧାର ନେଇଛନ୍ତି।

– କ'ଣ ଏହିବର୍ଷ? ମୁଁ ପ୍ରଶ୍ନ କଲି।

– ବିନୟ, ତୁମର ସ୍ମରଣ ଶକ୍ତି କ୍ଷୀଣ ହେଲାଣି ବୋଧହୁଏ। ମୁଁ ରିଟାୟାର୍ଡ଼ କରିବାର କେତେବର୍ଷ ହେଲାଣି? ସାତ ବର୍ଷ ତ? କିଛି ସମୟ ଆଙ୍ଗୁଠିରେ ହିସାବ କରି କଥା ଯୋଡ଼ିଲେ।

ଅବଶ୍ୟ ମୋର କିଛି ଆପତ୍ତି ନଥିଲା। ରଖିଥିଲେ ତା'ରିପାଇଁ ରଖିଥାନ୍ତି। ସେ ଯଦି ମନକଷ୍ଟ କରି ମୋ ପାଖରେ ମୁହଁ ଶୁଖେଇ ବସିଲା, ବ୍ୟାଙ୍କରେ ଟଙ୍କା ରହି କ'ଣ ହେବ? ଟଙ୍କା କ'ଣ କଥା କହିବ? ବାପା ଡାକିବ?

ସାର୍‌ଙ୍କର କହିବା ଅନୁସାରେ, କେବଳ ଟଙ୍କା ନୁହେଁ; ମାଉସୀଙ୍କର ଗହଣା ଗାଣ୍ଠି, ଦୁଇ ଏକର ଜମି, ବାଡ଼ିରେ ଲାଗିଥିବା ଚାରୋଟି ଶାଗୁଆନ ଗଛ, ସବୁ କିଛି ପଶିଛି ପ୍ରାସାଦ ସମ, 'ଶ୍ରୀଗୁରୁ ନିବାସ'ରେ; ଯେଉଁଠି ପ୍ରତି ମାସରେ ଏବେ ସତ୍‌ସଙ୍ଗ ହେଉଛି ଏବଂ ଗୁରୁକୀର୍ତ୍ତନରେ ତଲ୍ଲୀନ ହୋଇ ସତ୍ୟବାଦୀ ଭୁଲି ଯାଉଛନ୍ତି ସଂସାରମାୟା।

ତା'ପର ଦିନ ସକାଳ ଜଳଖିଆ ଖାଇବା ଅବସରରେ ମୁଁ ପଚାରିଲି– ସାର୍, ଆଜି ମଧ୍ୟାହ୍ନରେ ଆମିଷ ଆପଣଙ୍କର ଚଳିବ? ଏଠି ଭଲ ଖାସି ମାଂସ ମିଳେ। କିନ୍ତୁ, ଯାହା ହେଲେବି, ମାଉସୀ ଯେମିତି ମଉରାଳୀ ମାଛର ଚୁଡ଼ଚୁଡ଼ା କରନ୍ତି, ତାହା ଯିଏ ଚାଖିଛି, ସାରା ଜୀବନ ଭୁଲିପାରିବ ନାହିଁ! ବୁଝିଲ ରାନୁ, ତୁମେ ସିନା ଭଲ ଚିକେନ୍ ମଟନ ରାନ୍ଧିପାର, କିନ୍ତୁ ମାଛ ତରକାରୀ ମାଉସୀଙ୍କ ପରି କରିପାରିଲ ନାହିଁ। ଏଥର ଛୁଟିରେ ଗଲେ ମାଉସୀଙ୍କ ପାଖକୁ ଯାଇ ସୋରିଷ ବାଟଣରେ କେମିତି ମାଛ ରନ୍ଧାହୁଏ ଶିଖିଆସିବ।

ମୋ କଥା ଶେଷ ହେଲାବେଳକୁ ସାର୍ ଜଳଖିଆ ଥାଳିରେ ହାତରଖି କେଉଁ ଭାବନାରେ ବୁଡ଼ିଗଲେ ଯେ, ଜଳଖିଆ ଖାଇବାକୁ ଭୁଲିଗଲେ। ଆଶ୍ଚର୍ଯ୍ୟ! ତାଙ୍କ ଆଖିରୁ ଥପ ଥପ ଲୁହ ବହିଗଲା ବରକୋଳିଆ ବର୍ଷାଟୋପା। ମୁଁ ତ ଡରିଗଲି ଏକରକମ। ରାନୁ ମଧ ଚୁପ୍ ଚାପ ଠିଆହୋଇ ସାର୍‌ଙ୍କର ଏ ପ୍ରକାର ପରିବର୍ତ୍ତନକୁ ଲକ୍ଷ୍ୟକରି ମୋ ଉଦ୍ଦେଶ୍ୟରେ ବିରକ୍ତିସୂଚକ ଚାହାଣିଟିଏ ଫିଙ୍ଗଲେ।

ସେ ସୁଯୋଗ ତୁମକୁ ଆଉ ମିଳିବନି ବିନୟ। ତଳକୁ ମୁହଁ ପୋତି ସାର୍ ସେହି ଅବସ୍ଥାରେ ପ୍ରତିକ୍ରିୟା ପ୍ରକାଶକଲେ।

ରାତୁ ଏବଂ ମୁଁ ଆତଙ୍କିତ, ଅସହାୟ ଏବଂ ଦୟନୀୟ ଦିଶିଲୁ । ମୋର ସାହସ କୁଳେଇଲା ନାହିଁ ପଚାରିବାକୁ କୌଣସି ପ୍ରଶ୍ନ ।

'ସବୁ କିଛି ଶେଷ ହୋଇଯିବା ଉପରେ ।' ଗମ୍ଭୀର ତଥା ଖଣ୍ଡିତ ସ୍ୱରରେ ଧୀରେ ଧୀରେ ସାର୍ ମୁହଁ ଉଠାଇଲେ । 'ଆଉ ଦିନ କେତେଟା, ମାଉସୀର ଡାଇଲେସିସ୍ କରିବାକୁ ପଡୁଛି । ପ୍ରତି ସାତ ଦିନରେ ଖର୍ଚ୍ଚ ହେଉଛି ପାଞ୍ଚ ହଜାର ।

ହାଇ ବି.ପି. ସାଙ୍ଗକୁ ଡାଇବେଟିସ୍ । କେବେଠୁଁ? ମୁଁ ଏକ ପ୍ରକାର ଚିତ୍କାର କଲି । ଅବିଶ୍ୱାସ ଏବଂ ଆତଙ୍କରେ ହାଉଳି ଖାଇଗଲି । ମାଉସୀଙ୍କ ପରି ଦେବୀ ପ୍ରତିମାଙ୍କୁ ପୁଣି ଏ ରୋଗ? କୋଉଠି ଟ୍ରିଟ୍‌ମେଣ୍ଟ ହେଉଛନ୍ତି? ଡଲି ଆସି ଦେଖା ଶୁଣାକରୁଛି ତ? କ'ଣ କେମିତି ଘଟିଗଲା ଏସବୁ? ମୋର, ଆହୁରି ଅନେକ ପ୍ରଶ୍ନ ଉଙ୍କି ମାରୁଥିଲା ମନରେ । କିନ୍ତୁ ସାର୍‌ଙ୍କ ମୁହଁକୁ ଚାହିଁବାରୁ ଭୁଲିଗଲି ସବୁ । ସାରଙ୍କ ମୁହଁ କାନ୍ଦ କାନ୍ଦ ।

ଡଲି ପାଖରେ ତ ଥିଲୁ । ଦୁଇ ମାସ ରହିଛୁ । କିନ୍ତୁ, ତାକୁ ଆଉ ହଇରାଣ କରିବାକୁ ଚାହିଁଲୁ ନାହିଁ! ସତ୍ୟବାଦୀଙ୍କର ଡଲି ପ୍ରତି ଚିଡ଼୍‌ଚିଡ଼ା ବ୍ୟବହାର, ପ୍ରତିକଥାରେ 'କେତେ ଟଙ୍କା ଖର୍ଚ୍ଚ ହୁଏ ତୁମେ ଜାଣ?', ଅଧିକ ଲୋକ ରହିଲେ ପିଲାମାନେ ପରୀକ୍ଷାରେ ଖରାପ କରିବେ ନାହିଁ ତ କ'ଣ ବେଷ୍ଟଟେନ୍ତ ପାଇବେ? ଏମିତି ଅନେକ କଥା । କହିହେବନି । ଗାଁକୁ ଫେରିଆସିଲୁ । ଗାଁରେ ସାନଭାଇ ପାଖରେ ଅଛୁ । ମୋର ତ ନିଜର ବୋଲି ଆଉ କିଛି ସମ୍ପତ୍ତି ନଥିଲା, ତୁମେ ଜାଣିଛ । ପେନ୍‌ସନ୍ ଟଙ୍କାରୁ ମଧ ଅଧାଅଧିଯାଏ ଲୋନ୍ ସୁଝିବାରେ । ଡଲିର ଘରେ ଯେତେ ମାର୍ବଲ ଲାଗିଲା ସେ ସବୁପରା ମୋ ମାର୍ଫତରେ ସତ୍ୟବାଦୀ ନେଇଥିଲେ ମୋର ଗୋଟିଏ ଛାତ୍ର ଦୋକାନରୁ । ଦେଢ଼ଲକ୍ଷ ଟଙ୍କା କୋଉଠୁ ଆଣିଥାନ୍ତି? ତେଣୁ ଘରକୁ ପେନ୍‌ସନ୍ ଟଙ୍କା ନିଏ ଅଢ଼େଇ ହଜାର । ଏଣେ ମାଉସୀର ସାତ ଦିନକୁ ଖର୍ଚ୍ଚ ପାଞ୍ଚ ହଜାର । ସତ୍ୟବାଦୀ ଭଲକଥାଟି କହୁଥିଲେ – ଡି.ପି.ଏସ୍.ରେ ତାଙ୍କର ପୁଅ–ଝିଅଙ୍କର ପାଠପଢ଼ା, ଗାଡ଼ିଲୋନ୍, ଘରଲୋନ୍, ଭୁବନେଶ୍ୱର ଜମିର କିସ୍ତି ସୁଝିବା ପରେ ତାଙ୍କର ଆଉ ସାହାଯ୍ୟ କରିବାକୁ କ୍ଷମତା ନାହିଁ । କେବଳ ଗୋଟିଏ ମାତ୍ର ବାଟ ଶ୍ରୀଗୁରୁଙ୍କର ଚରଣାଶ୍ରୀତ ହେବା ।

ସାର୍ ଅଧିକ କିଛି କହିପାରିଲେ ନାହିଁ, ଥର ଥର ହୋଇ ବସିପଡ଼ିଲେ ।

ମୁଣ୍ଡ ଭିତରଟା ଏକ ରକମ ଚକ୍ରାକାରରେ ଘୁରୁଥିଲା । ମୁଁ ଜାଣିପାରୁ ନଥାଏ, ତୁଣ୍ଡରେ ଗୁରୁନାମ କୀର୍ତ୍ତନ କରୁଥିବା ଲୋକଟି ପ୍ରକୃତରେ କି ପ୍ରକାର ଧାତୁରେ ତିଆରି ।

.........................................

ଠିକ୍ ସେହିଦିନ ହିଁ ମୁଁ ନିଷ୍ପତ୍ତି ନେଲି, ଜି.ପି.ଏଫ୍.ରୁ ଟଙ୍କା କାଢ଼ିବାକୁ ପଡ଼ିବ, ଏବେ, ଖୁବ୍‌ଶୀଘ୍ର । ଘରକାମ ବରଂ ପରେ ହେବ ।

❑

(ଟୀରତରଙ୍ଗ - ପୂଜା ସଂଖ୍ୟା ୨୦୦୮)

# ସୂଅ

ସନ୍ଧ୍ୟାବେଳୁ ନବଘନ ଦୋକାନ ସାମ୍ନାରେ ଏପଟ ସେପଟ ହେଉଛି । ବସ୍, ଟ୍ରେକର୍ କିମ୍ବା ଟେମ୍ପୁ ଶବ୍ଦ ଶୁଣିଲେ ରାସ୍ତା ଉପରକୁ ଆସି ଗାଡ଼ି ରହଣି ସ୍ଥାନକୁ ବେକ ଟେକି ଚାହୁଁଛି । ସେଥିରୁ ଓହ୍ଲାଉଥିବା ପ୍ରତ୍ୟେକ ଯାତ୍ରୀଙ୍କୁ ନିରିଖେଇ ଦେଖୁଛି, ଏବଂ ନିରାଶ ହୋଇ ଦୀର୍ଘ ନିଃଶ୍ୱାସ ଛାଡୁଛି । ସମୟ ଯେତିକି ଯେତିକି ଗଡ଼ିଯାଉଛି, ଭାରାକ୍ରାନ୍ତ ମନ ସେତିକି ଓଜନିଆ ଲାଗୁଛି । ମନକୁ ପାପ ଛୁଉଁଚି । ଅଥୟ, ଅସ୍ଥିର ହୋଇ ସେ ଆଉ ଦୋକାନକୁ ଯାଉନାହିଁ । ଆକୁଳ ହୋଇ ଲାଇଟ୍ ପକେଇ ଆସୁଥିବା ଯାନକୁ ଅନେଇବାକୁ ଚେଷ୍ଟାକରୁଛି । କଦାଚିତ୍ ଅଟକୁଥିବା ଗାଡ଼ିବାଲାଙ୍କୁ ପଚାରୁଛି – କଟକରୁ ଶେଷ ବସ୍‌ଟି ପଛରେ ଆସୁଛି କି?

ଝିଅ କାଲିଠାରୁ କଟକ ଗଲାଣି । ଯୋଜନା ଅନୁସାରେ କାମ ସାରି ସାଂଗେସାଂଗେ ଫେରିଆସିବା କଥା । ଯଦି କିଛି ଅସୁବିଧା ହେଲା ଆଜି ସକାଳୁ, ନଚେତ ଉପରବେଳା ସୁଦ୍ଧା ପହଞ୍ଚିଯିବା କଥା । ଏବେ ଘଡି ଆଠଟା ବାଜିବ ।

ବଢ଼ିଲା ଝିଅର ବାପ କେବେହେଲେ ଏ ପରିସ୍ଥିତିରେ ନିଧଡ଼କ୍ ବସିପାରିବ ନାହିଁ । ଆଜିକାଲି ପରିସ୍ଥିତି ଯାହା, କେତେବେଳେ କ'ଣ ଘଟିବ କିଏ କହିବ ? ଛକରୁ ଦୁଇ ତିନିଜଣ ଚିହ୍ନାଲୋକ ନବଘନର ବ୍ୟସ୍ତତା ଦେଖି ପଚାରି ସାରିଲେଣି – ରୁବି କ'ଣ କାଲିଠୁଁ ଫେରିନି? ତାଙ୍କର ପଚାରିବାର ଶୈଳୀ ହିଁ, କଣ୍ଟା ଫୋଡ଼ିଲା ପରି ଲାଗୁଛି ନବଘନକୁ । କାରଣ, ଏ ପର୍ଯ୍ୟନ୍ତ ରୁବି ବିଷୟରେ ଛକବେଷ୍ଟିତ ଜନତା ଯାହାସବୁ ଆଲୋଚନା କରନ୍ତି, ମନ୍ତବ୍ୟ ଦିଅନ୍ତି, ବକ୍ରୋକ୍ତି କରନ୍ତି, ତାହାର ନିର୍ଯ୍ୟାସ – ବ୍ୟବସାୟରେ ପଶିଥିବା ଝିଅର ଚରିତ୍ର ସନ୍ଦେହମୁକ୍ତ ନୁହେଁ ।

ରୁବି, ବାପାକୁ ଦୁଇ ବର୍ଷ ହେଲା ବ୍ୟବସାୟରେ ସାହାଯ୍ୟ କରୁଛି । ପରିତ୍ୟକ୍ତ ଗାଡ଼ିଟିଏ ପରି ନବଘନର ଦେଳରାତି ଦୋକାନ ସମ୍ପୂର୍ଣ୍ଣ ଅଚଳ ହୋଇଯାଇଥିଲା । ବି.କମ୍. ପାସ୍ ପରେ ସେ ଏଥିରେ ମନ ଦେଇଛି । ତେଜରାତି ସହିତ ଗୋଟିଏ କଡ଼କୁ ରେଡ଼ିମେଡ୍ ଡ୍ରେସ୍ ବିକିବା ଆରମ୍ଭ କରିଛି । ଏଇଥିପାଇଁ ତାକୁ ମଝିରେ ମଝିରେ କଟକ ଯିବାକୁ ପଡ଼େ ।

'ଗୁବି ବୋଧହୁଏ ଆଜି ଆଉ ଆସିବନି । ସେ କଣ ଛୋଟ ପିଲା ହେଇଛି ତୁ ଜଗିଛୁ! ତା'ର ଆସିବା ବେଳ ହେଲେ ସେ ଆସିବନି! ତୁ ଘରକୁ ଯା'ରେ ନବା ।' ଅନ୍ୟଜଣେ ଶୁଭେଚ୍ଛୁ ଘରକୁ ଫେରିବା ବେଳେ ମନ୍ତବ୍ୟ ଦେଲେ ।

ଗୁବିର ଘରବାହୁଡ଼ା ଯେତିକି ବିଳମ୍ବ ଘଟୁଛି ଛକ ଉପରେ ଆଲୋଚନା ସେତିକି ରସାଳ ହେଉଛି । ବୟସ୍କମାନେ ମୁଣ୍ଡରେ ହାତବାଡ଼େଇ ନବଘନକୁ ହିଁ ଦାୟୀ କରୁଛନ୍ତି । 'ଶେଷରେ ନବା ଭଳି ସଚ୍ଚୋଟ, ନୀତିବାନ ବ୍ୟବସାୟୀ ଏ କାମ କଲା ! ଯାହା ଘଟି ନଥିଲା ଏ ଅଞ୍ଚଳରେ, ଶୁଣା ନଥିଲା କି ଜଣା ନଥିଲା ଏ ଗାନ୍ଧୀଛକରେ, ନବା ସେମିତି କାମ କଲା ! କିହୋ, ଏଇଟା ବମ୍ବେ ନା ଦିଲ୍ଲୀ? ଏଇଟା ପରା ଆମ ଗାଁ । ଗାଁର ସଂସ୍କୃତି ପରମ୍ପରାକୁ ଆମେ କ'ଣ ଭୁଲିଯିବା ? ଗାଁରେ ଝିଅବୋହୂମାନଙ୍କର ଚଳଣି, ବ୍ୟବହାର ମାର୍ଜିତ ହେବା ଦରକାର ନା ନାହିଁ ?' ସଂସ୍କୃତ ପଣ୍ଡିତ ମହାଶୟ କ୍ଷୋଭ ପ୍ରକାଶକଲେ । ତା'ଦୋକାନରେ ଅଧିକ ଭିଡ଼ ଆଜିକାଲି । ପଣ୍ଡିତ ମହାଶୟଙ୍କର ବକ୍ତବ୍ୟ ପ୍ରତି ସନ୍ଧ୍ୟାରେ କିଛି କିଛି ଲୋକ ଶୁଣନ୍ତି । ମୁଖ୍ୟତଃ ରାଜନୀତିଭିତ୍ତିକ ଆଲୋଚନା ହୁଏ । କିନ୍ତୁ ଏଇ ସପ୍ତାହେ ହେଲା, ନୀତି, ଆଦର୍ଶ, ପରମ୍ପରା, ଧର୍ମ, ସଂସ୍କୃତି ଏବଂ ତା ସହ ନବାଝିଅ ଗୁବି ଅନ୍ତର୍ଦ୍ଧାନର ରହସ୍ୟ କିଭଳି ଜଡ଼ିତ ତାହା ଶ୍ଳୋକ, ରୁଢ଼ି, ଛାନ୍ଦ ମାଧ୍ୟମରେ ପଣ୍ଡିତେ ବ୍ୟାଖ୍ୟା କରୁଛନ୍ତି ।

'ନବା କ'ଣ ଭାବୁଛି ନିଜକୁ?' ଜନୈକ ଉଦ୍‌ବୁଦ୍ଧ ଶ୍ରୋତା ଏବଂ ପଣ୍ଡିତଙ୍କର ପ୍ରାକ୍ତନ ଛାତ୍ର ଗୁରୁଙ୍କ ସହ ସ୍ୱର ମିଳାଇଲେ । 'ଝିଅକୁ ପାଠ ପଢ଼େଇଲା, ଭଲ କଲା । ଆମ ଝିଅମାନେ ମାଟ୍ରିକ୍ ଫେଲ୍ ହେଲେ ଘରେ ରହିଲେ । କିନ୍ତୁ ନବା ଝିଅ କଲେଜ ଗଲା, ଭଲ ହେଲା, ଆମର କିଛି ଆପତ୍ତି ଥିଲା? ଆମରି ସାମ୍ନାରେ ଓଢ଼ଣି ଉଡ଼େଇ ସାଇକେଲ ଚଢ଼ି ହେଁ ହେଁ ଫେଁ ଫେଁ ହେଇଗଲା, ଆମେ ସହିଲୁ । ତା'ବୋଲି ଏବେ ଆସି ଛକ ଉପରେ ପୁରୁଷମାନଙ୍କ ପରି ଦୋକାନରେ ବସି ବିକ୍ରିବଟା କରିବ?' ପ୍ରଶ୍ନଟି ପ୍ରାୟ ଉପସ୍ଥିତ ସମସ୍ତ ବ୍ୟକ୍ତିଙ୍କପାଇଁ ଫିଙ୍ଗିଦେଇ ସେ ଚୁପ୍ ରହିଲେ ।

ପଣ୍ଡିତେ ମୁଣ୍ଡ ହଲେଇଲେ । ଆଉ କିଛି ଶ୍ରୋତା ଗମ୍ଭୀର ମୁଦ୍ରାରେ ଛାତିରେ ଦୁଇ ହାତ ଜାକି ମୁଣ୍ଡ ପୋତିଲେ । ସତେ ଅବା, ଏହା ଏକ ସାମୁହିକ ସମସ୍ୟା । ରାଷ୍ଟ୍ରିୟ ବିପର୍ଯ୍ୟୟ । ଅତଃ, ସମସ୍ତେ ମୁଣ୍ଡ ଖେଳେଇବାର ସମୟ ଆସିଛି । ଅଧିକ ବିପର୍ଯ୍ୟୟ ଘଟିବା ପୂର୍ବରୁ କିଛି ଗୋଟାଏ ଉପାୟ ବାହାର କରିବାର ଅଛି ।

ରାସ୍ତାର ଅପର ପାର୍ଶ୍ୱରେ 'ଶରତ ଭେରାଇଟି ଷ୍ଟୋର୍' । ସେଠି ଯୁବ ପିଢ଼ିଙ୍କର ଭିଡ଼ । ଆସନ୍ନ ପୌଢ଼, ପୌଢ଼ ଏବଂ ଅତିକ୍ରାନ୍ତ-ପୌଢ଼ ସବୁ ପ୍ରକାର ଲୋକ ସେଠି ଅଛନ୍ତି । ତେବେ ସେଠାରେ ଚର୍ଚ୍ଚା ଟିକେ ଅଲଗା । ଯଦିଚ ବିଷୟବସ୍ତୁ ଗୋଟିଏ,

ବର୍ଣ୍ଣନା ଭିନ୍ନ ଭିନ୍ନ । 'କଲେଜ ଯାଉଥିଲା ଯୋଉ ଟୋକା ସାଙ୍ଗରେ, ସେ ଟୋକା ବି ସାତଦିନ ହେଲା ଫେରାର୍ ।' ଜନୈକ ଯୁବ ବନ୍ଧୁ ନୂତନ ତଥ୍ୟଟିଏ ପ୍ରକାଶ କଲେ । 'ବେପାର ଏକ ବାହାନା । ତୁମେ କେବେ ତା ଦୋକାନରୁ ଥଣ୍ଡା ପି'ଛ? ସେ କେମିତି ଠିପିଖୋଲି ହାତକୁ ବଢ଼େଇ ଦିଏ ଜାଣିଛ? ତୁମ ହାତରେ ତା'ହାତକୁ ଟିକେ ବଜେଇ ଦବ ନିଶ୍ଚୟ ।' ଏକ ଅର୍ଥପୂର୍ଣ୍ଣ ହସରେ ଯୁବକ ଜଣକ ଚାରିପଟକୁ ଚାହିଁଲେ । ଶ୍ରୋତାମାନେ ଆସ୍ତେ ଆସ୍ତେ ପାଖକୁ ଲାଗିଆସିଲେ ଏବଂ ଉତ୍କର୍ଣ୍ଣ ରହିଲେ ଆଉ କିଛି ଗୂଢ଼ ରହସ୍ୟ ଶୁଣିବାପାଇଁ ।

'ମୁଁ ନିଜେ ଦେଖିଛି, କଲେଜ ପାଖରେ ସେ ଯୋଉ ପାନ ଦୋକାନ ଅଛି ।' ପଛପଟୁ ଅନ୍ୟଜଣେ ଯୁବବନ୍ଧୁ ନିଜର ଆଖିଦେଖା କଥା ଶୁଣାଇବାକୁ ଚାହିଁଲେ ଏବଂ କଥାଟି ଅପୂର୍ଣ୍ଣ ରଖି ମଝିକୁ ଯିବାପାଇଁ ଭିଡ଼ ଠେଲିଲେ । ଭିଡ଼ବୃତ୍ତଟି ହୁଗୁଳା ହୋଇଗଲା ଆପଣା ଛାଏ ଏବଂ ସେ କେନ୍ଦ୍ରବିନ୍ଦୁ ପାଲଟି ଅର୍ଦ୍ଧବାକ୍ୟ ପୂର୍ଣ୍ଣ କଲେ – ପାନଦୋକାନ ପାଖରେ ଟୋକା ଆଗରୁ ଜଗିଥାଏ । ଚକୋଲେଟ୍ ନହେଲେ ସାଦାପାନର ପୁଡ଼ିଆଟିଏ ତା'ହାତକୁ ବଢ଼େଇ ଦିଏ । ପ୍ରକୃତରେ ସେ ପୁଡ଼ିଆରେ କ'ଣ ପାନ ଥାଏ? ପ୍ରଶ୍ନଟି ଥିଲା ଶ୍ରୋତାଙ୍କପାଇଁ । ସମସ୍ତଙ୍କର ନିରବତାକୁ ଦେଖି ଯୁବକ ସହାସ୍ୟ ବଦନରେ ଗଣ୍ଠି ଖୋଲିଲେ – ପାନ ଭଳି ଦିଶୁଥିବା ପୁଡ଼ିଆଗୁଡ଼ିକ ଅସଲରେ ହେଉଛି ଚିଠି ।'

ରୁବି ବାଣିଜ୍ୟରେ ସ୍ନାତକ । ବାପାକୁ ବ୍ୟବସାୟରେ ସାହାଯ୍ୟ କରି ବୁଡ଼ିଯାଉଥିବା ଆଶା–ଭରସାକୁ ବଂଚେଇ ରଖିବା ଏବଂ ସେଥିରେ ସଫଳ ହେବା ଏକ ଆକସ୍ମିକତା ଅବା ଦୁର୍ଘଟଣା କିମ୍ବା ଆବଶ୍ୟକତା କହିବା କଷ୍ଟ । ତା ବାପା, ବ୍ୟବସାୟ ଆରମ୍ଭ କରିବା, ସେଥିରେ ଉନ୍ନତି କରିବା ଏବଂ ବ୍ୟବସାୟ ବୁଡ଼ିଯିବା– ଏ ସମସ୍ତ ଘଟଣା ସେ ନିଜ ଆଖିରେ ଦେଖିଛି । ଏ ଉତ୍‌ଥାନ–ପତନ ଘଟଣା ମାତ୍ର ଦଶ ବର୍ଷ ଭିତରର କଥା । ରୁବିକୁ ସେତେବେଳୁ ନ'କି ଦଶ, ତା'ବାପା ଆରମ୍ଭ କଲା ବେପାର ।

ବେପାର, ନବଘନର କୌଳିକ ବୃତ୍ତି ନଥିଲା । ତା'ର ପୂର୍ବପୁରୁଷ କେହି ବେପାରୀ ନଥିଲେ । ସମସ୍ତେ ଥିଲେ ଚାଷୀ । ତା' ଜେଜେବାପା ଥିଲେ ପଞ୍ଚାୟତର ଆଗୁଆ ଚାଷୀ । ହାତୀ ଭଳିଆ ତିନିହଳ ବଳଦ, ଦୁଇଟା ଶଗଡ଼, ତିନିକୋଠିଆ । ଧାନଗଦା ବସେ ପାଞ୍ଚଟା । ପଛକୁ ବେକଭାଙ୍ଗି ନ ଚାହିଁଲେ ଦିଶେ ନାହିଁ ଧାନଗଦାର ଶୀର୍ଷ । ଆଖୁ ଚାଷ ତାଙ୍କ ପଞ୍ଚାୟତରେ ସେ ଆରମ୍ଭକଲେ । ଟାଇଚୁନ୍ ଧାନ ସେ ଚାଷ କଲେ ପ୍ରଥମେ । ତାଙ୍କ ଅନ୍ତେ ପନ୍ଦର ମାଣ ଜମି ତିନିଭାଗ ହେଲା । କାରଣ ନବଘନର ଦୁଇଜଣ ଦାଦା ଥିଲେ । ନବଘନ ବାପାଙ୍କ ବାଣ୍ଟରେ ଯେଉଁ ପାଞ୍ଚମାଣ

ଜମି, କୋଡ଼ିଏଟା ନଡ଼ିଆଗଛ ଏବଂ ଗୋଟାଏ ମାଛ ପୋଖରୀ ପଡ଼ିଥିଲା, ସେଥିରେ ପରିବାର ପ୍ରତିପୋଷଣରେ କିଛି ଅସୁବିଧା ହେଉ ନଥିଲା । ନବଘନ ଉପରେ ତିନି ଭଉଣୀ, ତଳେ ଭାଇଟିଏ । ଭାଇ ଭଉଣୀମାନେ ଯେତେବେଳେ ବଡ଼ ହେଲେ, ଖର୍ଚ୍ଚ ବଢ଼ିଲା, ସେତିକିବେଳେ ନବଘନ ମୁଣ୍ଡରେ ବଜ୍ର ପଡ଼ିଲା – ତା' ବାପା ଚାଲିଗଲେ । ପାଠ ତ ଆଗରୁ ଛାଡ଼ିଥିଲା ବାପାଙ୍କୁ ଚାଷରେ ସାହାଯ୍ୟ କରିବାପାଇଁ, ଏବେ ଲଙ୍ଗଳ କଣ୍ଠି ନିଜେ ଧରିଲା । ବୟସ ସେତେବେଳକୁ ଅଠର । ତିନି ଭଉଣୀଙ୍କର ବୋଝ ମୁଣ୍ଡ ଉପରେ । ସାନ ଭାଇର ପାଠପଢ଼ା । ଯଥାକଥା ଘର ଖର୍ଚ୍ଚ ଚଳିଯାଏ । କିନ୍ତୁ ଅସଲ ସମସ୍ୟା ହେଲା, ଭଉଣୀ ବାହାଘରପାଇଁ ଅର୍ଥ କାହିଁ? ତେଇଶ ଚବିଶ ବର୍ଷ ହେଲା ବୋଲି ତ ସାଇ ପଡ଼ିଶା ଟୁପୁରୁ ଟାପୁରୁ ହେଲେ । ତେଣୁ ଜମି ବିକ୍ରିକରିବା ଛଡ଼ା ଅନ୍ୟ ଗତି ନାହିଁ। ତିନିବର୍ଷରେ ଚାରିମାଣି ଜମି ବିକି ନବା ନିମିତ୍ତ ଉଠେଇଦେଲା । ସାନ ଭାଇର କଲେଜ ପଢ଼ିବା ଖର୍ଚ୍ଚ ଏବଂ ନିଜ ବାହାଘର ପରେ ରୁବି, ମାଧବ ଜନ୍ମ ହେବା ପର୍ଯ୍ୟନ୍ତ ଦେଢ଼ମାଣ ଜମି ତଥାପି ଥିଲା । କିନ୍ତୁ ସାନଭାଇର ଚାକିରିପାଇଁ ଯେତେବେଳେ ପଚାଶ ହଜାର ଲାଞ୍ଚ ଦରକାର ପଡ଼ିଲା, ସେତେବେଳେ ଆଉ ଉପାୟ କାହିଁ? ସାନଭାଇ ବି ହିମ୍ମତ ଦେଲା, ଜମି ବିକ୍ରିକର, ପୁଲିସ ଚାକିରୀ, ଦୁଇ ବର୍ଷରେ ମୁଁ ଉଠେଇ ଦେବିନି ? ଗୋଟାଏ ଏକର କାହିଁକି, ପାଞ୍ଚ ଏକର ଜମି କିଣିଦେବାନି ?' ରୁବିକୁ ସେତେବେଳେ ନ'ବର୍ଷ । ମାଧକୁ ପାଞ୍ଚ । ସ୍ୱାମୀ–ସ୍ତ୍ରୀ ବହୁତ ଆଲୋଚନା କଲେ । ନବା ବୁଝେଇଲା – ଜମି ଆଜି ନାହିଁ, କାଲି ଆସିବ, ହେଲେ ଚାକିରୀ? ଲୋକ ପରା ଲକ୍ଷେ ଯାଚିଲେଣି । ପୁଲିସ ଏସାଇ କ'ଣ ଛୋଟିଆ ଚାକିରୀ!

ଘର ଡିହକୁ ଲାଗି ପନ୍ଦର ଗୁଣ୍ଠ ଜମିକୁ ଛାଡ଼ିଦେଲେ, ସ୍ଥାବର ସମ୍ପତ୍ତି ଆଉ କିଛି ରହିଲା ନାହିଁ, କି ଚାକିରୀ ପରେ ଭାଇ ଆଉ ଗାଁ ମାଟି ମାଡ଼ିଲା ନାହିଁ। ବିଜାତିରେ ବାହା ହୋଇ ଭୁବନେଶ୍ୱରରେ ରହିଲା ।

ଅଗତ୍ୟା ଚାଷ ଛାଡ଼ି ଆଉ କିଛି ଧନ୍ଦା କରିବାକୁ ପଡ଼ିବ । ନଚେତ୍ କୁଟୁମ୍ବ ଚଳିବେ କେମିତି? ପିଲାମାନେ ପାଠ ପଢ଼ିବେ କେମିତି? ସଂସାର ଚାଲିବ କେମିତି? ଏଣୁ, ବେପାର କରିବାପାଇଁ ସେ ଏକ ପ୍ରକାର ବାଧ୍ୟ ।

କି ବେପାର କରିବ? ପୁଞ୍ଜି କାହିଁ? କେତେକ ବନ୍ଧୁ ବାଟ ବତେଇଲେ – ସୁରତ ନଚେତ ଦିଲ୍ଲୀ ପଳା । ପାଣି ପାଇପ କାମ ନହେଲେ ସୁତା କଳରେ କାମ କରିବୁ । ସେ ବି ଏକ ପ୍ରକାର ମନ ସ୍ଥିରକରିଥିଲା । ପଳେଇଥା'ନ୍ତା । କିନ୍ତୁ କାହିଁକି କେଜାଣି ପିଲାମାନଙ୍କ ମୁହଁକୁ ଚାହିଁବାରୁ ସବୁ ଯୋଜନା ପାଣି ଫାଟିଗଲା । ତାକୁ ଲାଗିଲା ବାପ ଥାଉ ଥାଉ ଅନାଥ ହୋଇଯିବେ ଛୁଆ ଦି'ଟା । ଆଖିକୁ ଦିଶୁ ନଥିବା ମା'ବୋଧହୁଏ ଆଉ ବେଶିଦିନ ବଂଚିବନି । ରୋଗୀଣା ସ୍ତ୍ରୀଟି କ'ଣ କରିବ?

ବାଡ଼ିପଟ ନଡ଼ିଆ ଗଛ ମୂଳେ ଏମିତି ଚିନ୍ତା କରୁକରୁ ହଠାତ୍ ତା ମୁଣ୍ଡକୁ ଅଦ୍ଭୁତ ଚିନ୍ତାଟିଏ ଆସିଲା । ବାଡ଼ିରେ ପନ୍ଦରଟା ଫଳନ୍ତି ନଡ଼ିଆ ଗଛ । ଗଛ ଭର୍ତ୍ତି ପଇଡ଼ ଏବଂ ନଡ଼ିଆ । ସେ ଭାବିଲା ଏ ଡହଡହ ଖରାଦିନରେ ସେ ପଇଡ଼ ବିକିବ ।

ଆଜି ଗାନ୍ଧୀଛକରେ ଯେଉଁ ଦୋକାନ ବଜାର, ଲୋକବାକ ଦଶ ବର୍ଷ ତଳେ ଏସବୁ କିଛି ନଥିଲା । ଏ ରାସ୍ତା ପିଚୁ ହୋଇନଥିଲା, କି ବିଜୁଳି ବତି ଖୁଣ୍ଟ ବି ପଡ଼ିନଥିଲା । ଏ ଗାନ୍ଧୀମୂର୍ତ୍ତି ନଥିଲା, କି ଛକର ନାଁ ଗାନ୍ଧୀଛକ ମଧ ନଥିଲା । କେବଳ ଥିଲା ଝଙ୍କା ବରଗଛଟିଏ । ଖରାବେଳେ ଗାଈଆଳ ପିଲାମାନେ ଗାମୁଛା ପାରି ଶୋଇପଡ଼ନ୍ତି ତା ତଳେ, ଖରା ମଉଳିବା ପର୍ଯ୍ୟନ୍ତ ।

ସାଇକେଲ ପଛ କ୍ୟାରିୟର୍ ଏବଂ ହାଣ୍ଡେଲରେ ଓହଳା ହୋଇଛି ପଇଡ଼ କାନ୍ଦି ଓ କଟୁରି । ନବଘନ ସାଇକେଲ୍ ଷ୍ଟାଣ୍ଡ ମାରି ଅପେକ୍ଷା କଲା ଶୋଷିଲା ଗରାଖମାନଙ୍କୁ । ନବଘନର ବ୍ୟବସାୟ ସେଉଠୁ ଆରମ୍ଭ । ପ୍ରଥମ ଦିନ ବ୍ୟବସାୟର ସ୍ମୃତି କେବେବି ଭୁଲିବାର ନୁହେଁ । ଏକ ଭିନ୍ନ ରକମର ଅନୁଭବ । ପଇଡ଼ ଗୋଟାକୁ ଦୁଇଟଙ୍କା ହିସାବରେ କୋଡ଼ିଏଟି ପଇଡ଼ ବିକ୍ରିହେଲା । ହାତକୁ ଆସିଲା ପଇଁତିରିଶ ଟଙ୍କା । ଚାଳିଶ ପୂରିଲାନି, କାରଣ ଧୋବ ଧାଉଳିଆ କେତେକ ବାବୁଙ୍କ ପାଖରେ ଖୁଚୁରା ନଥିଲା କିମ୍ବା ତାଙ୍କର ଶହେ-ପାଁଶ ଟଙ୍କିଆକୁ ଭଙ୍ଗେଇବାପାଇଁ ନବଘନର ଯୁ' ନଥିଲା । ତେବେ ନବଘନର ସେଥିପ୍ରତି ଦୃଷ୍ଟି ନାହିଁ । ପଇଁତିରିଶ ଟଙ୍କାର ଖୁଚୁରାକୁ ତିନିଥର ଗଣିଲା । ମୁଣ୍ଡରେ ମାରି ଛାତି ପକେଟ୍‌ରେ ରଖିଲା । ତା ଛାତି ଭିତରୁ କେମିତି ଗୋଟାଏ ପରିପୂର୍ଣ୍ଣତାର ଭାବ ଉତୁରି ଆସିଲା ଦୀର୍ଘଶ୍ୱାସ ହୋଇ । ମନ ଭିତରୁ କିଏ ଯେମିତି ତାକୁ ଦମ୍ଭଦେଲା, ସାହସଦେଲା – ହବ, ହବ, ତୋଦ୍ୱାରା ହବ । ତୁ କୂଳରେ ଲାଗିଯିବୁ, ତୋ ଡଙ୍ଗା ବୁଡ଼ିବନି ।

ଉଦୁଉଦିଆ ଖରାବେଳେ ଗାଁ ଦାଣ୍ଡରେ ଯେତେବେଳେ ନବା ସାଇକେଲ ଠେଲି ଆସେ, କିଏ କେତେ ପ୍ରକାର ଥଟ୍ଟା କରନ୍ତି । 'ଶେଷରେ ରଘୁ ପରିଡ଼ା ନାତି ପଇଡ଼ ବିକିଲା !' ଆଶ୍ଚର୍ଯ୍ୟ ହୋଇ କ୍ଷୋଭ ପ୍ରକାଶକଲେ କିଛି ଗ୍ରାମବାସୀ । ଖରାଦିନେ ପଇଡ଼ ବେପାର ଭଲ ଚାଲିଲା । ଭଲ ଦି' ପଇସା ଆସିଲା । ସାହସ ବି ବଢ଼ିଲା । ଅଗଷ୍ଟ ମାସକୁ ପୁଣି ଗୋଟିଏ ବୁଦ୍ଧି ଯୁଟିଲା । ସେତେବେଳେ ତ ପଇଡ଼ ବେପାର ନାହିଁ । ନବା ବୁଲି ବୁଲି ଝୋଟ ବେପାର ଆରମ୍ଭକଲା । ଆଖପାଖ ଦଶଟା ପଞ୍ଚାୟତରେ ନଳିତା ଚାଷ ହୁଏ । ବ୍ୟବସାୟୀମାନେ ଚାଷୀଙ୍କ ଠାରୁ ଝୋଟ ନେଇ ଗୋଦାମରେ ବିକନ୍ତି । ମୁନାଫା ଭଲ ମିଳେ । ନବା ସେଥିରେ ମନଦେଲା ଏବଂ ପ୍ରାୟ ଦୁଇ ମାସ ପର୍ଯ୍ୟନ୍ତ ସେ ବେପାର ଚାଲିଲା ।

ତେବେ ଏମିତି ଋତୁଅନୁସାରେ ବେପାର କରି କେତେଦିନ ଚାଲିବ! ଗୋଟାଏ ସ୍ଥାୟୀ ଦୋକାନପାଇଁ ସ୍ତ୍ରୀ ଉପଦେଶ ଦେଲା । ଯେଉଁଠି ନବା ପଇଡ଼ ବିକୁଥିଲା, ଠିକ୍ ସେଇଠି ତିଆରି କଲା ଗୋଟାଏ ଚାଳିଆ । ଆରମ୍ଭ କଲା ଡାଲି, ଚାଉଳ, ପାନ, ବିଡ଼ି ବେପାର ।

ଈଶ୍ୱରଙ୍କର ଅପାର କରୁଣା । ମୁଖ୍ୟରାସ୍ତାଟି ପିଚୁ ହେଲା ଏବଂ ଗାଡ଼ି ମଟର ସଂଖ୍ୟା ବଢ଼ିଲା । ତା ସାଙ୍ଗକୁ କଟକ ପର୍ଯ୍ୟନ୍ତ ଗୋଟାଏ ମିନିବସ୍ ସକାଳୁ ଛାଡ଼ିଲା ଗାଈଗାଁ ଛକରୁ ଠିକ୍ ନବାର ଦୋକାନ ସାମ୍ନାରୁ । ନବାର ଭାଗ୍ୟ ଫିଟିଗଲା ଜାଣ । ଆଖପାଖ ଗାଁର ଲୋକମାନେ ମଧ ନବଦୋକାନକୁ ମୁହାଁଇଲେ । ଯଦିଓ ପାଞ୍ଚ କି.ମି. ପରେ ଦୋକାନ ଥିଲା, ତଥାପି ଗ୍ରାହକମାନେ ନବାକୁ ପସନ୍ଦକଲେ । କାରଣ ବି ଅଛି । ନବାର ସବୁ ଖାଣ୍ଟି ମାଲ୍ । ସେ ନିଜେ ଗାଁକୁ ଗାଁ ବୁଲି ଡାଲି, ହଳଦୀ, ଲଙ୍କା, ଚାଉଳ ସଂଗ୍ରହକରେ । ନିଜ ଘର ତିଆରି ଗୁଆଘିଅ ବିକେ । ଆସ୍ତେ ଆସ୍ତେ ଛକ ଉପରେ ଦୋକାନ ସଂଖ୍ୟା ବଢ଼ିଲା । ସେଲୁନ୍, ଜଳଖିଆ ଦୋକାନ ଦୁଇଟା ବି ଖୋଲିଗଲା । ଛକକୁ ବିଜୁଳିବତି ଆସିଗଲା ଏବଂ ପଞ୍ଚାୟତ ତରଫରୁ ଗୋଟାଏ ନଳକୂପ ଖୋଳା ହୋଇଗଲା । ଏକ ନମ୍ବରୀ ଜିନିଷ ବିକୁଥିବାରୁ ନବାର ଖ୍ୟାତି ବ୍ୟାପିଲା । ବ୍ୟବସାୟ ବଢ଼ିଲା । ନବା ଝୁମ୍ପୁଡ଼ି ଦୋକାନକୁ ଇଟା କାନ୍ଥ ଦେଇ ଉଚ୍ଚା କରିଦେଲା । ସାମ୍ନାରେ ଦୁଇଟା ଲମ୍ବା ବେଞ୍ଚ ବି ପକେଇଲା । ଏମିତି ତିନି ଚାରିବର୍ଷ ପର୍ଯ୍ୟନ୍ତ ନବାର ବେପାର ଠିକ୍‌ଠାକ୍ ଚାଲିଲା । ପୂଜା ପାର୍ବଣ ଆସିଲେ ତା'କୁ ଖାଇବାକୁ ଫୁର୍‌ସତ୍ ମିଳେନା । ସେ ଘରକୁ ଯାଇ ଖାଇପାରେନା ବୋଲି ରୁବି ତାପାଇଁ ଗାଧୁଆବେଳ ଖାଇବା ଧରି ଆସେ ।

ହଠାତ୍ ବିପର୍ଯ୍ୟୟ ଆରମ୍ଭ ହେଲା । ଛକ ଉପରେ ଶରତ ଖୋଲିଲା ଗୋଟାଏ ଆଖିଦୃଶିଆ ଦୋକାନ । ନବାଦୋକାନ ଠାରୁ ଢେର ବଡ଼, ଉଚ୍ଚା । ଶରତ ଗାଁର ଲେଖାଯୋଖାରେ ପୁତୁରା, ଦିଲ୍ଲୀ ବମ୍ବେରେ କାମ କରୁଥିଲା । ସେଠୁ ଛାଡ଼ି ଛକରେ ଆରମ୍ଭ କରିଛି 'ଶରତ ଭେରାଇଟି ଷ୍ଟୋର୍' ।

ଶରତ ପ୍ରଥମ ଥରପାଇଁ ଛକ ଉପରେ ରଖିଲା କୋକାକୋଲା, ପେପ୍‌ସି । ବଡ଼ ବଡ଼ କପଡ଼ାଛତା ପୋତି ତା ତଳେ ପକେଇଲା ନାଲି ନାଲି ପ୍ଲାଷ୍ଟିକ୍ ଚେୟାର୍ ଏବଂ ଦୋକାନରେ ରଖିଲା ଡାଲି ଚାଉଳଠୁ ଆରମ୍ଭ କରି କିସମ୍ କିସମ୍ ଚିଜ ।

ନବାକୁ ପ୍ରଥମ ଝଟକା ଲାଗିଲା, ଯେତେବେଳେ ତା'ର ପଡ଼ଇ ବିକ୍ରି ତିରିଶରୁ ତିନିଟାକୁ ଖସିଆସିଲା । ପିଲା ଠାରୁ ବୁଢ଼ା ପର୍ଯ୍ୟନ୍ତ ସମସ୍ତେ ଧରିଲେ ପେପ୍‌ସି ବୋତଲ । ବୋତଲ ଠିପି ଭିତରେ ଲୁଚି ରହିଛି ଏକ ଗୁପ୍ତ ସଂଖ୍ୟା । ସେହି ପ୍ରକାର ତିନିଟା ଠିପି

ଦେଖାଇଦେଲେ ପୁରସ୍କାର ପାଇବ କେଜିଏ ସୁନା । ପେପ୍‌ସିର ସିର୍‌ସିର୍ ମଜାକୁ କେଜିଏ ସୁନାର ମୋହ । ଏପଟେ ନବାର ପଇଡ଼ରୁ ପାଣି ଶୁଖିଲା । ଏପରିକି, ମାଗଣାରେ ଯଦି କାହାକୁ ଭଦ୍ରାମିରେ ପଇଡ଼କାଟି ଦେଲା, ସେ ଫରମାଇସ୍ କଲା ଶରତ ପାଖରୁ ଫାଣ୍ଟା ଗୋଟାଏ ଆଣୁନୁ, ଆଜି କାଲି ଗାଁ ମାଇପେ ପରା କୋକାକୋଲା ପିଇଲେଣି, ତୁ ପଇଡ଼ କାଟୁଛୁ କ'ଣ ?

ଶରତ ଗୋଟାଏ ଟି.ଭି. ଲଗେଇ ଦେଇଛି । କ୍ରିକେଟ୍ ମ୍ୟାଚ୍ ଠୁଁ ଆରମ୍ଭ କରି ନାଚ ଗୀତ ସବୁବେଳେ । ତେଣୁ ତା ଦୋକାନରେ କେତେବେଳେ ଭିଡ଼ କମେ ନାହିଁ । ଆଗେ ରାତି ଆଠଟାରେ ଛକ ଶୂନ୍‌ଶାନ୍ ହେଉଥିଲା, କିନ୍ତୁ ଏବେ ଖାସ୍ ଶରତ ଦୋକାନପାଇଁ ରାତି ଏଗାର/ବାର ପର୍ଯ୍ୟନ୍ତ-ଗହଳି । ଅବଶ୍ୟ ସେତେବେଳକୁ ଚାଲି ଟଳମଳ ହେଉଥିବା ଲୋକମାନେ ହିଁ ଥାନ୍ତି ।

ନବା ଏବେ ହାତବାନ୍ଧି ବସିଲା । ଗ୍ରାହକମାନେ କଥାବାର୍ତ୍ତା ହେଲେ – ଯାହା ହେଲେ ବି ପାଠୁଆ ପିଲା ଆଉ ମୂର୍ଖଙ୍କ ବେପାର କ'ଣ ଏକାହେବ? ଶରତ ସବୁମାଲ କଟକରୁ ଆଣେ । ଚିକ୍ ଚିକ୍ ପ୍ୟାକେଟ୍ ସାଙ୍ଗକୁ କେତେ ଚିଜରେ ଗୋଟାଏ କିଣିଲେ ଆଉ ଗୋଟାଏ ମାଗଣା । ନବା ଫ୍ରିଜ୍‌ଟାଏ କିଣିବାକୁ କୁନ୍ଥକୁନ୍ଥ । ଥଣ୍ଡା ବିକିବା ତ ଦୂରର କଥା । ସେ କହୁଛି ଏଗୁଡ଼ାକ ବିଷ । ଦେହ ପ୍ରତି ଖରାପ । ପଇଡ଼ଟା ପେଟକୁ ଥଣ୍ଡା । ହେଲେ ତା କଥା ଶୁଣୁଛି କିଏ?

ନବା ବିକିଲା ଗାଁ ଗହଳି ମୋଟାରୋଟା ବୋଳ ଚାଉଳ । ଶରତ ଦୋକାନରେ ମିଳିଲା ପ୍ୟାକେଟ୍‌ବାଲା ପିନ୍‌ପିନ୍ ଡେରାଡୁନ୍ ଚାଉଳ ।

ନବା ଜିନିଷ ଗୁଡ଼େଇଦେଲା ଖବରକାଗଜ ଠୁଙ୍ଗାରେ । କିନ୍ତୁ ଶରତ ପାଖରେ ଚିକ୍ ଚିକ୍ ପଲିଥିନ୍ ବ୍ୟାଗ୍ । ବ୍ୟାଗ୍ ଉପରେ ଛପା 'ଶରତ ଭେରାଇଟି' ।

ନବା ବିକିଲା ଗାଁ ହଳଦୀ, ଶରତ ଦୋକାନରେ ରୁଚି କମ୍ପାନୀର ଭଳିକି ଭଳି ମସଲାଗୁଣ୍ଡ ।

ନବା ଦୋକାନରେ ଦେଶୀ ଗୁଆଘିଅ, ଶରତ ବିକିଲା ଅମୁଲ ବଟର୍, ଅମୁଲ ଗୁଣ୍ଡ ଦୁଧ, ଓମ୍‌ଫେଡ୍ ଦୁଧ, ଓମ୍‌ଫେଡ୍ ଦହି, ଘିଅ ।

ନବାର ବିକ୍ରି କରିବାପାଇଁ କେହି ପିଲା ନାହାନ୍ତି । ସେ ନିଜେ ଡାକେ, ପାଖରେ ବସାଏ, ଓଜନ କରିଦିଏ । କିନ୍ତୁ ଶରତ ପାଖରେ ଦୁଇଟା ହେଲ୍‌ପର୍ । ଗରାଖ ପହଞ୍ଚିଲେ ସେ ପିଲାଙ୍କୁ ନିର୍ଦ୍ଦେଶ ଦିଏ, ଏଇ 'ସାର୍'ଙ୍କର କ'ଣ ଦରକାର ପଚାର, ନବା ଭଳି ଦାଦା, ଅଜା, କକେଇ ଡାକେ ନାହିଁ ।

ଦୋକାନ ବିକ୍ରି ମାନ୍ଦା ହେବାରୁ ନବା ଘର ଘର ବୁଲି ବାହାଘର, ବ୍ରତଘରଗୁଡ଼ିକରେ ଜିନିଷ ଯୋଗାଇଲା । ପ୍ରଥମେ ମୁହଁ ମତରେ କେହି କହିଲେନି,

ହେଲେ ପରେ ମନଦୁଃଖ କରି କହିଲେ – ବୁଝିଲୁ ନବ, ତୋ ହଳଦୀରେ ରଙ୍ଗ ନାହିଁ କି ତୋ ଲଙ୍କା ତର୍କାରୀକୁ ନାଲି କରିପାରୁନି । ଶରତ କି ଲଙ୍କାଗୁଣ୍ଡ ଆଣିଛି, ଚାମଚେ ପକେଇଲେ ପୂରା ନାଲି ପଡ଼ିଯାଉଛି କଡ଼େଇଯାକ ତର୍କାରୀ ।

ଶରତ କୁଆଡ଼େ ଯାଏ ନାହିଁ । ଟେଲିଫୋନ୍‌ରେ ଅର୍ଡର ଦେଲେ, କୋଉଠୁ ନା କୋଉଠୁ ମାଲ୍ ଆସି ତା ଦୋକାନରେ ପହଞ୍ଚିଯାଉଛି ।

ବିଚରା ଏକ ନମ୍ବରୀ ମାଲ ରଖିଛି ବୋଲି ଯେତେ ଡେଙ୍ଗୁରା ପିଟିଲେ ବି, ନବଘନର କଥା କେହି ଶୁଣିଲେନି । ତା'ର ଭଙ୍ଗାବେଞ୍ଚକୁ ସଜାଡ଼ିଲା, 'ଲକ୍ଷ୍ମୀ ଷ୍ଟୋର୍' ବୋଲି କାନ୍ଥରେ ଲେଖେଇଲା । ଚିହ୍ନାଲୋକଙ୍କୁ ଡାକି ଭଲମନ୍ଦ ପଚାରିଲା, ପିଲାପିଲିଙ୍କ କଥା ପଚାରିଲା, ଚା'ପେଇଲା, ସଉଦା ନିଅ– ସୁବିଧା ହେଲେ ଟଙ୍କା ଦବ ବୋଲି କହିଲା । ତଥାପି ଗ୍ରାହକ ନାହାନ୍ତି । ତାକୁ ଲାଗିଲା ସତେ ଯେମିତି ସମସ୍ତେ ଭାସିଯାଉଛନ୍ତି ସୁଅର ଅନୁକୂଳରେ, ଖୁବ୍ ଦ୍ରୁତ ଗତିରେ ଏବଂ କେବଳ ସେ ହିଁ ଠିଆ ହୋଇଛି କୂଳରେ । ସେ ଖୁବ୍ ଯୋର୍‌ରେ ଡାକୁଛି, ଚିତ୍କାର କରୁଛି ଅଥଚ ତା ଡାକ କାହାରି କାନରେ ବାଜୁନାହିଁ ।

ରୁବି ପଢ଼େ ଗାଁ ପାଖ କଲେଜରେ । ସାଇକେଲ୍‌ରେ ଯିବା ଆସିବା କରେ । ମାଧବ ଗାଁ ସ୍କୁଲରେ । ଖର୍ଚ୍ଚ ବଢ଼ି ବଢ଼ି ଚାଲିଛି । ଯାହା କିଛି ଝିଅ ବାହାଘରପାଇଁ ସଂଚୟ କରିଥିଲା ତିନିବର୍ଷ ତଳେ, ଆସ୍ତେ ଆସ୍ତେ ସେଥିରୁ ସବୁ ସରିଲାଣି । ବାଡ଼ିରେ ଥିବା ଚାକୁଣ୍ଡା ଗଛ ବିକ୍ରି କରିବାରୁ ମା'ର ଶୁଦ୍ଧିକ୍ରିୟା ହେଲା । ଝିଅ ପୁଅଙ୍କ ପାଇଁ ପର୍ବପର୍ବାଣୀରେ ନୂଆ ଡ୍ରେସ୍ କରିବା ମଧ୍ୟ ତା ପକ୍ଷେ ଆଉ ସମ୍ଭବ ନୁହେଁ । ଚାହୁଁ ଚାହୁଁ ମାତ୍ର ତିନି ବର୍ଷ ଭିତରେ ନବାର ବୟସ ପନ୍ଦର ବର୍ଷ ବଢ଼ିଗଲା ଭଳି ଦିଶିଲା । ରୁବିର ମା' ଆହୁରି ରୁଗ୍‌ଣା ହୋଇଗଲା । ପରିବାରର ସମସ୍ତେ ଯେମିତି ପାଲଟି ଗଲେ ଗୋଟିଏ ଗୋଟିଏ ରକ୍ତହୀନ ମଣିଷ, ଚଳନ୍ତା ସ୍କେଲିଟନ୍ ।

ରୁବି ଏ ସବୁ ନିଜ ଆଖିରେ ଦେଖିଛି । ସେ ଏବେ ବେଶ୍ ବଡ଼ ହୋଇଗଲାଣି । ଦୁନିଆର ଆଦବ କାଇଦା ବି ଜାଣିଲାଣି । ଚାଲିଚଳଣି ବୁଝିଲାଣି । ସେ ହୃଦୟଙ୍ଗମ କଲା, ତା ବାପାର ଏକ ନମ୍ବରୀ ମାଲ ଅପେକ୍ଷା ଆଖିଦୃଶିଆ ମାଲ୍‌ର ଅଧିକ ଚାହିଦା ଅଛି । ପଇଡ଼ ପାଣି ଅପେକ୍ଷା ପେପ୍‌ସି, କୋଲାର ଚାହିଦା ଅଧିକ ।

ତେଣୁ ସେ ସ୍ଥିରକଲା ବାପାକୁ ସାହାଯ୍ୟ କରିବ । ବୁଡ଼ିଯାଇଥିବା ଘର ସଂସାରକୁ ପୁଣିଥରେ ଉଠେଇବ । ସେ ନିଜେ ଠିଆହବ । ପେପ୍‌ସି ବୋତଲକୁ ଛବିରେ ବଢ଼େଇ ଦଉଛି କରିନା କାପୁର୍, ହେଲେ ସେ ନିଜେ ହାତରେ ବଢ଼େଇବ ପେପ୍‌ସି । ସମୟର ସ୍ରୋତରେ ହିଁ ଭାସିବାକୁ ପଡ଼ିବ । ତାକୁ ବଦଳିବାକୁ ପଡ଼ିବ । ତା ବାପା ନ ବଦଳିଲେ ନାହିଁ । ସେ ଘରୁ ପାଦ କାଢ଼ିବ ।

ଏବଂ, ତା ପରେ ଦୃଶ୍ୟର ପରିବର୍ତ୍ତନ ଛକ ଉପରେ । ବ୍ୟାଙ୍କରୁ ଲୋନ୍ ଆସିଲା । ପକ୍କା ଦୋକାନ ଘର, ଘର ଭିତରେ ବାହାରେ ବିଜୁଳି ପଙ୍ଖା, ପେପ୍‌ସି କୋଲା ଠାରୁ ଫାଣ୍ଟା, ରୁଚି ରୁ ଏଭେରେଷ୍ଟ୍ ମସଲା । ଦୋକାନ ପୁନଃ ଉଦ୍‌ଘାଟନ ଦିନ ସବୁ ଜିନିଷରେ କିଛି ନା କିଛି ଫ୍ରି । ଦୋକାନ ଉପରେ ହୋଡ଼ିଂ – ଲକ୍ଷ୍ମୀ ଭେରାଇଟି ଆଣ୍ଡ ଡେଲି ନିଡ୍‌ସ ।

ରୁବି ନିଜେ ଉପସ୍ଥିତ ରହି ପ୍ରତ୍ୟେକ ଗ୍ରାହକଙ୍କର ବରାଦକୁ ହସି ହସି ବାହାର କରିଦିଏ, ଯଦି ନଥାଏ ଅତିନମ୍ର ଭାବେ ଦୁଇ ଦିନ ପରେ ଆସିବାପାଇଁ ଅନୁରୋଧ କରେ । ଶରତ ମୁହାଁ ଗରାଖମାନେ ଏବେ ନବା ଆଡ଼କୁ ମୁହାଁଇଲେ । ଦୁଇଟା ବର୍ଷରେ ଦୋକାନରେ ଦୁଇଟା ପିଲା ରହିଲେ କେବଳ ବିକ୍ରି କରିବାପାଇଁ ।

ରୁବି ନ ଫେରିବାର ଚର୍ଚ୍ଚା ଏବେ ଖୋଲାଖୋଲି ଚାଲିଛି । ଶରତ ଭେରାଇଟି ଷ୍ଟୋର୍ କିମ୍ବା ରଘୁ ଚା'ଦୋକାନ ଭିତରେ ଏହା ଆଉ ସୀମାବଦ୍ଧ ନାହିଁ । ପଣ୍ଡିତେ ରାସ୍ତା ମୁହାଁ ଚେୟାର୍ ପକେଇ ଭାଷଣ ଆରମ୍ଭ କରିଛନ୍ତି । ଏପଟେ ଯୁବଗୋଷ୍ଠୀ ଆକସ୍ମିକ ଭାବେ ମ୍ରିୟମାଣ ହେବା ଭଳି ଲାଗୁଛନ୍ତି । କିଛି ଗୋଟାଏ ଅମୂଲ୍ୟ ଚିଜ ହଜିଗଲା ଭଳି ଅନୁଭବ ଓଦା କରିଦେଉଛି ସେମାନଙ୍କୁ ।

ଶରତ ପାଖରେ ସବୁ ମିଳେ । କିନ୍ତୁ ନବା ଦୋକାନରେ ଯାହା ମିଳେ ତାହା ଶରତ ପାଖରେ ନାହିଁ । ଏମିତି ପ୍ରାପ୍ତି, ଅପ୍ରାପ୍ତି ଭିତରେ ଛକ ବେଷ୍ଟିତ ସବୁ ଗ୍ରାହକ ନବା ଦୋକାନରେ ଥରେ ଦୁଇଥର ମୁହଁ ମାରିଲେଣି ।

କିନ୍ତୁ ନବଘନ ଆଖିରୁ ନିଦ ହଜିଯାଇଛି । ଦଶ ଦିନ ହୋଇଗଲା କିଛି ଖବର ନାହିଁ । ଜିନିଷ ପତ୍ରରେ ଭର୍ତ୍ତି ତା ଦୋକାନ କେମିତି ଖାଁ ଖାଁ ଲାଗୁଛି । ସେ ଆଉ ଦୋକାନ ଭିତରକୁ ପଶୁନାହିଁ । ରାତି ନ'ଟା ହେଲାଣି, କଟକର ଶେଷ ବସ୍ ଏଇବାଟେ ଗଲାଣି କେତେବେଳୁ, ତଥାପି ନବାର ଆଖିରେ ପଲକ ପଡୁନି । କାନ୍ଦ କାନ୍ଦ ଆଖିରେ ସେ ଦେଖୁଛି ପ୍ରତ୍ୟେକ ବାଟୋଇଙ୍କୁ । ପ୍ରଶ୍ନିଳ ତା'ର ଆଖି, ଥର ଥର ଥରୁଥିବା ଓଠ କ'ଣ କହିବ, କହିବ ନାହିଁ ଜାଣିପାରୁନି । ତଥାପି ତା'ର ମନ ଦୃଢ଼ଅଛି । ତା'ର ରକ୍ତ ଉପରେ ଅଖଣ୍ଡ ଭରସା ଅଛି, ବିଶ୍ୱାସ ଅଛି । ସେ ନିଶ୍ଚୟ ଫେରିବ ।

ଏତିକି ବେଳେ ଦୋକାନ ଭିତରୁ ପାଟି ଶୁଭିଲା – ନବା'ଇ, ଶୀଘ୍ର ଆସ କଟକରୁ ରୁବିନାନୀର ଫୋନ୍ ଆସିଛି ।

❑

(ବନଫୁଲ : ମହାପୂଜା ଅକ୍ଟୋବର ୨୦୦୮)

# ଦାଗ

ପ୍ରଫେସର ରାଓ୍ୱତ୍ ଅତି ଚତୁରତାର ସହ ପୁଣିଥରେ ସେହି ପ୍ରଶ୍ନ ଉଠେଇଲେ । ବୋଧହୁଏ ସନ୍ତୋଷଜନକ ଉତ୍ତର ସେ ଏ ପର୍ଯ୍ୟନ୍ତ ପାଇନାହାନ୍ତି କିମ୍ବା ଅଧିକ ତଥ୍ୟ ଜାଣିବାପାଇଁ ଚେଷ୍ଟାକରୁଛନ୍ତି ।

'ୱାଜ୍ ଦ୍ୟାଟ୍ ମ୍ୟାନ୍ ଟୋଟାଲି ମ୍ୟାଡ୍'? ବାରମ୍ବାର ଯେଉଁ ପ୍ରଶ୍ନରୁ ମୁକ୍ତି ଚାହୁଁଛନ୍ତି କଲେଜର ଅଧ୍ୟକ୍ଷ, ବରିଷ୍ଠ କର୍ମଚାରୀ ତଥା ପରିଚାଳନା କମିଟିର ସଦସ୍ୟମାନେ, ପ୍ରଫେସର ରାଓ୍ୱତ୍ ବୁଲେଇ ବଙ୍କେଇ ପୁଣି ସେହି ବିନ୍ଦୁକୁ ସ୍ପର୍ଶ କରୁଛନ୍ତି ।

କଲେଜ ପରିଚାଳନା ତଥା ସଫଳତା ବିଫଳତା ସମ୍ବନ୍ଧୀୟ ଅନ୍ୟାନ୍ୟ ବହୁ ପ୍ରକାର ତଥ୍ୟ ଉପସ୍ଥାପନ କରାଯାଉଥିଲେ ସୁଦ୍ଧା, ଗଣିତ ବିଭାଗ ପ୍ରତି ପ୍ରଫେସରଙ୍କର ଆଗ୍ରହ ଅଧିକ । ବିନା ଅଧ୍ୟାପକରେ ଏହି ବିଭାଗ ଚାଲିଛି କେମିତି? ଏବଂ, କିଛିବର୍ଷ ଯେଉଁ ଅଧ୍ୟାପକ ଏଠାରେ କାର୍ଯ୍ୟ କରିଥିଲେ ବୋଲି ରେକର୍ଡ଼ରେ ଦର୍ଶାଯାଇଛି, ସେ ଏଠାରୁ ଛାଡ଼ି ପଳାଇଲେ କାହିଁକି?

ବିରକ୍ତିକର, ଅଶ୍ୱସ୍ତିକର ଲାଗିଲେ ମଧ୍ୟ ପ୍ରଫେସରଙ୍କର ସମସ୍ତ ପ୍ରଶ୍ନର ଉତ୍ତର କର୍ତ୍ତୃପକ୍ଷ ଦେବାପାଇଁ ବାଧ୍ୟ । କାରଣ, ୟୁ.ଜି.ସି. ପ୍ରେରିତ ଉଚ୍ଚ କ୍ଷମତା ସମ୍ପନ୍ନ ଦୁଇଜଣିଆ ସଦସ୍ୟ ବିଶିଷ୍ଟ ଗୋଷ୍ଠୀର ପ୍ରଫେସର ରାଓ୍ୱତ୍ ହେଲେ ମୁଖ୍ୟ । ତାଙ୍କ ରିପୋର୍ଟ ଉପରେ ନିର୍ଭର କରୁଛି, କଲେଜକୁ ଭବିଷ୍ୟତରେ କେତେଟଙ୍କା ଅନୁଦାନ ମିଳିବ । ଅନୁଦାନ ମିଳିଲେ ଶ୍ରେଣୀକକ୍ଷ, ହଷ୍ଟେଲ, ସୁରକ୍ଷାପାଇଁ ପ୍ରାଚୀର ନିର୍ମାଣ କରାଯିବ । ବିଜ୍ଞାନ ବିଭାଗର ପରୀକ୍ଷାଗାରରେ ନୂଆ ନୂଆ ଯନ୍ତ୍ରପାତି ତଥା ପାଠାଗାର ପରିପୁଷ୍ଟିପାଇଁ ବହି କିଣାଯିବ । କଲେଜର ଚେହେରା ବଦଳିଯିବ ।

ସବୁ ନିର୍ଭର କରୁଛି ପ୍ରଫେସର ରାଓ୍ୱତ କମିଟି ରିପୋର୍ଟ ଉପରେ । ତେଣୁ କଲେଜର ସମସ୍ତ କର୍ମଚାରୀ, ଅଧ୍ୟାପକ, ପରିଚାଳନା କମିଟିର ସଦସ୍ୟବୃନ୍ଦ, ଏପରିକି ସ୍ଥାନୀୟ କିତିପୟ ବୁଦ୍ଧିଜୀବୀ ମଧ୍ୟ କଲେଜରେ ଉପସ୍ଥିତ ରହି ପରିଦର୍ଶନ କାର୍ଯ୍ୟଟି

ଯେପରି ନିର୍ବିଘ୍ନରେ ସମାହିତ ହୁଏ । ସେଥିପ୍ରତି ଯତ୍ନବାନ । ଛାତ୍ରଛାତ୍ରୀମାନେ ପରିଦର୍ଶକ ଦ୍ୱୟଙ୍କ ସମ୍ମୁଖରେ ପୂର୍ବ ନିର୍ଦ୍ଧାରିତ ପ୍ରଶ୍ନଗୁଡ଼ିକର ଅତି ଚମତ୍କାର ଉତ୍ତର ଦେଇଛନ୍ତି । ଉକ୍ତ କଲେଜର ଇତିହାସ ଯେତିକି ମହାନ, ସଂସ୍କୃତି ପରମ୍ପରାରେ ସେତିକି ସମୃଦ୍ଧ । କେବଳ ଏ ପଞ୍ଚାୟତ ନୁହେଁ, ଏହି ଉପଖଣ୍ଡରେ ଏକ ଆଲୋକ ବର୍ତ୍ତିକା । ଉକ୍ତ ଧାରଣାକୁ ଅନ୍ତେ ବହୁତେ ସମସ୍ତେ ଉପସ୍ଥାପନା କରୁଛନ୍ତି ।

କିନ୍ତୁ, ପ୍ରଫେସର ଅଟକି ଯାଉଛନ୍ତି ସେହି ଗୋଟିଏ ବିନ୍ଦୁରେ । 'ଆପଣମାନେ କହୁଛନ୍ତି, ଅଧ୍ୟାପକ ଜଣକ ମେଧାବୀ ଥିଲେ । ତାଙ୍କର ସାର୍ଟିଫିକେଟ୍ କପି ମଧ୍ୟ ସେକଥା କହୁଛି । ଅଥଚ ଶ୍ରେଣୀ କକ୍ଷରେ ଠିକ୍ ଭାବରେ ସେ ଶିକ୍ଷାଦାନ କରି ନପାରିବାରୁ ତାଙ୍କୁ ପରିଚାଳନା କମିଟି ବହିଷ୍କାର କରିଛି । ମୁଁ ଠିକ୍ କହୁଛି ତ?' ସମବେତ ବୁଦ୍ଧିଜୀବୀଙ୍କୁ ପ୍ରଫେସର ରାଉତ ପ୍ରଶ୍ନ କଲେ ।

ଅସନ୍ତୁଷ୍ଟ ହେଲେ ମଧ୍ୟ ପରିଚାଳନା କମିଟିର ସଭାପତି ଏକ ମ୍ଳାନହସ ହସିଲେ ଏବଂ କଲେଜର ଅଧ୍ୟକ୍ଷଙ୍କୁ ଏକ ଅର୍ଥପୂର୍ଣ୍ଣ ଚାହାଣୀରେ ନୀରବ ନିର୍ଦ୍ଦେଶ ଦେଲେ ।

'ସାର୍, ୟୁ ଆର୍ ରାଇଟ୍ ସାର୍ ।' ଅଧ୍ୟକ୍ଷ, ପ୍ରଫେସରଙ୍କର ସନ୍ଦେହ ମୋଚନପାଇଁ ଚେଷ୍ଟାକଲେ । 'ପାରିବାରିକ ସମସ୍ୟା ହେତୁ ସେହି ମେଧାବୀ ଅଧ୍ୟାପକଙ୍କର ମାନସିକ ବିକୃତି ଆରମ୍ଭ ହୋଇଥିଲା, ସାର୍ ।'

'ଆଜ୍ଞା, ଆମ୍ଭେ ବହୁତ ଚେଷ୍ଟାକଲୁ ।' ପରିଚାଳନା କମିଟି ସଭାପତି ଅଧ୍ୟକ୍ଷଙ୍କ ଠାରୁ କଥା ଛଡ଼େଇଲେ । 'କିନ୍ତୁ ତାଙ୍କର ଭାଗ୍ୟ ଛୋଟ । ପାଗଳ ହୋଇ କିଛି ଦିନ ବୁଲିଲେ । ତା'ପରେ ଜାତୀୟ ରାଜପଥରେ ଦିନେ ତାଙ୍କ ଉପରେ ଟ୍ରକ୍ ମାଡ଼ିଗଲା । ତା କଥା ଛାଡ଼ନ୍ତୁ ଆଜ୍ଞା, ହତଭାଗାଟାଏ । ମୋର ସମ୍ପର୍କୀୟ ହେବ । ହେଲେ ମୁଁ କଣ କିଛି କରିପାରିଲି ? ଆଜ୍ଞା, ଆମର ଗତ ତିନିବର୍ଷର ଫଳାଫଳ ଦେଖନ୍ତୁ । ଅଶୀ ପରସେଣ୍ଟ ପାସ୍ । ଫାଷ୍ଟ ଡିଭିଜନ୍‌ରେ ଅଧାଅଧି ପିଲା । ଏ ଅଞ୍ଚଳରେ ଏମିତିକା କଲେଜ କାହିଁ? ଆପଣ ରେକର୍ଡ଼ ଦେଖୁନାହାନ୍ତି ।

ପ୍ରଫେସର ରାଉତଙ୍କୁ ପ୍ରକାରାନ୍ତେ ସଭାପତି ଜଣେଇ ଦେଲେ, ଗଲାକଥାରେ ମୁଣ୍ଡ ପୂରାଇ ଲାଭ ନାହିଁ । ବର୍ତ୍ତମାନ କଥା ଚିନ୍ତା କରନ୍ତୁ ।

ପ୍ରଫେସର, ସିଧାସଳଖ ସଭାପତିଙ୍କର ବିବ୍ରତ ମସ୍ତକ ଚାଳନାକୁ ଲକ୍ଷ୍ୟକଲେ । ତା'ପରେ ପଛକୁ ଆଉଜି ମୁଣ୍ଡ ହଲେଇଲେ ଏବଂ ଚୁପ୍ ରହିଲେ । ଆଶ୍ୱସ୍ତ ହେଲେ ସମସ୍ତେ । ହୃଦ୍‌ବୋଧ ହେଲା, ଗଣିତ ବିଭାଗ କଥା ଆଉ ଉଠିବ ନାହିଁ । ତାଙ୍କ ନିରବତା ମୂକ କରିଦେଲା ଅନ୍ୟମାନଙ୍କୁ ମଧ୍ୟ । ପ୍ରାୟ ଦୁଇ ମିନିଟ ପରେ ପ୍ରଫେସର ଖୁଁ ଖୁଁ ହେଲେ । ତତ୍‌କ୍ଷଣାତ୍ ବିସ୍ଫାରିତ ଆଖିଗୁଡ଼ିକ କେନ୍ଦ୍ରୀଭୂତ ହେଲା ତାଙ୍କୁ କଳା

ଚଷମା ଉପରେ । ବେଶୀ ବୟସ ନ ହେଲେ ବି, ଚଷମାଟି ତାଙ୍କ ମୁହଁକୁ ବେଶ୍ ମାନୁଥିଲା । ଡାହାଣ ହାତରେ ଚଷମାର ଫ୍ରେମ୍‌କୁ ଟିକେ ହଲେଇ ଦେଇ ତାହା ଯଥାସ୍ଥାନରେ ରହିଥିବାର ଜାଣି, ପରବର୍ତ୍ତୀ ପ୍ରଶ୍ନଟି ପଚାରିଲେ – 'ପ୍ରକୃତରେ ସେହି ଅଧ୍ୟାପକ ଜଣକ କ'ଣ ପାଗଳ ଥିଲେ?'

କହିବା ବାହୁଲ୍ୟ, ସମବେତ ବୁଦ୍ଧିଜୀବୀମାନେ ଧରିନେଲେ, ହୁଏତ ଏହି ପ୍ରଫେସର ଏକ ପାଗଳ, ନଚେତ୍, ଏପରି ଏକ ବିବାଦମାନ ପ୍ରଶ୍ନ ଉଠାଇ ବେଶ୍ କିଛି ମୋଟା ଅଙ୍କର ମାଲ୍ ଝଡ଼େଇବା ଚକ୍‌କର୍‌ରେ ଅଛି ।

ଯେଉଁ ପ୍ରଶ୍ନରେ ଅଟକି ଗଲେ ପ୍ରଫେସର ରାଓ୍ୱତ, ତାହାର ଠିକ୍ ଉତ୍ତର ସେ ପାଇବେ କି ନାଁ ଜଣାନାହିଁ । କିନ୍ତୁ, ଆମର ପାଠକମାନଙ୍କପାଇଁ ସେହି ପାଗଳ ଅଧ୍ୟାପକ ମଥୁରାନନ୍ଦଙ୍କ ବିଷୟରେ ଜାଣିବା ନିହାତି ଜରୁରୀ, ତାଙ୍କ ଅତୀତ, ବର୍ତ୍ତମାନ ଏବଂ ଧୂମାଭ ଭବିଷ୍ୟତ ସମ୍ପର୍କରେ... ।

କେବଳ ରାଘବପୁର ପଞ୍ଚାୟତ ନୁହେଁ, ଆଖପାଖ ପାଞ୍ଚ/ସାତଟି ପଞ୍ଚାୟତରେ ମଥୁରାନନ୍ଦକୁ ସମସ୍ତେ ଜାଣନ୍ତି । ତା ନାଁ ଶୁଣିବା ମାତ୍ରେ ଆଖି ସାମ୍ନାରେ ଆଙ୍କିହୋଇଯାଏ ଛ'ଫୁଟ ଉଚ୍ଚ, ଘଞ୍ଚକେଶ ଏବଂ ଦାଢ଼ିସଂଯୁକ୍ତ ହସହସ ସୁଦର୍ଶନ ଚେହେରା । ବେଶଭୂଷା, ପରିପାଟୀରୁ ଯେ କେହି କହିବ – ସମ୍ଭ୍ରାନ୍ତ, ରୁଚିସମ୍ପନ୍ନ, ଭଦ୍ରଲୋକ ।

ସକାଳ ସାତଟାରେ ତାକୁ ଆପଣ ଦେଖିପାରିବେ କଲେଜ ଛକରେ । ବର୍ଷା–ଶୀତ–ଖରା କିମ୍ବା ଧୂମାଳ–ବାତ୍ୟା, ସେ ନିଶ୍ଚୟ ଛକ ପାଖ ବରଗଛ ପାଖରେ ଠିଆହୋଇ ଉପରକୁ ଚାହିଁଥିବେ । ଦାର୍ଶନିକ ସୁଲଭ ଭଙ୍ଗୀ ତାକୁ ନିଆରା କରିଦିଏ ଅନ୍ୟମାନଙ୍କ ଠାରୁ । ଦୀର୍ଘ ସମୟ ଉପରକୁ ଚାହିଁବା ପରେ ସେ ଯେତେବେଳେ ଆଖି ତଳକୁ କରନ୍ତି, ଓଠରେ ଫୁଟିଉଠେ ଏକ ଚମକ । ସାଇକେଲ, ମଟର–ସାଇକେଲରେ ଯାଉଥିବା ଯାତ୍ରୀମାନଙ୍କୁ ଅଟକାଇବାପାଇଁ ଚେଷ୍ଟା କରନ୍ତି । ଚିହ୍ନିଥିବା ଲୋକମାନେ ଗାଡ଼ି ବଙ୍କେଇ ଦ୍ରୁତଗତିରେ ସେ ସ୍ଥାନ ଅତିକ୍ରମ କରିଯାନ୍ତି କିନ୍ତୁ ଅଜଣା ବାଟୋଇ ବା ଆରୋହୀ ଜଣକ ଅଟକିଲେ, ସାଇକେଲ ହାଣ୍ଡେଲ ନ ହେଲେ ତାଙ୍କ ହାତ ଧରି ପକେଇବେ ଖପକରି । ତା ପରେ ଇଂରାଜୀରେ ଆରମ୍ଭ କରିବ 'ଇଫ୍ ୟୁ ଡୋଣ୍ଟ ମାଇଣ୍ଡ... କ୍ୟାନ୍ ୟୁ ଗିଭ୍ ମିଁ ଓ୍ୱାନ୍ ରୁପି, ପ୍ଲିଜ୍ ।'

ଯଦି କୌଣସି ଦାତା କୌତୁହଳ କିମ୍ବା ଅନୁକମ୍ପା ହେତୁ ଟଙ୍କାଟିଏ ବଢ଼େଇଲେ, ତା ପରେ ସେ ପୁଣି ଇଂଲିସ୍ ଆରମ୍ଭ କରିବ – 'ସାର୍, ପ୍ଲିଜ୍ ଗିଭ୍ ମି ଫାଇଭ୍ ମିନିଟ୍‌ସ ଟାଇମ୍ । ଆଇ ନୋ ଇଓର୍ ଟାଇମ୍ ଇଜ୍ ପ୍ରେସିୟସ୍...' ଏବଂ ତା ପରେ ଗୋଟିଏ

କାଠି ସାହାଯ୍ୟରେ ବାଲି ଉପରେ ଗଣିତର ସୂତ୍ର ଲେଖିବା ଆରମ୍ଭ କରିଦେବେ । ଅତି ନିର୍ଭୁଲ ଭାବେ ସୂତ୍ର ଲେଖିବାରେ ଏମିତି ମଜ୍ଜିଯିବେ ଯେ କେତେବେଳେ ଦାତାଜଣକ ସେଠୁ ଅନ୍ତର୍ଦ୍ଧାନ ହୋଇଯାନ୍ତି, ଜାଣିପାରିବେ ନାହିଁ ।

ପ୍ରାୟ ପନ୍ଦରରୁ କୋଡ଼ିଏ ଜଣ ବାଟୋଇ ତାଙ୍କ ପାଖରେ ଅଟକନ୍ତି । ଚିହ୍ନା ଅଚିହ୍ନା ଭେଦ ନାହିଁ । ଆଉ କୌତୁହଳର କଥା ହେଲା ଯଦି କେହି ଦୟାଳୁ ଦୁଇଟଙ୍କା କିମ୍ବା ପାଞ୍ଚ ଟଙ୍କାର ନୋଟ୍/ମୁଦ୍ରା ବଢ଼େଇଲେ ସେ ସଙ୍ଗେ ସଙ୍ଗେ ହାତଯୋଡ଼ି ନମ୍ରତା ପ୍ରକାଶ କରିବେ – ନୋ ସାର୍ ଓନ୍‌ଲି ଓ୍ୱାନ୍ ରୁପି... । ଖାସ୍ ଏଇଥିପାଇଁ କେହି କେହି ତାକୁ ଭଦ୍ରପାଗଳ ବୋଲି ନାଁ ଦେଇଛନ୍ତି । କିନ୍ତୁ ଅତି ପରିଚିତ ନାଁଟି 'ପ୍ରଫେସର ପାଗଳ' । କେହି କେହି କେବଳ ପ୍ରଫେସର ବୋଲି ମଧ୍ୟ ଡାକନ୍ତି ଏବଂ ଗଲାବେଳେ ସମବେଦନାରେ ଚୁ ଚୁ ଶବ୍ଦ କରି ଉପରବାଲାକୁ ଗାଳିଦିଅନ୍ତି ।

ବାଟୋଇଙ୍କର ସମବେଦନା, ବକ୍ରୋକ୍ତି, କଟୁକ୍ତି ତାଙ୍କ କାର୍ଯ୍ୟରେ କିଛି ବାଧା ସୃଷ୍ଟିକରିପାରେ ନାହିଁ । ଗୁଣୁଗୁଣୁ ହୋଇ ଗାଣିତିକ ସମସ୍ୟା ସମାଧାନରେ ସେ ବ୍ୟସ୍ତଥାନ୍ତି । ଆକାଶର ପିଠିରେ, ତର୍ଜନୀକୁ କଲମ କରି ସେ କଷିଯାନ୍ତି ପୃଷ୍ଠାପରେ ପୃଷ୍ଠା, କେହି ଦର୍ଶକ ମିଳନ୍ତୁ ବା ନ ମିଳନ୍ତୁ । ଏ ଅଞ୍ଚଳପାଇଁ ଏକ ଯନ୍ତ୍ରଣାକ୍ତ ଘଟଣା । ସେ ଥିଲେ ତାଙ୍କ ଅଞ୍ଚଳର ଉଦାହରଣ ଦେବା ଭଳି ମେଧାବୀ ଛାତ୍ର । ବିନା ଟ୍ୟୁସନ୍‌ରେ ପ୍ରଥମରୁ ପି.ଜି. ଯାଏଁ ଅଶୀ ପର୍‌ସେଣ୍ଟରୁ କମ୍ ନାହିଁ କେଉଁଥିରେ । ତୃତୀୟ ଶ୍ରେଣୀ ବୃତ୍ତି ଠାରୁ ଜାତୀୟ ମେଧାବୃତ୍ତି ପାଇବାରେ ସେ ରାଘବପୁର ପଞ୍ଚାୟତର ଏକ ବିରଳ ବ୍ୟତିକ୍ରମ ।

ନିମ୍ନ ମଧ୍ୟବିତ୍ତ ପରିବାର । ବାପା ଚାଷୀ । ପ୍ରଥମରୁ ସେ ଶିଖିଛନ୍ତି କେମିତି ହଳେ ସାର୍ଟ ପ୍ୟାଣ୍ଟରେ ତମାମ ବର୍ଷକ ଚଳିବାକୁ ହୁଏ । ଘରେ ସବୁବେଳେ ନିଅଣ୍ଟ । ତଳେ ଦୁଇ ଭଉଣୀ ଏବଂ ଗୋଟିଏ ଭାଇ । କଲେଜ ଯିବା ସମୟରୁ ହିଁ ଟ୍ୟୁସନ୍ କରିଛନ୍ତି । ନିଜ ଖର୍ଚ୍ଚ ସହ ବାପାଙ୍କୁ ମଧ୍ୟ ସାହାଯ୍ୟ କରିଛନ୍ତି, ଅନେକ ସମୟରେ ବାପାଙ୍କୁ ଭରସା ଦେଇଛନ୍ତି – ଚାକିରି ନ ମିଳିଲେ ନାହିଁ, ଟ୍ୟୁସନ୍‌ରେ ଯେତିକି ପଇସା, ଆମର ଘର ଆରାମରେ ଚଳିବ । ମୁଁ ଗୋଟାଏ କୋଚିଂ ସେଣ୍ଟର୍ ଖୋଲିବି, ପାଠପଢ଼ା ସରିଯାଉ । ଭୁବନେଶ୍ୱରରେ ପରା ଟ୍ୟୁସନ୍ କରି, କୋଚିଂ ସେଣ୍ଟର୍ କରି ଲୋକ ଆଜି କୋଟିପତି, ମୋ'ର ତ ଭଲ କ୍ୟାରିୟର୍ ଅଛି, ଏଇଠି ଭୁବନେଶ୍ୱରରେ ରହିବି, ଦେଖେଇଦେବି, ଆକୁଳି ରାଉତର ପୁଅ ବି କିଛି କରିପାରେ ।

ଆଖିରେ ଆଖିଏ ସ୍ୱପ୍ନ । ମନରେ ଅମାପ ଯୋଜନା । ନିମ୍ନ ମଧ୍ୟବିତ୍ତ ପରିବାରରେ ଏହା ହିଁ ତ ବିଶେଷତ୍ୱ । ମଥୁରା ସେଥିରୁ ବାଦ ପଡ଼ନ୍ତେ ବା କେମିତି ?

ସେ ଦିନ ଘଟିଲା ଭିନ୍ନ ଏକ ଘଟଣା । ରାଘବପୁର ସରପଞ୍ଚ ଦିବାକର ମହାନ୍ତି ସକାଳୁ ସକାଳୁ ଆକୁଳି ରାଉତଙ୍କ ଘରେ ହାଜର । ଆକୁଳି ବାବୁ ସମେତ ସାହି ପଡ଼ିଶା ମଧ୍ୟ ଏପରି ବିରଳ ଘଟଣା ଦେଖି ତାଜୁବ । ପରମ୍ପରା ଅନୁସାରେ ସମସ୍ୟା ଜୁଡ୍ଡୁବୁଡ୍ଡୁ ଆକୁଳି ରାଉତ ଭଳି ଅଭାବି ମଣିଷମାନେ ଦିବାକର ବାବୁଙ୍କର ପିଣ୍ଡା ତଳେ ରାତି ପାହିଲେ ନୁଙ୍ଗୁରୁ ପୁଙ୍ଗୁରୁ ହେବା କଥା । ବିପିଏଲ ଚାଉଳ, ଇନ୍ଦିରା ଆବାସ ଠାରୁ ଆରମ୍ଭ କରି ବାର୍ଦ୍ଧକ୍ୟ ଭତ୍ତା ପର୍ଯ୍ୟନ୍ତ ଲୋକହିତକାରୀ କାର୍ଯ୍ୟକ୍ରମରୁ କାଣିଚାଏ ଲାଭପାଇବା କେଉଁ ଅଭାବି ନ ଚାହେଁ ? ଅବଶ୍ୟ ଆକୁଳି ରାଉତ ଭଳି ମେହେନତୀ ମଣିଷମାନେ ଖୁବ୍ କ୍ୱଚିତ୍ ସେଠାକୁ ଯା'ନ୍ତି । ତାଙ୍କର ତ ରାତିପାହେ ବିଲରେ, ତରା ଉଠେ ସେହି ବିଲରେ, ବି.ପି.ଏଲ. ସ୍ୱାଦ ଚାଖିବାକୁ ଫୁର୍‌ସତ୍ କାହିଁ ?

ଆକୁଳି ବାବୁ ସର୍ବାଧିକ ଆଶ୍ଚର୍ଯ୍ୟ ହେଲେ ଯେତେବେଳେ ସ୍ୱୟଂ ସରପଞ୍ଚ ମହୋଦୟ ହାତଯୋଡ଼ି ତାଙ୍କୁ ପ୍ରାର୍ଥନା କଲେ - ମୁଁ ଯାହା ମାଗିବି ମନା କରିବନି ଆକୁଳି ଭାଇ ।

ଏଥର ଆକୁଳି ବାବୁଙ୍କର ହୋସ୍ ଉଡ଼ିବା ଅବସ୍ଥା । ଏବେ ଭୋଟ୍ ବେଳ ନୁହେଁ । ନେତା ହାତଯୋଡ଼ି ଭିକ୍ଷାମାଗିବା ମୁଦ୍ରାର ରହସ୍ୟ ସେ ବୁଝିପାରିଲେ ନାହିଁ । ତାଙ୍କୁ ଲାଗିଲା କିଛି ଗୋଟାଏ ଆଚମ୍ବିତ କଥା ଘଟିବାକୁ ଯାଉଛି । ସେ ଆଁ କରି ଆଖି ଡ଼ବଡ଼ବ କରି ଚାହିଁଲେ ସରପଞ୍ଚଙ୍କୁ ।

'ମଥୁରୀକୁ ମତେ ଦିଅ । ଏ ସମାଜ ତା ଠାରୁ ଅନେକ କିଛି ଆଶା କରୁଛି ।' ସରପଞ୍ଚ ମହୋଦୟ ଆକୁଳି ବାବୁଙ୍କ ହାତଧରି ଏକରକମ ଅଳିକଲେ ।

ସେ ଦିନ ଗଣେଶ ଚତୁର୍ଥୀ ହୋଇଥିବାରୁ ମଥୁରା ମଧ୍ୟ ଘରେ ଥାଏ । ଦାଣ୍ଡ ପିଣ୍ଡାରେ ଘଟୁଥିବା ଘଟଣାକୁ ଘର ଭିତରୁ ମଥୁରା ସମେତ ଘରର ସମସ୍ତ ସଦସ୍ୟ ଦେଖୁଥିଲେ ସୁଦ୍ଧା, ଏ କଥାର ପ୍ରହେଳି ବୁଝିବାକୁ କେହି ହେଲେ ସମର୍ଥ ହେଲେ ନାହିଁ । ରାଜନୀତିଆଙ୍କ କଥା ବୁଝିବା ସତରେ ଏତେ ସହଜ !

'କଲେଜଟିଏ ଏଇବର୍ଷ ଆମ ପଞ୍ଚାୟତରେ ମୁଁ ଖୋଲୁଛି ।' ଦିବାକାର ବାବୁ ଗୁମର ଫିଟେଇଲେ । 'ମଥୁରୀ ଆମ ଅଞ୍ଚଳର ମଣି । ତା ଭଳି ପିଲା ଥାଉ ଥାଉ ମୁଁ ଆଉ କୁଆଡ଼େ ଯାଇଥାନ୍ତି? ଗଣିତ ବିଭାଗପାଇଁ ତା ଠାରୁ ଆଉ ଭଲ ଅଧ୍ୟାପକ କେଉଁଠି ମିଳିବେ ?'

ଘର ଭିତରେ କିଛି ସମୟ ନୀରବତା ଏବଂ ପରେ ଗୁଞ୍ଜରଣ ସୃଷ୍ଟିହେଲା । ମଥୁରା ରୋକ୍‌ଠୋକ୍ ସେହି ଘର ଭିତରେ ହିଁ ଶୁଣେଇ ଦେଲା - ଏମିତିକା କଲେଜ୍‌ରେ ରହିଲେ, ଯାହାର ଘର ନାହିଁ କି ପିଲା ନାହିଁ, ଆମ ଘର ଚଳିବ କେମିତି? ସେମାନେ

କେତେ ଦରମା ଦେବେ କି? ଘର ଭିତରର ଆଲୋଚନା ବାହାରାକୁ ଶୁଭୁଥାଏ । ପିଣ୍ଡାରେ ସପ ଉପରେ ସାମ୍ନାସାମ୍ନି ବସିଥିଲେ ଆକୁଳି ବାବୁ ଏବଂ ଦିବାକର ବାବୁ । ଦିବାକର ବାବୁ ଅଧ୍ୟାପକ ଚାକିରିର ଦୁର୍ଲଭତା, ସ୍ୱତନ୍ତ୍ରତା ଏବଂ ସମ୍ମାନବୋଧ ଉପରେ ସଂକ୍ଷିପ୍ତ ଭାଷଣ ଦେଉଥାନ୍ତି ଆକୁଳି ବାବୁଙ୍କୁ । ସେ ଜାଣିଛନ୍ତି, ବାପର କଥା ଏଠି ପୁଅ କାଟିପାରିବ ନାହିଁ । ତେଣୁ ମଥୁରାକୁ ସିଧାସିଧା ନକହି ତା ବାପକୁ ଧରିଲେ କାମଟି ସୁରୁଖୁରୁରେ ହୋଇପାରିବ ବୋଲି ତାଙ୍କର ହୃଦ୍‌ବୋଧ । 'ମୋ ଶଳା ଶରତ, ଥିଲା ହଳଦିଆ ପଞ୍ଚାୟତ କଲେଜ୍‌ରେ, ତିନିଶ ଟଙ୍କା ମାସକୁ ପାଉଥିଲା । ଏବେ ଫୁଲ୍ ଦରମା, ମାସକୁ ତିରିଶ ହଜାର । ଗାଁରେ କୋଠା, ଜମିବାଡ଼ି, ଦି ଦିଟା ଝିଅଙ୍କୁ ପଢ଼ଉଛି ଇଂଜିନିୟିରିଂ । ମଥୁରୀକୁ ମୁଁ ସେଇଥିପାଇଁ ବାଛିଲି । ତୁମର ଭାଗ୍ୟ ବଦଳିଯିବ ବର୍ଷ କେଇଟା ସବୁର୍ କରିଯା ।

ଆକୁଳି ବାବୁ ଗୁମ୍ ଖାଇଲେ । ତା ପରେ ଭାରାକ୍ରାନ୍ତ ମୁଣ୍ଡକୁ ଉଠେଇ କହିଲେ – ମୁଁ ଟିକେ ମଥୁରି ସହ ଆଲୋଚନା କରେ । ସେ କ'ଣ କହୁଛି ଦେଖେ ।

ଦିବାକାର ବାବୁ ଦେଖିଲେ, କଥାଟାକୁ ଏମିତି ଏଇଠି ଛାଡ଼ିଗଲେ, ହୁଏତ ମଥୁରି ହାତଛଡ଼ା ହୋଇଯାଇପାରେ । ତେଣୁ ସେ ସବୁ ପ୍ରକାର ବୁଦ୍ଧିବିଦ୍ୟା ଖଟେଇଲେ – ବୁଝିଲ ଆକୁଳି ଭାଇ, ମଥୁରି ତୁମ ପୁଅଟି! ତୁମ କଥାରୁ ସେ ବାଦ୍‌ପଡ଼ିବ? ଆଜି ପର୍ଯ୍ୟନ୍ତ ଏମିତି ହେଲାଣି? ହଁ, ଆଉ ଗୋଟିଏ କଥା ଶୁଣ । କଥାଟି ଗୋପନୀୟ ହୋଇଥିବାରୁ ଆକୁଳି ବାବୁଙ୍କ ହାତଧରି ପିଣ୍ଡାରୁ ଉଠି ରାସ୍ତା ପର୍ଯ୍ୟନ୍ତ ସେ ଗଲେ । କାରଣ କାନ୍ଥ ବାଡ଼ର ବି କାନ ଅଛି ମାତ୍ର ରାସ୍ତା ଉପରେ ଦୁଇଜଣ କ'ଣ ସବୁ ଫୁସୁର୍ ଫାସର୍ ହେଲେ ତାହା ଗୋପନୀୟ ରହିଗଲା । ସେଠୁ ଫେରି ଆକୁଳି ବାବୁ ଘରେ ବୁଝେଇ ଦେଲେ – ଶିକ୍ଷାଦାନ ଠାରୁ ମହତ୍ ଦାନ ଆଉ ନାହିଁ ଓ ସବୁ କଥାକୁ ଟଙ୍କା ପଇସାରେ ମାପିବା ଉଚିତ୍ ନୁହେଁ ।

ସମୟର ଆବଶ୍ୟକତା କିମ୍ବା ଭବିଷ୍ୟତର ସୁରକ୍ଷାପାଇଁ ହେଉ, ମଥୁରାର ସମସ୍ତ ଯୋଜନାର ଗତିପଥ ବଦଳିଗଲା । ମଥୁରା ଏବେ ପାଲଟିଗଲା ଅଧ୍ୟାପକ ମଥୁରାନନ୍ଦ ରାଉତ, ଆଦରଣୀୟ, ସମ୍ମାନାସ୍ପଦ ଶିକ୍ଷକ । କଲେଜରେ ପ୍ରଥମ ବର୍ଷ ତିରିଶ ଜଣ ପିଲା, ପାଖ ହାଇସ୍କୁଲ ପ୍ରକୋଷ୍ଠରେ ଚାଲିଲା ଅସ୍ଥାୟୀ ଭାବେ ପାଠପଢ଼ା । ପ୍ରତିମାସରେ ପରିଚାଳନା କମିଟିର ସମ୍ପାଦକ ଦିବାକର ବାବୁ ଅଧ୍ୟାପକ ମଥୁରାନନ୍ଦଙ୍କୁ ଘରକୁ ଡକାଇ ପାଞ୍ଚଶତ ଟଙ୍କା ପକେଟ୍‌ରେ ଭର୍ତ୍ତି କରିଦିଅନ୍ତି ଏବଂ ଗୋପନୀୟ କଥାଟି କାନରେ ଫୁଙ୍କିଦିଅନ୍ତି – ଏକଥା କାହାକୁ କହିବ ନାହିଁ, ଅନ୍ୟ ମାନଙ୍କୁ ତିନିଶ ଦେଇଛି, ସେମାନେ ଜାଣିଲେ ଗଣ୍ଡଗୋଳ କରିବେ । ଆଖପାଖ ଗାଁର ହାଇସ୍କୁଲ

ପିଲାଙ୍କୁ ଟ୍ୟୁସନ୍ ପଢ଼ାନ୍ତି ଅଧ୍ୟାପକ ଦିନ ସାତରୁ ଦଶ୍ ଏବଂ ରାତି ସାତରୁ ନ। କଲେଜ ସମୟ ଦଶରୁ ଦୁଇ।

ପ୍ରାୟ ଦୁଇବର୍ଷ କାଳ ଗୁରୁଖୁରୁରେ ଗଡ଼ିଲା। ବେଶି ନ ହେଲେ ବି, ଟ୍ୟୁସନ୍ ଏବଂ ସ୍ୱଳ୍ପ ବେତନକୁ ମିଶାଇ ଯାହା ମିଳିଲା, ସେଥିରେ ନିଜେ ଚଳି ଘର ବି ଚଳିଲା। ବେଶି ଅସୁବିଧା ପଡ଼ିଲେ, କଷ୍ଟେମଷ୍ଟେ ଚଳି ମନକୁ ପ୍ରବୋଧନା ଦିଅନ୍ତି ଅଧ୍ୟାପକ – ଆଉ କେତେଟା ଦିନ କି? ପୂରା ଦରମା ମିଳିଲେ ଏ ଦୁଃଖ କ'ଣ ରହିବ ?

ଗୋଟିଏ ବେସରକାରୀ କଲେଜ ପ୍ରତିଷ୍ଠା କରିବା ଏବଂ ଚଳେଇବାପାଇଁ ଯେଉଁ ଦକ୍ଷତା, କଳା, ପାରିବାପଣ ଦରକାର ସମସ୍ତ ସମ୍ପାଦକ ଦିବାକର ମହାନ୍ତିଙ୍କ ପାଖରେ ଅଛି। ଚାରି ଚାରିଥର ସରପଞ୍ଚ ହୋଇ ମଧ୍ୟ ପଞ୍ଚମ ଥରକୁ ଯେ ନିଶ୍ଚୟ ଜିତିବେ ଏ ଦୃଢ଼ୋକ୍ତି ସେ ବହୁ ସ୍ଥାନରେ ପ୍ରକାଶକରିଛନ୍ତି। ସେ, ନେଇଆଣି ଥୋଇ ପାରିବାର ଲୋକ। ନହେଲେ କି ପଞ୍ଚାୟତ କାର୍ଯ୍ୟ ସାଙ୍ଗକୁ ଗୋଟେ ମହାବିଦ୍ୟାଳୟର ଦାୟିତ୍ୱ ବିନା ଦ୍ୱିଧାରେ ସେ ତୁଲାଉଥାନ୍ତେ! କାହାଦ୍ୱାରା କେଉଁ କାମ ସମ୍ଭବ ସେ ସୂତ୍ର ଦିବକରଙ୍କୁ ଜଣା। ତାଙ୍କ ମତରେ ରାଜନୀତିକ ଶକ୍ତି ହେଉଛି ପ୍ରକୃତ ଶକ୍ତି। ଶାସନ ଗାଦିରେ ଥା'ନ୍ତୁ ବା ନ ଥାନ୍ତୁ, ପ୍ରତ୍ୟେକ ରାଜନୀତିଜ୍ଞ ହେଲେ ଶକ୍ତି ଏବଂ ବିକାଶର ଉତ୍ସ। ଖାସ୍ ସେଥିପାଇଁ କଲେଜର ପରିଚାଳନା କମିଟିରେ ସେ ଅନ୍ତର୍ଭୁକ୍ତ କରିଛନ୍ତି ତିନିଜଣ ପ୍ରାକ୍ତନ ୱାର୍ଡ଼ମେମ୍ବର୍, ଦୁଇଜଣ ବିରୋଧୀ ଦଳର ପରାଜିତ ଏମ୍.ଏଲ୍.ଏ. ପ୍ରାର୍ଥୀ ଏବଂ ଚଳନ୍ତି ଏମ୍.ପି. ଏଲ୍.ଏଲ୍.ଏ., ମନ୍ତ୍ରୀଙ୍କର ନୋମିନି ଏମାନେ ତ ନିଶ୍ଚିତ ଭାବେ ରହିବେ। ପାଞ୍ଚ ବର୍ଷ ମଧ୍ୟରେ କଲେଜ କିପରି ସୁଦୃଶ୍ୟ, ସୁରମ୍ୟ, ନିଜସ୍ୱ କଲେଜ ପରିସରକୁ ସ୍ଥାନାନ୍ତରିତ ହେବ, ତା'ର ଏକ ସୁଚିନ୍ତିତ ଯୋଜନାମତେ ସେ କାର୍ଯ୍ୟାରମ୍ଭ କରି ଦେଇଛନ୍ତି।

ଅଧ୍ୟାପକ ମଥାରାନନ୍ଦଙ୍କର ଚିନ୍ତାଧାରା ଟିକେ ଅଲଗା। ଏଥିପାଇଁ ସମ୍ପାଦକ ମହୋଦୟଙ୍କୁ ସେ ଦୁଇ/ତିନି ଥର ବ୍ୟକ୍ତିଗତ ଭାବେ ଭେଟି ନିଜର ମତାମତ ଜଣେଇଛନ୍ତି। ଯଦି ଅନୁଷ୍ଠାନ ଗଢ଼ିବାପାଇଁ ମନ୍ତ୍ରୀ, ଏମ୍.ଏଲ୍.ଏ.ଙ୍କର ଇଚ୍ଛା, ତେବେ ତାଙ୍କୁ, ତାଙ୍କରି ପ୍ରଦତ୍ତ ଅନୁଦାନ ରାଶିରୁ କୋଡ଼ିଏ ଭାଗ ଲାଞ୍ଚଦେବା, ତାହା ପୁଣି କେଉଁ ନ୍ୟାୟ? ପିଲାର ନାଁ ଗଡ଼ିବ ହାଜିରା ଖାତାରେ, କିନ୍ତୁ ବାସ୍ତବରେ ସେ ପିଲା ବେପାର କରୁଥିବ, ଠିକାଦାରି କରୁଥିବ, ନଚେତ୍ ଦିଲ୍ଲୀ/ବମ୍ବେରେ କର୍ମସଂସ୍ଥାନପାଇଁ ଯାଇଥିବ, ନଚେତ୍ ବାହାହୋଇ ଶାଶୁଘରେ ଥିବ, କେବଳ ପରୀକ୍ଷା ବେଳକୁ କଲେଜ୍‌କୁ ଆସିବ। ଏ କେମିତି ବା ନିୟମ!

ଅଧ୍ୟାପକଙ୍କର ପିଠି ଥାପୁଡ଼େଇ ସମ୍ପାଦକ ବୁଝେଇ ଦିଅନ୍ତି – ବାବୁ, ତୁମେ

କେବଳ ପାଠ ପଢ଼େଇବା କଥା ବୁଝ, ଏସବୁ କଥାରେ ମୁଣ୍ଡ ଖେଳାଅ ନାହିଁ, ସେ କଥା ବୁଝିବାପାଇଁ ଆମେ ଅଛୁ ପରା ! ତୁମେ କ'ଣ ଭାବୁଛ, ସରକାରଙ୍କଠାରୁ ଯେଉଁ ସ୍ୱୀକୃତି ଏବଂ କାଉନ୍‌ସିଲ୍‌ରୁ ଯେଉଁ ସହବନ୍ଧନ ଆସିଲା, ତାହା ଶୂନ୍ୟେ ଶୂନ୍ୟେ ହୋଇଗଲା? ଡେସ୍କ-ବେଞ୍ଚ ଠାରୁ ଆଲମିରା ପର୍ଯ୍ୟନ୍ତ ଭଡ଼ାରେ ତ ଆସିଲା, ନିଜର ଘର ନାହିଁ କି ଖେଳପଡ଼ିଆ ନାହିଁ । ପରିଦର୍ଶକମାନେ ତା'ହେଲେ କ'ଣ ଦେଖି, ଏଠାରେ ସବୁ ଅଛି ବୋଲି ରିପୋର୍ଟ ଦେଲେ? କୁହ? ପ୍ରଶ୍ନଟିକୁ ଅଧ୍ୟାପକଙ୍କର ବିଚାରପାଇଁ କିଛିକ୍ଷଣ ଛାଡ଼ିଦେଲେ କରିତ୍‌କର୍ମା ସମ୍ପାଦକ । ଅଧ୍ୟାପକଙ୍କର ବୁଦ୍ଧି ବିଦ୍ୟା କିଛି କାମ କଲା ନାହିଁ, ସେ ଅନ୍ୟମନସ୍କ ହୋଇ ଚାହିଁଲେ ଏଣେତେଣେ ।

ଏତେ ସହଜ କଥା ନୁହେଁ, ଏସବୁ! ସମ୍ପାଦକ ପୁଣିଥରେ ପିଠି ଥାପୁଡ଼େଇଲେ । 'ଯାଅ ଯାଅ, ଘରକୁ ଯାଅ ।' ନରମ ଗଳାରେ ବାଟ ଦେଖାଇଲେ ଅଧ୍ୟାପକଙ୍କୁ । 'ଟ୍ୟୁସନ୍ ଠିକ୍‌ଠାକ୍ ଚାଲିଛି ତ ! ଆଉ ବାପା ଭଲ ଅଛନ୍ତି ? ସମୟ ହେଉନି, ନଚେତ୍ ନିଶ୍ଚୟ ଯାଇଥାନ୍ତି ତାଙ୍କୁ ଭେଟିବାକୁ । ତାଙ୍କ ଭଳି ସତ୍ୟନିଷ୍ଠ ଲୋକ କାହାନ୍ତି !

ଜଣେ ସଫଳ ଅଧ୍ୟାପକ ଭାବେ ତିନିବର୍ଷ କାର୍ଯ୍ୟ କରିବା ପରେ, ମଥୁରାନନ୍ଦଙ୍କୁ ଲାଗିଲା, ସେ ଯେମିତି ଏକ ଭୁଲ ବାଟରେ ପଶି ଆସିଛନ୍ତି । ଦୂର ସମ୍ପର୍କୀୟ ମାମୁଁ ଦିବାକର ମହାନ୍ତିଙ୍କର ପ୍ରରୋଚନାରେ କିମ୍ବା ନିଜ ବାପାଙ୍କର ଜିଦ୍ ଯୋଗୁ ହେଉ, ସେ ଅଧ୍ୟାପନାକୁ ବୃତ୍ତି ଭାବେ ଗ୍ରହଣ କରିଗଲେ ସତ, ଅଥଚ ସେହି ପରିବେଶରେ ନିଜକୁ ଖାପଖୁଆଇ ଚଳିବା ପ୍ରାୟତଃ ଯନ୍ତ୍ରଣାଦାୟକ । ସବୁକଥାରେ, ସମ୍ପାଦକଙ୍କର ଫର୍‌ମାଇସ୍ ହିଁ କାର୍ଯ୍ୟକାରି ହେବ । ପ୍ରିନ୍ସପାଲଙ୍କ ଠାରୁ ପିଅନ୍ ପର୍ଯ୍ୟନ୍ତ ସମସ୍ତେ ତାଙ୍କ ପଛରେ ସାର୍ ସାର୍ କହି ଧାଉଛନ୍ତି । ଏପରିକି ଯେଉଁ ଅଧ୍ୟାପକ ସାମାନ୍ୟ ବିଳମ୍ବରେ ଯଦି ଆସୁଥିବାର ସମ୍ପାଦକ ଦେଖନ୍ତି, ତେବେ ସ୍ଥାନ-କାଳ-ପାତ୍ର ନିର୍ବିଶେଷରେ ଡାକ ମାରିବେ - ହୋ ସାର୍ ଆଜି କ'ଣ ଏତେଡ଼େରି ! ଧାନଗୁଆ ସରିନାହିଁ କି ? ହାଟଚାଳି, ପଞ୍ଚାୟତ ଅଫିସ୍, ମନ୍ଦିର ବେଢ଼ା ଯେଉଁଠି ଥିଲେ ବି ତାଙ୍କର ସମ୍ପାଦକ ସୁଲଭ ଦାୟିତ୍ୱ ସେ ଅକ୍ଷରେ ଅକ୍ଷରେ ପାଳନକରନ୍ତି । କଲେଜ ଭିତରକୁ ସମ୍ପାଦକ ପ୍ରବେଶ କଲେ, ତାଙ୍କ ସାମ୍ନାରେ ଚୌକିରେ ନ ବସିବା ହେଉଛି ପ୍ରଚଳିତ ବିଧି । କୌଣସି ଅଧ୍ୟାପକ ଅଜାଣତରେ ବସିପଡ଼ନ୍ତି, ତେବେ ସମ୍ପାଦକ ପିତୃ ସୁଲଭ ଉପଦେଶ ଦେଇ ପିଠି ଥାପୁଡ଼ାନ୍ତି - ପିଲାଲୋକ, ଏମିତି ବୁଢ଼ାଙ୍କ ଭଳି ବସି ବସି ସମୟ କାଟିଲେ ଚଳିବ !

ସମସ୍ତେ ଅନୁଭବ କରନ୍ତି, କିନ୍ତୁ ପ୍ରକାଶ କରନ୍ତି ନାହିଁ । କାରଣ ଚାବିକାଠି ରହିଛି ସମ୍ପାଦକଙ୍କ ପାଖରେ - ଏ ପର୍ଯ୍ୟନ୍ତ ନିଯୁକ୍ତି ପତ୍ର କାହାରିକୁ ମିଳିନାହିଁ କିମ୍ବା

ଦରମା ନେଉଥିବାର ହିସାବ ଖାତାଟି ମଧ୍ୟ ତିଆରି ହୋଇନାହିଁ । ଏମିତି ସଂକଟରେ ପଡ଼ି ଅଧ୍ୟାପକ ମଥୁରାନନ୍ଦ ଥରେ ପଚାରି ଦେଲେ – ଆମ ଆପଏଣ୍ଟମେଣ୍ଟ ଲେଟର୍ କେବେ ମିଳିବ? ଚାକିରି ତିନିବର୍ଷ ପୂରିଲା ! ଏ ପ୍ରଶ୍ନ ଶୁଣି ସମ୍ପାଦକ ଠିଆ ହୋଇଗଲେ ନିର୍ବାକ୍ ହୋଇ । ବୋଧହୁଏ ଏ ପ୍ରକାର ଗୁରୁତ୍ୱହୀନ ପ୍ରଶ୍ନ ସେ ଜଣେ ଅଧ୍ୟାପକ ଠାରୁ ଆଶା କରୁନଥିଲେ । ତାଙ୍କ ଚାହାଣିରୁ ଏ ପ୍ରକାର ଭାବନା ହିଁ ଫୁଟି ଉଠୁଥିଲା । ତା'ପରେ ମୁଣ୍ଡ ଟୁଙ୍ଗାରି, ସାଇକେଲ ହାଣ୍ଡେଲରେ ଟଙ୍ଗା ହୋଇଥିବା ଏକ ବ୍ୟାଗ୍‌କୁ ସେ ଦେଖେଇଲେ । ସମୁଦାୟ କଲେଜ, ଯା'ରି ଭିତରେ । ତା'ପରେ ମଥୁରାନନ୍ଦଙ୍କର କାନ ପାଖକୁ ମୁହଁ ଆଣି ଫୁସ୍‌ଫାସ୍ କରି କହିଲେ – ତୁମେ ଚିହ୍ନି ନାହଁ ଏମାନଙ୍କୁ । ଚୁଟି ଖସିଗଲେ ଆଉ ପଚାରିବେ ? ହେଲେ, ତୁମର କ'ଣ ମାମୁଁ ଉପରେ ଭରସା ନାହିଁ? ତୁମେ ନିଶ୍ଚିନ୍ତ ରୁହ । ଆଉ! ବାପା ଭଲ ଅଛନ୍ତି? ମୁଁ କାଲି ତୁମଆଡ଼େ ଯିବି ଯେ ।

ଦିବାକର ବାବୁଙ୍କ କଥା କାହିଁକି କେଜାଣି ସହଜରେ ହଜମ ହେଲା ନାହିଁ ମଥୁରାନନ୍ଦଙ୍କର । ତେଣୁ ସେ ଏକ ଗୁପ୍ତ ତଥ୍ୟ ସଂଗ୍ରହ ଅଭିଯାନ ଆରମ୍ଭକଲେ । ତା'ପର ଦିନ ସକାଳୁ ସହକର୍ମୀ ଅନ୍ୟାନ୍ୟ ଅଧ୍ୟାପକ/କର୍ମଚାରୀମାନଙ୍କ ଘରକୁ ଯାଇ ଅତି ଗୋପନରେ ଏହି କଥାଟି ପଚାରିଲେ – ନିଯୁକ୍ତି ପତ୍ର ପାଇଛ ? ଏବଂ ତାଙ୍କ ଠାରୁ ରାଣ ନିୟମ ପକାଇ ଯେଉଁ ଉତ୍ତରଟି ପାଇଲେ, ତାହା ନିଜ କାନକୁ ମଧ୍ୟ ବିଶ୍ୱାସ କରିପାରିଲେ ନାହିଁ । ସମସ୍ତଙ୍କ ଠାରୁ ସମ୍ପାଦକ ଡୋନେସନ୍ ନେଇଛନ୍ତି । ପିଅନ୍‌ଠାରୁ ଦଶ ହଜାରରୁ ଆରମ୍ଭ କରି ଅଧ୍ୟାପକଠାରୁ ତିରିଶ ହଜାର ପର୍ଯ୍ୟନ୍ତ ଏବଂ ତା ବଦଳରେ ତାଙ୍କୁ ମିଳିଛି ନିଯୁକ୍ତି ପତ୍ରର ଜେରକ୍ସ କପି । ଓରଜିନାଲ ଏବେ ବି ସମ୍ପାଦକଙ୍କ ପାଖରେ । ଅଲିଖିତ ଚୁକ୍ତିଟିଏ ମଧ୍ୟ ହୋଇଛି – ଫୁଲ୍ ଦରମା ମିଳିଲେ ଆଉ ସେତିକି ସେତିକି କଲେଜକୁ ଦାନ କରିବାକୁ ପଡ଼ିବ । କଲେଜ କହିଲେ, ସମ୍ପାଦକଙ୍କର ମୁଣି ।

ଖୁବ୍ ତୀବ୍ର ଭାବେ ମନ ଭିତରେ ଗୋଟାଏ ଝଡ଼ ଖେଳିଗଲା । ଏ ପ୍ରକାର ପରିସ୍ଥିତିରେ ଅଧ୍ୟାପନା କରିବା ଅପେକ୍ଷା ଚାକିରି ଛାଡ଼ିଦେବା ଭଲ । ଏତେବଡ଼ ବିଶ୍ୱବିଦ୍ୟାଳୟରୁ ଡିଗ୍ରୀ ହାସଲ କରିବାର ଫଳ କ'ଣ ଡୋନେସନ୍ ଦେଇ ଚାକିରି? ସେ ଚାକିରିରେ ଧନ ତ ନାହିଁ, ମାନ ସମ୍ମାନ ବି ନାହିଁ । ସ୍ୱାଧୀନତା, ସ୍ୱାଭିମାନ ତ ବହୁ ଦୂରରେ । ଅସ୍ଥିର ଭାବ, ଅପ୍ରକାଶ୍ୟ କ୍ଷୋଭ, ଅନିର୍ଦ୍ଦିଷ୍ଟ ଭବିଷ୍ୟତ । ଗାଁ ମୁଣ୍ଡ ଠାକୁରାଣୀ ମଣ୍ଡପ ପାଖରେ ସାଇକେଲ ଡେରି ଗୁମ୍‌ଖାଇ ବସିପଡ଼ିଲେ ଅଧ୍ୟାପକ ମଥୁରାନନ୍ଦ । ସଂଧ୍ୟା ଦୀପ ଠାକୁରାଣୀଙ୍କ ପାଖରେ ଦୋହଲି ଦୋହଲି କ୍ଷୀଣ

ଆଲୋକରେ କିଛି ଅଂଶକୁ ଆଲୋକିତ କରୁଛି । କିଛି ବୁଦ୍ଧି ଦିଶୁନାହିଁ । ସରକାରୀ ଚାକିରି କରିବାର ବୟସ ଶେଷ ହୋଇଆସୁଛି । ଆଉ କୌଣସି ବୃତ୍ତିକୁ ହଠାତ୍ ଆଦରି ନେବାର ମନୋବଳ କମି କମି ଯାଉଛି । ଅନ୍ୟ ପକ୍ଷରେ ଅଧ୍ୟାପନା ଏବଂ ଏହି କ୍ଷୁଦ୍ର ପରିସରର କଲେଜ ପ୍ରତି ଏକ ପ୍ରକାର ଆତ୍ମୀୟତା ମଧ୍ୟ ଲାଗିଗଲାଣି । ଦୋଦୁଲ୍ୟମାନ ଚିନ୍ତା । ଛୋଟ ପିଲାବେଳେ, ସ୍କୁଲକୁ ଯିବା ବାଟରେ ଏଇଠି, ଠାକୁରାଣୀ ପାଖରେ ମୁଣ୍ଡିଆଟିଏ ନ ମାରିଲେ କୌଣସି ପିଲା ଗାଁ ମୁଣ୍ଡ ଡେଉଁ ନଥିଲେ । ମଥୁରା ତ ଯିବା ଆସିବା ଦୁଇବେଳା ମୁଣ୍ଡିଆ ମାରୁଥିଲା – ମା' ବୁଦ୍ଧି ଦେ, ପାଠ ଦେ, ରିଷ୍ଟ ଖଣ୍ଡନ କର । ଆଜି ଠିକ୍ ସେହି ଭାବ । ସେହି ମିନତି । ମା'ତୁ ବାଟ ଦେଖା ।

ଘରେ ପହଂଚିଲା ବେଳକୁ ଆଉ ଏକ ଅଦ୍‌ଭୁତ ଦୃଶ୍ୟ । ବାଟଘରେ ବାପା ଏବଂ ଦିବାକର ବାବୁ କୋଳାକୋଳି ହୋଇ ପରସ୍ପର ଠାରୁ ବିଦାୟ ନେଉଛନ୍ତି । ମଥୁରା ଏହାର ରହସ୍ୟ ବୁଝୁବୁଝୁ ରାତି ନ । ଦିବାକର ବାବୁ ଅଧ୍ୟାପକ ମଥୁରାନନ୍ଦଙ୍କପାଇଁ ପ୍ରସ୍ତାବଟିଏ ଆଣିଛନ୍ତି । ଆଗରୁ ଏ ବିଷୟରେ ଆକୁଳି ବାବୁଙ୍କୁ ସେ କହିଲେ । ଏବେ ଅନୁଷ୍ଠାନିକ ଭାବେ, କନ୍ୟାର ମାମୁଁ ହିସାବରେ, ଟିପଣା ଧରି ସେ ଆସିଛନ୍ତି, କନ୍ୟାଟି ସର୍ବଗୁଣ ସମ୍ପନ୍ନା । ଅନେକ ଆଡ଼େ ବୁଲିବୁଲି ତାଙ୍କ ଭିଣୋଇ ମନ ପସନ୍ଦର ପିଲାଟିଏ ନ ପାଇବାରୁ ଶଳା ମହାଶୟଙ୍କୁ ଦାୟିତ୍ୱ ଅର୍ପଣ କରିବାରୁ, ପ୍ରଥମ ଚିନ୍ତାରେ ହିଁ ତାଙ୍କର ମନେପଡ଼ିଲା ଅଧ୍ୟାପକ ମଥୁରାନନ୍ଦଙ୍କର କଥା ।

ତୁମେ ଦେଖିଛ ସେ ପିଲାକୁ? ପ୍ରାୟ ସମସ୍ତଙ୍କପାଇଁ ଏ ପ୍ରଶ୍ନଟି ଉଦ୍ଦିଷ୍ଟ ଥିଲା । ଫଟୋ ଦେଇଛନ୍ତି କି? ମଥୁରାର ଦ୍ୱିତୀୟ ପ୍ରଶ୍ନ । ସମସ୍ତେ ନୀରବ । ପରସ୍ପର ମୁହଁକୁ ଚାହାଁଚୁହିଁ ହେଲେ କେବଳ । ଅସଲ କଥାଟି କହିବ କିଏ?

ରୂପରୁ କ'ଣ ମିଳିବ ? ପିଲାର ଗୁଣ ଅଛି । ଭଲ ବନ୍ଧୁ । ଝିଅ ମାଟ୍ରିକ୍ ପାସ୍ କରିଛି, ଘରେ ରହି ରୋଷେଇ କରିବ, ଅଧିକା ପାଠ ଆମର କ'ଣ ହେବ? ଆକୁଳି ବାବୁ ପ୍ରକାରାନ୍ତରେ ସବୁ ପ୍ରଶ୍ନର ଉତ୍ତର ଦେଇଦେଲେ ଏବଂ କହିଲେ ଆସନ୍ତା ଫଗୁଣରେ ନିର୍ବନ୍ଧ କରିବାକୁ ଦିବାକର ବାବୁ କହିଛନ୍ତି ।

ଏହା ଭିତରେ କିଛି ରହସ୍ୟ ଥିବା ଭଳି ମଥୁରା ଅନୁମାନ କଲା । ଯେଉଁ ବାପା କାହିଁ କେତେ ବର୍ଷରୁ କହି ଆସୁଛନ୍ତି ବୋହୂ କରିବେ ତ ପ୍ରଧାନ ଘର ବୋହୂ ଭଳିଆ – ଗୋଟିଏ ଚାଉଳରେ ଗଢ଼ା, ବି.ଏ. ପାଶ, ଗୁଣ ବି ସେମିତି । ମଥୁରାପାଇଁ ମୁଁ ସେମିତିକା ବୋହୂଟିଏ ଆଣିବି । ଆଜି ତାଙ୍କର ଏ ମତ ପରିବର୍ତ୍ତନ କାହିଁକି ? ଏହା ପଛରେ କିଛି ବାଧ୍ୟବାଧକତା ନିଶ୍ଚୟ ଅଛି । ତେଣୁ ସେ ସିଧା ସିଧା କହିଦେଲା, ଏ ବର୍ଷ ବାହାଘର କଥା ଉଠାଅ ନାହିଁ । ପ୍ରଥମେ କୁନି ବାହାଘର ସରୁ ତା ପରେ ଚିନ୍ତା କରିବା ।

ମନ ଭିତରେ ଦିବାକର ବାବୁଙ୍କ ପ୍ରତି ଏକ ପ୍ରକାର ସନ୍ଦେହ ଏବଂ ଘୃଣା ପୁଞ୍ଜିଭୂତ ହୋଇ ବାଟ ଖୋଜୁଥାଏ ପ୍ରକାଶ ପାଇବାପାଇଁ । ଲୋକଟା ଦେଖିବାକୁ ଯେମିତି, କାମରେ ସେମିତି ନୁହେଁ, ଏକଥା କେହି ବୁଝୁ ନ ବୁଝୁ ମଥୁରାନନ୍ଦ ସମ୍ପୂର୍ଣ୍ଣ ଭାବେ ବୁଝିଗଲେଣି । ତେଣୁ ତାଙ୍କୁ କେମିତି ପାନେ ଦିଆଯାଇପାରିବ ସୁଯୋଗକୁ ଅପେକ୍ଷା କଲେ ସେ ।

ପରୀକ୍ଷା ବେଳ ଆସିଲା । ଏ ବର୍ଷ ପରୀକ୍ଷାର ବିଶେଷତ୍ୱ ହେଲା, ନିଜ କଲେଜରେ ପରୀକ୍ଷା କେନ୍ଦ୍ର । ପୂର୍ବରୁ ହଳଦିଆ କଲେଜରେ ସଂଯୁକ୍ତ ହୋଇ ପରୀକ୍ଷା ଦେଉଥିଲେ ପିଲାମାନେ । ସେ ସେଣ୍ଟରଟା ସେତେ ଭଲ ନୁହେଁ । ଅଧ୍ୟାପକମାନେ ସେଠି ମୁହଁକୁ ଚାହାନ୍ତି ନାହିଁ । ଦିବାକର ବାବୁଙ୍କ ଭଳି ସମ୍ପାଦକଙ୍କୁ ଗେଟ୍ ଭିତରେ ପ୍ରବେଶ ଅନୁମତି ମିଳିଲା ନାହିଁ । ପିଲାଙ୍କୁ ନିଜର ସ୍ମରଣ ଶକ୍ତି ଉପରେ ହିଁ ନିର୍ଭର କରି ପରୀକ୍ଷା ଦେବାକୁ ପଡ଼ିଲା । ଫଳରେ ପିଲାଙ୍କ ଫଳାଫଳ ତ ଖରାପ ହେଲା, କିନ୍ତୁ ଦିବାକାର ବାବୁ ସେଇଠି ଶପଥ ନେଇଥିଲେ, ଯେମିତି ହେଉ ଆରଥରକୁ ସେ ନିଜ କଲେଜରେ ପରୀକ୍ଷା କେନ୍ଦ୍ର ନିଶ୍ଚୟ କରାଇବେ ଏବଂ କରାଇଲେ ମଧ୍ୟ ।

ଗୁପ୍ତ ମିଟିଂରେ, ସମ୍ପାଦକ, ପ୍ରଥମେ କେତେ କଷ୍ଟକରି କାହାକୁ କେମିତି ସନ୍ତୁଷ୍ଟ କରି ସେଣ୍ଟର୍ କରାଇଲେ ତା ବିଷୟରେ ଦୀର୍ଘ ଭାଷଣଟିଏ ଦେଲେ । ତା'ପରେ ଉଦ୍ଦେଶ୍ୟ ଜ୍ଞାପନ କଲେ– ଏ ବର୍ଷ ଯେମିତି ଗୋଟିଏ ବି ପିଲା ଫେଲ୍ ନ ହୁଅନ୍ତି, ସେ ଦାୟିତ୍ୱ ଆପଣମାନଙ୍କର । ଭିତର କଥା ଆପଣ ବୁଝନ୍ତୁ, ବାହାର କଥା, ସ୍କ୍ୱାର୍ଡ଼ ପାର୍ଟି କଥା ମୁଁ ବୁଝିବି ।

ଏହା ଏକ କଷ୍ଟସାଧ୍ୟ ବ୍ୟାପାର ହୋଇଥିବାରୁ ପ୍ରତ୍ୟେକ ପରୀକ୍ଷାର୍ଥୀଙ୍କ ଠାରୁ ଏକ ହଜାର ଟଙ୍କା ଅଧିକ ପରୀକ୍ଷା ଖର୍ଚ୍ଚ ଆଦାୟ ହୋଇ ସମ୍ପାଦକଙ୍କ ପାଖରେ ମହଜୁଦ ରହିଲା । ଦରକାର ହେଲେ କାମରେ ଆସିବ । କାମ ବାଣ୍ଟି ଦିଆଗଲା । ପିଅନ ଠାରୁ ଅଧକ୍ଷ ପର୍ଯ୍ୟନ୍ତ ସମସ୍ତେ ଯେମିତି ଆନ୍ତରିକତାର ସହ ନିଜର ବ୍ୟକ୍ତିଗତ କାମ ଭାବି, ହୃଦୟ ଢ଼ାଳି କାମ କରିବେ ସେଥିପାଇଁ ଏକ ଭୋଜିର ଆୟୋଜନ କରାଯାଇ ବିସ୍ତୃତ ଭାବେ ନୀତି ନିର୍ଦ୍ଧାରଣ କରାଗଲା । ଯେହେତୁ ପିଲାମାନେ ପାଠରେ ଦୁର୍ବଳ, ସେମାନଙ୍କୁ ଅଧିକ ସାହାଯ୍ୟ କରାଯିବ । ପରୀକ୍ଷା ଆରମ୍ଭ ହେବାର ଏକ ଘଣ୍ଟା ପରେ ସମ୍ପୃକ୍ତ ବିଷୟର ଅଧ୍ୟାପକ ଆସିବେ, ଚକ–ଡଷ୍ଟର୍ ସହିତ । କଳାପଟାରେ ସଂକ୍ଷିପ୍ତ ପ୍ରଶ୍ନର ଉତ୍ତରଗୁଡ଼ିକ ସେଠାରେ ଲେଖାଯିବ । ପିଲାମାନେ ଉତାରିବେ । ଦୀର୍ଘ ଉତ୍ତରଗୁଡ଼ିକପାଇଁ, ମାନେ – ବହି, ଗାଇଡ୍, ଛିଡ଼ାଯିବ । ପ୍ରତ୍ୟେକ ପିଲାକୁ ଯେମିତି ବିନାପକ୍ଷପାତିତାରେ ବଣ୍ଟନ କରାଯିବ, ଦାୟିତ୍ୱ ଅଧକ୍ଷଙ୍କର । ଯଦି କୌଣସି

ପିଲା ଲେଖିପାରୁ ନାହିଁ, ତାପାଇଁ ଜଣେ ଲିଖନକାର ବନ୍ଦୋବସ୍ତ କରାଯିବ । ଯଦି ସ୍କ୍ୱାର୍ଡ଼ ପାର୍ଟି ଆସନ୍ତି, ତାଙ୍କପାଇଁ ମଧ୍ୟ ବ୍ୟବସ୍ଥା ହେଲା । ଜଣେ ପିଅନ୍ ଚାବି ପେନ୍ଥା ଧରି ଗେଟ୍ ଖୋଲିବାକୁ ଦୌଡ଼ିବ ଏବଂ ପ୍ରତ୍ୟେକ ଚାବିରେ ତାଲା ଖୋଲିବାପାଇଁ ଚେଷ୍ଟାକରିବ, ଅଥଚ ତାଲା ଖୋଲିବ ନାହିଁ । ସେ ଦୌଡ଼ିବ ଆଉ ଗୋଟିଏ ଚାବି ପେନ୍ଥାପାଇଁ । ଇତି ମଧ୍ୟରେ ତିନିଜଣ ପିଅନ୍ ତିନୋଟି ଚାଉଳବସ୍ତା ଧରି ପରୀକ୍ଷା ହଲ୍‌ରେ ବୁଲିବୁଲି ଚିର୍‌କୁଟ୍ ସଂଗ୍ରହ କରିବେ । କଳାପଟା ସଫା କରିବା ଦାୟିତ୍ୱ ସମ୍ପୃକ୍ତ ଅଧ୍ୟାପକଙ୍କର । ହଁ, ସ୍କ୍ୱାର୍ଡ଼ ପାର୍ଟିଙ୍କୁ ବହୁ ଦୂରରୁ ନିରୀକ୍ଷଣ କରି ଠାବ କରିବା ଏବଂ ସଂଦେଶ ପଠାଇବା ପାଇଁ ତିନିଜଣ ଗଛଚଢ଼ାଳୀଙ୍କୁ ପରୀକ୍ଷା ଶେଷ ପର୍ଯ୍ୟନ୍ତ ଦାୟିତ୍ୱ ଅର୍ପଣ କରିଛନ୍ତି ସମ୍ପାଦକ । ସୁଉଚ୍ଚ ବୃକ୍ଷରେ ଚଢ଼ି ରହି ପ୍ରାୟ ଏକ ମାଇଲ୍ ଦୂରରୁ ଆସୁଥିବା ପ୍ରତ୍ୟେକ ମଟରଗାଡ଼ିର ଗତିବିଧି ଜଣାଇବେ । ଯଦି ଆମ୍ବାସଡର୍ କାର୍ ଦେଖନ୍ତି, ତେବେ ଦିଆଯାଇଥିବା ଶୁଷୁରି ଫୁଙ୍କିବେ । ଅଧ୍ୟାପକ ମଥୁରାନନ୍ଦ ମିଟିଂ ଶେଷ ବେଳକୁ ଠିଆହେଲେ କିଛି କହିବାପାଇଁ । ସମ୍ପାଦକ ଅନୁମାନ କଲେ କିଛି ବିଘ୍ନ ଘଟେଇବାର ଉଦ୍ଦେଶ୍ୟ ଅଛି ମଥୁରାନନ୍ଦଙ୍କର । ସେତେବେଳକୁ ମଥୁରାନନ୍ଦଙ୍କର ମୁହଁର ରଙ୍ଗ ଲାଲ ପଡ଼ିଗଲାଣି ।

କ'ଣ ସବୁ ଚାଲିଛି ଏଠି ? ଚିତ୍କାର କଲେ ମଥୁରାନନ୍ଦ । ସ୍ତବ୍ଧ ହେଲେ ସମସ୍ତ ଅଧ୍ୟାପକ, କର୍ମଚାରୀ । 'କ୍ଷମା କରନ୍ତୁ, ଏସବୁ ବ୍ୟାପାରକୁ ମୁଁ ଆଦୌ ସମର୍ଥନ କରୁନାହିଁ କିମ୍ବା ମୁଁ ଏପରି କାର୍ଯ୍ୟରେ ସହଯୋଗ ମଧ୍ୟ କରିପାରିବି ନାହିଁ ।'

ବୋଧହୁଏ ମଥୁରାନନ୍ଦଙ୍କର ବିପର୍ଯ୍ୟୟ ସେଇଠୁ ଆରମ୍ଭ ହୋଇଗଲା । ସ୍ରୋତର ଅନୁକୂଳରେ ଭାସି ପାରୁନଥିବା, କିମ୍ବା ସ୍ରୋତକୁ ବନ୍ଦ କରିବାର କ୍ଷମତା ନଥିବା ଲୋକଟି ସବୁବେଳେ ଏକୁଟିଆ, ଏକ ଘରକିଆ ହୋଇଯାଏ । ଅଧ୍ୟାପକ ମଥୁରାନନ୍ଦଙ୍କର ଅବସ୍ଥା ଘଟଣାକ୍ରମେ ସେଇଆ ହିଁ ହେଲା । ତାଙ୍କୁ ପରୀକ୍ଷା ସମୟତକ କଲେଜ ପରିସରରେ ପ୍ରବେଶ ନ କରିବାପାଇଁ ଅଧ୍ୟକ୍ଷ କଡ଼ା ନିର୍ଦ୍ଦେଶଦେଲେ । ପରୀକ୍ଷା ଶାନ୍ତି ଶୃଙ୍ଖଳା ସହ, ସୁରୁଖୁରୁରେ ଶେଷହେଲା । ପରୀକ୍ଷା ଫଳ ମଧ୍ୟ ଚମକାଇ ଦେବା ଭଳି ହେଲା – ସମସ୍ତେ ପାସ୍, ତନ୍ମଧ୍ୟେ ଅଧାରୁ ଅଧିକ ପ୍ରଥମ ଶ୍ରେଣୀରେ । ଏବଂ, ଏହାପରେ, କଲେଜର ସମସ୍ତ ଅଧ୍ୟାପକ, କର୍ମଚାରୀଙ୍କ ଠାରୁ ଆରମ୍ଭ କରି ପରିଚାଳନା କମିଟିର ସମ୍ପାଦକ ମଧ୍ୟ କରଛଡ଼ାଦେଲେ ମଥୁରାନନ୍ଦଙ୍କୁ । ଭେଟ ହେଲେ ଏକ କୃତ୍ରିମ ହସର ବିନିମୟରେ ସୀମାବଦ୍ଧ ହେଲା ସମ୍ପର୍କ । ପ୍ରାୟ ଦୁଇବର୍ଷ ପର୍ଯ୍ୟନ୍ତ ଏ ପ୍ରକାର ଲୁଚକାଳି ଖେଳ ଚାଲିଲା । ହଁ, ମାସକୁ ମାସ ମିଳୁଥିବା ଦରମା ଗଣ୍ଡାକ ଏବେ ଛ'ମାସରେ ମିଳିଲା, ତାହା ପୁଣି ଦୁଇମାସ ନଗଦ । ଚାରିମାସ ବାକି ।

ସମ୍ପାଦକ ସଫେଇ ଦେଲେ ପାରୀକ୍ଷା ସେଣ୍ଟର ବାତିଲ୍ କରିବାପାଇଁ ଯେଉଁ ରିପୋର୍ଟ ସବୁ ସ୍ବାର୍ଥପାର୍ଟି ପଠେଇଥିଲେ, ତାକୁ ଚପେଇବାପାଇଁ ବେଶ୍ ମୋଟା ଅଙ୍କର ମାଲ୍ ଲାଗିଲା । ଏଥିପାଇଁ ସମସ୍ତେ ସହଯୋଗ କରିବା ଦରକାର । ତା'ଛଡ଼ା ସମ୍ପାଦକ ମହାଶୟ ଏକ ଶୁଭ ଖବର ମଧ୍ୟ ଦେଲେ – ଆସନ୍ତା ବର୍ଷ ଆପଣମାନଙ୍କର ଚାକିରୀ ସରକାର ସ୍ଥାୟୀ କରିବେ ଏବଂ ଅଧା ଅନୁଦାନ ଆପଣମାନେ ପାଇବେ । ଆଶାର କିରଣଟିଏ ଦେଖାଗଲା ଅନ୍ଧକାର ମଧ୍ୟରେ । ମଥୁରାନନ୍ଦଙ୍କ ସମେତ ସମସ୍ତ କର୍ମଚାରୀ ଆଶାବାଦୀ ଦିଶିଲେ । ଏହା ପଛରେ ଦୁଇଟି କାରଣ ଥିଲା – ପ୍ରଥମତଃ, ସରକାର ଅନୁଦାନ ଦେଲେ, ସମ୍ପାଦକଙ୍କ ହାତକୁ ଛ'ମାସକୁ ଥରେ ଚାତକ ଭଳି ଆଉ ଚାହିଁବାକୁ ପଡ଼ିବ ନାହିଁ । ଦ୍ୱିତୀୟରେ, ନୂଆ ପରିଚାଳନା କମିଟି ଗଠନ କରାଯିବ, ଯେଉଁଥିରେ ଅଧ୍ୟକ୍ଷଙ୍କୁ ଅତିରିକ୍ତ ଦାୟିତ୍ୱ ଭାବେ ସମ୍ପାଦକଙ୍କର ଦାୟିତ୍ୱ ତୁଲାଇବାକୁ ପଡ଼ିବ । ଅର୍ଥାତ୍ ଦିବାକର ମହାନ୍ତିଙ୍କ ଦାସତ୍ୱରୁ ନିଶ୍ଚୟ ମୁକ୍ତିମିଳିବ । ଆଠ ବର୍ଷର ଶୋଷ ମେଣ୍ଟିବାପାଇଁ ଆଉ ମାତ୍ର ଦିନ କେତେଟା, ସମସ୍ତେ ଏହି ଆଶାରେ ଉତ୍ଫୁଲ୍ଲିତ ହେଲେ ।

ଅଥଚ, ଦିବାକର ବାବୁଙ୍କର ଖେଳ ସେଉଠୁ ହିଁ ଆରମ୍ଭ ହେଲା । କଲେଜର ସବୁ କାଗଜ ପତ୍ର ତାଙ୍କ ପାଖରେ । ନିଯୁକ୍ତି ପତ୍ର ଏ ପର୍ଯ୍ୟନ୍ତ କାହାରିକୁ ମିଳିନାହିଁ । ଅତଏବ, ଅଦୃଶ୍ୟ, ଅଚିହ୍ନା ନାଁ ଟିଏ ଯଦି ସେ ପଠାଇଦିଅନ୍ତି, ସରକାରଙ୍କ ପାଖକୁ, ତେବେ ତ କଥା ସରିଲା । ଏହି ଆତଙ୍କରେ ଘୋଷାରିହେଲେ କଲେଜର କର୍ମଚାରୀ । ଦିନ ରାତି ବିଭିନ୍ନ ଆଳ ଦେଖାଇ ଦୌଡ଼ିଲେ ସମ୍ପାଦକଙ୍କ ଘରକୁ । କିଏ ପରିବା ଭର୍ତ୍ତି ବ୍ୟାଗ ହାଟରୁ କିଣି, ତାଙ୍କ ସ୍ତ୍ରୀଙ୍କୁ ଭେଟି ଦେଇ କହିଲା – ଆମ ବାଡ଼ିରେ ଫଳିଥିଲା । ଆଉ କିଏ, ଆଷାଢ଼ ମାସରେ ଦିବାକର ବାବୁଙ୍କ କିଆରିରେ ହଳ ବୁଲେଇଲା – କହିଲା, ବଳଦ ଦି'ଟାଙ୍କର କାମ ନଥିଲା, ଭାବିଲି ବୁଲେଇ ଦିଏ, ନହେଲେ ଗୋରୁ ଦି'ଟା ଅଳସୁଆ ହୋଇଯିବେ । କହିବା ବାହୁଲ୍ୟ, ଦିବାକର ଏତିକିବେଳେ ତାଙ୍କର ନୂତନ ଗୃହର ଶୁଭ ଅନୁକୂଳ କଲେ ଏବଂ ମାତ୍ର ଚାରିମାସ ଭିତରେ ଏକ ହଜାର ବର୍ଗଫୁଟର ଘରଟି ସମ୍ପୂର୍ଣ୍ଣ ହେଲା । ସମ୍ପାଦକ, ବ୍ୟସ୍ତ ମଣିଷ । ତାଙ୍କୁ ସମୟ କାହିଁକି ମୂଲିଆ ମିସ୍ତ୍ରୀ ପାଖରେ ଠିଆ ହେବା ପାଇଁ ଏବଂ ବାଲି-ଗୋଡ଼ି-ଇଟା କେଉଁଠୁ ଆସିବ ସେ କଥା ବୁଝିବାପାଇଁ ? ଏସବୁ ଦାୟିତ୍ୱ କଲେଜର ଅଧ୍ୟକ୍ଷଙ୍କର ସିଧାସଳଖ ତତ୍ତ୍ୱାବଧାନରେ ସମାହିତ ହେଲା । ନିଜର କାମ ଭାବି ଝାଳନାଳକୁ ଏକ କରିଦେଲେ କଲେଜର କର୍ମଚାରୀ, କେବଳ ଅଧ୍ୟାପକ ମଥୁରାନନ୍ଦଙ୍କୁ ଛାଡ଼ି ।

ଏପଟେ, ବାହାଘର ପ୍ରସ୍ତାବ ଦେଇ, ବାରମ୍ବାର ମଧ୍ୟସ୍ଥିମାନଙ୍କଦ୍ୱାରା ତାଗିଦା କରାଇ, ଦିବାକର ବାବୁ ଯେତେବେଳେ ବିଫଳ ହେଲେ, ତାଙ୍କର ସ୍ୱାଭିମାନ ଉପରେ

ଆଞ୍ଚ ଆସିଲା । ଶେଷରେ ଜନୈକ ମଧ୍ୟସ୍ଥି ହାତରେ ଶେଷ ଅସ୍ତ୍ରଟିଏ ସେ ପ୍ରୟୋଗ କଲେ – ମୋର ଭାଣିଜୀ ଅସୁନ୍ଦରୀ, ଏହା ସତ, ଯଦି ସୁନ୍ଦରୀ ପାଠୋଇ ହୋଇଥାନ୍ତା ତେବେ ମୁଁ ଆକୁଳା ପୁଅ ମଥୁରାପାଇଁ କାହିଁକି ପ୍ରସ୍ତାବ ଦେଇଥାନ୍ତି ? ତାକୁ କହିଦିଅ, ଆସନ୍ତା ମାସରେ ଚାକିରୀ ସ୍ଥାୟୀ ହେବାପାଇଁ ସରକାରଙ୍କୁ କାଗଜ ପଠେଇବି । ତା ପୂର୍ବରୁ ଯେମିତି ବାହାଘର ହେଇଯାଏ, ସେକଥା ସେମାନେ ବୁଝିବେ । ନହେଲେ ତା ପରବର୍ତ୍ତୀ ଅସୁବିଧାପାଇଁ ମୋତେ ଦୋଷଦେବେ ନାହିଁ ।

ମଥୁରାନନ୍ଦ ଏମିତି ତ ତେଢ଼ା, ଏକଥା ଶୁଣି ସେ ମାରେ କି ମରେ । ବହୁତ ବୁଝାସୁଝା କରିବା ପରେ ସେ ଥୟ ଧରିଲେ ଏବଂ ଅପେକ୍ଷା କଲେ ଆସନ୍ତା ମାସକୁ ।

ଫଳ ଆଉ କ'ଣ ହୋଇଥାନ୍ତା? କଲେଜର ସମସ୍ତ କର୍ମଚାରୀଙ୍କର ଚାକିରୀ ସ୍ଥାୟୀ ହୋଇ ଚିଠି ଆସିଲା, କେବଳ ମଥୁରାନନ୍ଦଙ୍କୁ ଛାଡ଼ି । କେବଳ ସେତିକିରେ କଥା ସରିଲାନି, ପରୀକ୍ଷା କାର୍ଯ୍ୟରେ ଅବହେଳା, ଶ୍ରେଣୀ କକ୍ଷରେ ଅନିୟମିତତା ଏବଂ କଲେଜ ପ୍ରଶାସନକୁ ଅବମାନନା କରିଥିବାରୁ ତାଙ୍କୁ କଲେଜରୁ ବହିଷ୍କାର କରାଯିବାର ଚିଠି ଡାକରେ ଆସି ଘରେ ପହଂଚିଲା ।

ସେହି ଦିନରୁ ମଥୁରାନନ୍ଦଙ୍କର ମାନସିକ ଭାରସାମ୍ୟ ଠିକ୍ ରହିଲା ନାହିଁ । ଆରମ୍ଭ ହେଲା, ବାଚଳାମୀ, ପାଗଳାମୀ ।

ଅନିଚ୍ଛାକୃତ ହସରେ ଦୟନୀୟ ଦିଶୁଥିବା ମୁହଁମାନଙ୍କୁ ପ୍ରଫେସର ରାଓ୍ୱତ କଳାଚଷମା ତଳୁ ଗାଢ଼େଇ ଚାହିଁଲେ । ସମ୍ମୁଖରେ ବସିଥିବା ବିଶିଷ୍ଟ ଏବଂ ଅତି ବିଶିଷ୍ଟମାନେ, ତାଙ୍କର ପ୍ରଶ୍ନରେ ଯେ ଆଦୌ ଖୁସିନୁହନ୍ତି ତାହା ବୁଝିବାପାଇଁ ତାଙ୍କୁ ବେଶି ସମୟ ଲାଗିଲା ନାହିଁ । କିନ୍ତୁ, ସେ ସ୍ଥିର ନିଶ୍ଚିତ, ତାଙ୍କ ପ୍ରଶ୍ନର ଠିକ୍ ଉତ୍ତର ଆଦାୟ କରିବାପାଇଁ ।

'ମେଧାବୀ ଅଧ୍ୟାପକଙ୍କର ଆଉ କିଛି ଦୁର୍ଗୁଣ ଥିଲା କି ?' ପ୍ରଫେସର ପୂର୍ବ ପ୍ରଶ୍ନ ସହ ସଂଯୋଗ କଲେ ଏବଂ ଆଗ୍ରହ ସହକାରେ ଚାହିଁଲେ ପରିଚାଳନା କମିଟିର ସଭାପତିଙ୍କୁ ।

ସଭାପତି ଟିକେ ପ୍ରଫୁଲ୍ଲିତ ଦିଶିଲେ । ଅଛିଣ୍ଡା ଗଣିତର ସତେ ଅବା ଦୁର୍ଲଭ ସୂତ୍ରଟିଏ ତାଙ୍କୁ ମିଳିଗଲା । ଚେୟାର ପଛରୁ ପିଠି ଛଡ଼େଇ ସେ ସିଧାକଲେ ନିଜର ମେରୁଦଣ୍ଡ । 'ସେକଥା ପଚାରୁଛନ୍ତି ଆଜ୍ଞା ?' ସଭାପତି ବାମ–ଡାହାଣକୁ ଚାହିଁ ନିଜର ବାଗ୍ମୀତା ପ୍ରକାଶ କଲେ, 'ପାଠ ଦି'ଅକ୍ଷର ପଢ଼ିଥିଲା ବୋଲି, ଇନ୍ଦ୍ର–ଚନ୍ଦ୍ର ତ ମାନୁ ନଥିଲା । ତା'ଛଡ଼ା ତାର ଅନ୍ୟ ଦୋଷ ବି ଥିଲା ।' ଏହା କହି ଚାରିପଟକୁ ଥରେ ନିରୀକ୍ଷଣ କଲେ ଏବଂ ଅପେକ୍ଷାକୃତ କମ୍ ଗଳାରେ ଉତ୍ତର ବିସ୍ତାରିଲେ – ଆମେ

ଅନେକ ଥର କହିବା ପରେ ମଧ ସେ ଶୁଣିଲା ନାହିଁ । ଛାତ୍ରୀମାନେ ହେଲେ ନିଜର ଝିଅପରି, ତାଙ୍କ ସହିତ ଯୋଉ ସମ୍ପର୍କ ସେ ଯୋଡ଼ିଲା, ନ କହିଲେ ଭଲ । ଏଠି ଅଧକ୍ଷ ବସିଛନ୍ତି, ତାଙ୍କୁ ପଚାରନ୍ତୁ, ତାଙ୍କ ସହ ମୁଁ ନିଜେ ଯାଇ ସନ୍ଧ୍ୟାବେଳେ ଅସଙ୍ଗତ ଅବସ୍ଥାରେ ଦୁଇଥର ଧରିଛି । ପିଲାଙ୍କର କିଛି ଦୋଷ ନାହିଁ । ସେ କହିବ, ପାଠ ବୁଝିବାକୁ ଆସ । ତା'ପରେ ବୁଝଉ ବୁଝଉ 'ସନ୍ଧ୍ୟା କରିଦବ । ଛାତ୍ରନ୍ତୁ ଆଜ୍ଞା, ସେ ଗୋଟାଏ କଳଙ୍କ । ଅବଶ୍ୟ ତା'ର କଳାକର୍ମର ଫଳ ଭଗବାନ ତାକୁ ଦେଲେ ।

କିପରି ? ପ୍ରଫେସର ଉତ୍‌ଗ୍ରୀବ ହୋଇ ପଚାରିଲେ ।

ସଭାପତି ମନେମନେ କୁରୁଳି ଉଠିଲେ । ପ୍ରଫେସରଙ୍କୁ ଏହି ଯୁକ୍ତିଟି ଉଚିତ୍ ମନେହୋଇଛି ନିଶ୍ଚୟ । ତେଣୁ ସେ ଏଥର ସ୍ୱର ଉଚ୍ଚାକଲେ । ଆଜ୍ଞା, ଆପଣଙ୍କୁ କ'ଣ ଲୁଚେଇବୁ, ଆପଣଙ୍କ କଲମଗାରରେ ତ ଆମ ଅନୁଷ୍ଠାନର ଭବିଷ୍ୟତ । କେତେ କଷ୍ଟକରି ଆମେ ଅନୁଷ୍ଠାନ ଗଢ଼ିଛୁ, ସେ କଥା ଆମେ ଜାଣୁ । କିନ୍ତୁ ଗଣିତ ଅଧାପକ ଯେଉଁ କୁକର୍ମ କଲେ ତାହା ଭଗବାନ ସହିଲେନି । ପରୀକ୍ଷା ବେଳେ କହିବ, ମୁଁ ପରୀକ୍ଷା ଡ୍ୟୁଟି କରିବି ନାହିଁ । ଯଦି କରିବି, ମୋର ନିଜ ଟ୍ୟୁସନ୍ ପିଲାଙ୍କୁ ସାହାଯ୍ୟ କରିବି । ଏକଥା ତ ଆମ ନୀତି ବିରୁଦ୍ଧ । ଆମ୍ଭେ କହିଲୁ, ପରୀକ୍ଷାଟି ପରୀକ୍ଷା ଭଳି ହେବ । ଆପଣ ରେକର୍ଡ଼ ଦେଖନ୍ତୁ, ତାଙ୍କର ଗୋଟିଏ ବି ଡ୍ୟୁଟି ସେହି ସମୟରେ ନଥିବ । ଏସବୁ ଆମେ ବରଦାସ୍ତ କରିଛୁ । ତଥାପି ତାକୁ ଚାକିରିରେ ରଖିଥିଲୁ । କିନ୍ତୁ ଭଗବାନଙ୍କର ଇଚ୍ଛା ଅନ୍ୟ ପ୍ରକାର । ଅନୁଦାନ ମିଳିବା ପୂର୍ବ ମାସରେ ତ ସେ ପାଗଳ ହୋଇଗଲା । ବାଇଆଙ୍କ ଭଳିଆ ତାଳପତ୍ର ଧରି କଲେଜ ସାରା ବୁଲିଲା, କହିଲା ମାରିବି, ହାଣିବି । ପୁଲିସରେ କେଶ୍ ଦେବାରୁ ଆରେଷ୍ଟ ହେଇ ରହିଲା ଜେଲ୍‌ରେ ତିନିମାସ ।

ପାଗଳାମୀପାଇଁ ତାର ପାରିବାରିକ କାରଣ କିଛି ଥିଲା କି ? ପ୍ରଫେସର ଜିଜ୍ଞାସା କଲେ ।

ଆଜ୍ଞା ପାରିବାରିକ ନୁହେଁ, ବରଂ ବ୍ୟକ୍ତିଗତ କାରଣ କୁହନ୍ତୁ । ସେକଥା କହିବାକୁ ମତେ ଲାଜଲାଗୁଛି । ମୋର ଗୋଟିଏ ଭାଣିଜୀ ଏଠି ପଢୁଥିଲା । ସେ ତା ପଛରେ ପଡ଼ିଗଲା । ଆମେ ଏହା ଦେଖି ଝିଅର ବାହାଘର କରିଦେଲୁ । ତା ପରେ ତ ୟାର ପାଗଳାମି ଆରମ୍ଭ ହେଲା, ବର୍ଷେ ଖଣ୍ଡେ ଏମିତି ବୁଲିଲା ତା ପରେ ଦିନେ ବୁଲୁଥିଲା, ରାସ୍ତାରେ ଲୁହାପଥର ବୋଝେଇ ଟ୍ରକ୍ ଚଢ଼ିଗଲା ।

ପ୍ରଫେସର ଏବଂ ସଭାପତିଙ୍କର କଥୋପକଥନକୁ ନିରୁତ୍ସାହିତ ହୋଇ ଶୁଣୁଥିବା ସ୍ଥାନୀୟ ବୁଦ୍ଧିଜୀବୀମାନଙ୍କ ମଧରୁ ଜଣେ ବୟସ୍କ ବ୍ୟକ୍ତି ଠିଆ ହେଲେ – ସାର୍, କ୍ଷମା

କରିବେ, ଦଶବର୍ଷ ତଳେ ଏମିତି ଗୋଟିଏ ଦୁଃଖଦ ଘଟଣାରେ, ଆପଣଙ୍କର ସମୟ ନଷ୍ଟକରିବା ଉଚିତ ହେବନାହିଁ ବୋଲି ମୁଁ ଭାବୁଛି । ଏହା ଗୋଟିଏ ଚଳଚ୍ଚିତ୍ର କାହାଣୀ ଭଳି ଲାଗିପାରେ ଆପଣଙ୍କୁ, ସେକଥା ଉପରେ ଆଲୋଚନା କରି ଆଉ ଲାଭ ନାହିଁ । ଭଦ୍ର ବ୍ୟକ୍ତିଙ୍କର ବକ୍ତବ୍ୟ ଉପସ୍ଥିତ ସମସ୍ତ ବ୍ୟକ୍ତିଙ୍କ ମନକୁ ପାଇଲା । ବୋଧହୁଏ ଏହିକଥା ସମସ୍ତେ କହିବେ କହିବେ ହେଉଥିଲେ, କିନ୍ତୁ କହିପାରୁ ନଥିଲେ । ଏବେ ସମସ୍ତେ ଉଶ୍ୱାସ ଅନୁଭବ କଲେ ।

ମୁଁ ଗୋଟିଏ କଥା ଶୁଣିଥିଲି, ମୋର ଜଣେ ବରିଷ୍ଠ ପ୍ରଫେସର୍‌ଙ୍କ ଠାରୁ । ତା ସହ ଏହି ବିଷୟର କିଛି ସାମଞ୍ଜସ୍ୟ ଥିବାର ମୁଁ ଅନୁମାନ କରୁଛି । ବୁଦ୍ଧିଜୀବୀଙ୍କର ବକ୍ତବ୍ୟର ଉତ୍ତରରେ ପ୍ରଫେସର ମତପ୍ରକାଶ କଲେ ।

ଏବେ, ଉପସ୍ଥିତ ସମସ୍ତ ବୁଦ୍ଧିଜୀବୀ ଝୁଙ୍କିପଡ଼ି କାନଡ଼େରିଲେ ।

ମୋର ଜଣେ ବନ୍ଧୁ ପ୍ରଫେସର ଦଶ ବର୍ଷ ତଳେ ଓଡ଼ିଶା ବୁଲି ଆସିଥିବା ବେଳେ ବୌଦ୍ଧପୀଠ ରତ୍ନଗିରି-ଉଦୟଗିରି ଭ୍ରମଣରେ ଆସିଥାନ୍ତି । ଅକସ୍ମାତ ତାଙ୍କ ଗାଡ଼ି ସାମ୍ନାକୁ ଆସିଗଲା ଲୋକଟିଏ । ଜରାଜୀର୍ଣ୍ଣ ଅବସ୍ଥା । କିନ୍ତୁ, ସେ ଇଂରେଜୀରେ କଥାବାର୍ତ୍ତା କରୁଥିଲା । କୌତୁହଳ ଏବଂ ସମବେଦନାରେ ପ୍ରଫେସର୍ ତାଙ୍କ ସାଙ୍ଗରେ ନେଇଗଲେ ଦିଲ୍ଲୀ ଏବଂ ମାନସିକ ରୋଗ ବିଷାରଦଙ୍କଦ୍ୱାରା ଚିକିତ୍ସା ହେବାଦ୍ୱାରା ପ୍ରାୟ ଦୁଇମାସ ପରେ ସେ ତାଙ୍କର ପୂର୍ବ ଅବସ୍ଥାକୁ ଫେରିଲେ ।

ଆକସ୍ମିକ ଭାବେ ବଦଳିଗଲା ସଭାଗୃହର ପରିବେଶ । ଆଶଙ୍କା ଓ ଅବିଶ୍ୱାସରେ ସନ୍ତୁଳିତ ହେଲେ ସମବେତ ବୁଦ୍ଧିଜୀବୀ । କାହିଁକି କେଜାଣି, ଅନ୍ଧାର ରାତିରେ ଭୂତ କବଳିତ ବାଟୋଇ ଭଳି ଅଣ୍ଟାଳି ହେଲେ ଅଧ୍ୟକ୍ଷ, ଅଧ୍ୟାପକ ବୃନ୍ଦ । ସଭାପତି କିଛି ବୁଝିପାରୁ ନଥିଲେ ପ୍ରଫେସର୍‌ଙ୍କର ବକ୍ତବ୍ୟ, ଆଁ କରି ଚାହିଁଥିଲେ ତାଙ୍କ କଳା ଚଷମାକୁ ।

'ଆପଣମାନେ ଦେଖିଛନ୍ତି ତାଙ୍କ ମୃତ ଶରୀର?' ପ୍ରଫେସର ଖୋଲିଲେ ଭାନୁମତି ପେଡ଼ି ।

ଥ ଥ ମ ମ ହୋଇ ସଭାପତି ଉତ୍ତର ଦେଲେ କିଛି କ୍ଷଣ ପରେ – ଟ୍ରକଟା ଏମିତି ମାଡ଼ି ଯାଇଥିଲା ଯେ, ସେ ଗୋଟାଏ ମାଂସ ପିଣ୍ଡୁଳା ହୋଇଯାଇଥିଲା । ମଥୁରା ପାଗଳ ପ୍ରାୟ ଏପଟ ସେପଟ ହୁଏ ଛକରେ, ତେଣୁ ସେ ହିଁ ଆତ୍ମହତ୍ୟା କରିଥିବ, ଏକଥା ସମସ୍ତେ ଜାଣନ୍ତି, ତାଙ୍କ ଘରେ ଶୁଦ୍ଧିକ୍ରିୟା ମଧ୍ୟ ସରିଛି, ମୁଁ ନିଜେ ପାଞ୍ଚ ଶହ ଟଙ୍କା ଦେଇଥିଲି ତା ବାପାକୁ ଶୁଦ୍ଧିକ୍ରିୟାପାଇଁ । ଦଶବର୍ଷ ବିତିଗଲାଣି । ଆକୁଳିକୁ ମୁଁ ସେ ଟଙ୍କା ମାଗିଛି? କ'ଣ ମିଛ ଏକଥା? ସାର୍‌ମାନେ କୁହନ୍ତୁ ।

ମୁଣ୍ଡ ଟୁଙ୍କାରିଲେ ସମସ୍ତ ଅଧ୍ୟାପକ ଏବଂ ପ୍ରସନ୍ନ ଦିଶିଲେ ସଭାପତି ।

ମୋ ପାଖରେ ଯାହା ଖବର ଅଛି, ତାହାତ ଠିକ୍ ଓଲଟା କଥା । ପ୍ରଫେସର ଗଳା ସଫାକରି ଆରାମରେ ବସିଲେ । ଆପଣଙ୍କ କଲେଜର ଅନେକ ଅନୈତିକ କାର୍ଯ୍ୟ ହୋଇଛି, ଅଧ୍ୟାପକଙ୍କୁ ଦରମା ଦିଆଯାଇନାହିଁ କିମ୍ବା ତାଙ୍କ ଚାକିରୀ ସ୍ଥାୟୀ କରିବାପାଇଁ ପ୍ରସ୍ତାବ ପଠାଯାଇନାହିଁ ସରକାରଙ୍କୁ । ଆଉ... ଏକଥା କ'ଣ ସତ ମିଷ୍ଟର୍ ମହାନ୍ତି, ଆପଣଙ୍କର ବାହା ହୋଇପାରୁ ନଥିବା ଭାଣିଜୀକୁ ଆପଣ ଜବର୍‌ଦସ୍ତ ସେହି ଅଧ୍ୟାପକଙ୍କ ସହ ବାହା ଦେବାକୁ ଚାହିଁଥିଲେ? ସେ ରାଜି ନ ହେବାରୁ ତାଙ୍କୁ ଚାକିରୀରୁ ଚକ୍ରାନ୍ତ କରି ବହିଷ୍କାର କରିଥିଲେ ଆପଣ । ଆପଣ ମିଷ୍ଟର୍ ମହାନ୍ତି ସେହି ସମୟରେ ଏହି କଲେଜ ପରିଚାଳନା କମିଟିର ସମ୍ପାଦକ ଥିଲେ ବୋଧହୁଏ । ଆମ୍ ଆଇ ରାଇଟ୍, ମିଷ୍ଟର୍ ପ୍ରେସିଡେଣ୍ଟ ?

ଗୋଟାପଣ ଝାଳବାହାରି ଗଲା ସଭାପତି, ଅଧକ୍ଷ ଏବଂ ଅଧ୍ୟାପକଙ୍କ ଠାରୁ । ସେମାନେ ଦୃଢ଼ ନିଶ୍ଚିତ ହେଲେ, କେହି ଜଣେ ଖଳ ପ୍ରକୃତିର ଲୋକ ଚିକିନିଖି ସମସ୍ତ ତଥ୍ୟ ପ୍ରଫେସରଙ୍କୁ ପ୍ରଦାନ କରିଛି । ନଚେତ ଦିଲ୍ଲୀ ବିଶ୍ୱ ବିଦ୍ୟାଳୟର ପ୍ରଫେସର ମି. ରାଓ୍ୱତ୍ ଏତେକଥା ଜାଣିଥାନ୍ତେ କେମିତି ?

ବିପଦ ବେଳେ ଏକାଠି ହେବା ମଣିଷର ପ୍ରକୃତି । ତେଣୁ ସମସ୍ତେ ସମବେତ କଣ୍ଠରେ ଘୋଷଣା କଲେ, ସାର୍, ଆପଣ ଯାହା ଶୁଣିଛନ୍ତି ସବୁମିଛ, ସବୁମିଛ ।

ଅସହାୟ, ଅସ୍ଥିର ଲୋକମାନଙ୍କୁ ଦେଖି ହସିଲେ ପ୍ରଫେସର । ଏକ ନୀରବ, ଦୀର୍ଘ ହସ । ତାଙ୍କ ଓଠଟି ବେଶ୍ କିଛି ସମୟ ଉଭୟ ଦିଗକୁ ପ୍ରସାରିତ ହୋଇଗଲା । ତା ପରେ ସେ ମୁହଁ ଖୋଲିଲେ – ଅଧ୍ୟାପକ ରାଉତଙ୍କୁ ଚିହ୍ନିବାପାଇଁ କିଛି ଚିହ୍ନ ଆପଣ ଦେଖିଛନ୍ତି କି ? ଯଦି ଏବେ କେଉଁଠି ଆପଣ ଦେଖନ୍ତି ଚିହ୍ନିପାରିବେ ତାଙ୍କୁ ?

ଗୁଞ୍ଜରଣ ସୃଷ୍ଟିହେଲା । ମଲାଲୋକ କେମିତି ଫେରିବ ? ଏ ପ୍ରଫେସର ପରିଦର୍ଶନରେ ଆସିଛି, ନା ସି.ବି.ଆଇ. ଅଫିସର୍ ପ୍ରଫେସର ବେଶରେ ଆସି ଦଶ ବର୍ଷତଳୁ ହଜିଯାଇଥିବା ଗୋଟାଏ ପାଗଳର ଅନୁସନ୍ଧାନ କରୁଛି ? କାହାରି ମୁହଁରୁ କିଛି କଥା ବାହାରିଲା ନାହିଁ । ସମସ୍ତେ ଚୁପ୍ ବସିବାର ଦେଖି ସଭାପତି ସାହସିକତାର ପରିଚୟ ଦେଲେ – ହଁ, ହଁ, ଚିହ୍ନିପାରିବୁ ଆଜ୍ଞା, ମଥୁରାର ଆଖିତଳେ ଓ ଉପର ପତାରେ ଦୁଇଟା କଟାଦାଗ ଥିଲା । ବାଁ ପଟ ଆଖି ବୋଲି ମୋର ମନେପଡୁଛି ।

ପ୍ରଫେସର ରାଓ୍ୱତ୍ ଠିଆହେଲେ । ଧନ୍ୟବାଦ ଦେଲେ ଉପସ୍ଥିତ ସମସ୍ତ କର୍ମକର୍ତ୍ତା ଏବଂ ବୁଦ୍ଧିଜୀବୀଙ୍କୁ ସେମାନଙ୍କର ଧୈର୍ଯ୍ୟପାଇଁ ଏବଂ ଗୋଟାଏ ଅଖୋଜା ଓ ଅଲୋଡ଼ା ଅଧ୍ୟାପକ ବିଷୟରେ ବିଶେଷ ତଥ୍ୟ ଦେଇଥିବାରୁ । ତା'ପରେ ସେ ଧନ୍ୟବାଦ ଦେଲେ ସଭାପତିଙ୍କୁ, ଠିକ୍ ଭାବେ ଅଧ୍ୟାପକ ମଥୁରାନନ୍ଦଙ୍କୁ ମନେ ରଖିଥିବା ପାଇଁ ।

.....................................

ଶେଷରେ ପ୍ରଫେସର ନିଜ ଆଖିରୁ କଳା ଚଷମା ଖୋଲିଲେ ଏବଂ ସଭାପତି ଦିବାକର ମହାନ୍ତିଙ୍କ ସହ ଆଖିକୁ ଆଖି ମିଳାଇଲେ । ଦିବାକର ବାବୁ ସତେ ଅବା ଜୀଅନ୍ତା ଭୂତଟିଏ ଦେଖି ଚମକି ପଡ଼ିଲେ – ପ୍ରଫେସର ରାଓ୍ଵତ୍‌ଙ୍କର ବାଁ ଆଖି ଉପରେ ଏବଂ ତଳେ କଟାଦାଗ ଦୁଇଟା, ବିଷଧର ସର୍ପଭଳି ଦଂଶନ କରିବାକୁ ଉଦ୍ୟତ ହେଉଥିଲେ, ତାଙ୍କୁ ଏବଂ ସମୁଦାୟ କଲେଜକୁ ।

❑

(ଜନସୁଧା : ପୂଜା ସଂଖ୍ୟା ୨୦୦୯)



ଯଶୋବନ୍ତ ସାମଲ
୩ ମଇ ୧୯୬୭

ଚଳନ୍ତି ସମୟର ଜଣେ ସମ୍ବେଦନଶୀଳ ଗଳ୍ପକାର ଯଶୋବନ୍ତ ସାମଲ । ଦଶୋଟି କଥାକୁ ନେଇ କଥିତ 'କଥା ଦଶକ' ପାଠକକୁ ଅଭିଭୂତ କରେ । ତାଙ୍କ ଗଳ୍ପଗୁଡ଼ିକ ନିଃସ୍ୱ ଓ ଅସହାୟ ମଣିଷମାନଙ୍କ ପ୍ରତି ଶ୍ରଦ୍ଧାଶୀଳ ହେବାପାଇଁ ଅନୁପ୍ରେରିତ କରାଏ । ପ୍ରତ୍ୟେକଟି ଗଳ୍ପ ସୁଖପାଠ୍ୟ, ଲଳିତ ଓ ମଧୁର ।

ଯଶୋବନ୍ତଙ୍କ ଅନ୍ୟାନ୍ୟ କଥାଗ୍ରନ୍ଥ :

କୁରେଇ (୨୦୦୧)
ମଝିରାସ୍ତାର ମଣିଷ (୨୦୦୪)
ବିଟପୀ ଓ ଅନ୍ୟାନ୍ୟ ଗଳ୍ପ (୨୦୦୬)
ଅସରାଏ ଗପ (୨୦୦୯)



